# ଜାତୀୟ କବି ବାଞ୍ଛାନିଧି

( ଜାତୀୟ କବି ବାଞ୍ଛାନିଧି ମହାନ୍ତଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ଗ୍ରନ୍ଥ )

ଡକ୍ଟର ମନୀନ୍ଦ୍ର ମହାନ୍ତି

ବାଞ୍ଛାନିଧି ସ୍ମାରକ ନାଟ୍ୟ ନିକେତନ

ଇରମ, ବାଲେଶ୍ୱର



# ଜାତୀୟ କବି ବାଞ୍ଛାନିଧି

ଲେଖକ :
ଡକ୍ଟର ମଣୀନ୍ଦ୍ର ମହାନ୍ତି
ଏମ୍.ଏ., ପି.ଏଚ୍.ଡ଼ି.
ଇରମ, ବାଲେଶ୍ୱର, ୭୫୬୧୬୨

ସ୍ୱତ୍ୱସତ୍ତ୍ୱାଧିକାରିଣୀ :
ଶ୍ରୀମତୀ ରେଣୁବାଳା ମହାନ୍ତି
ଅପର୍ଣ୍ଣା ପ୍ରକାଶନୀ
ଇରମ, ବାଲେଶ୍ୱର

ପ୍ରଚ୍ଛଦପଟ :
ଶ୍ରୀ ଗୋବର୍ଦ୍ଧନ ମଲ୍ଲିକ
ଶ୍ରୀ ଅଶୋକ କୁମାର ମହାନ୍ତି
ଶ୍ରୀ ଅମୂଲ୍ୟ ପାଢ଼ୀ

ପ୍ରକାଶକ :
ଅପର୍ଣ୍ଣା ପ୍ରକାଶନୀ
ଇରମ, ବାଲେଶ୍ୱର

ମୁଦ୍ରକ :
ଶ୍ରୀ ଶରତ କୁମାର ନାୟକ
କଳିଙ୍ଗ ପ୍ରିଣ୍ଟର୍ସ
ଚରମ୍ପା, ଭଦ୍ରକ

ପ୍ରଥମ ମୁଦ୍ରଣ :
୧୯୮୭, ଜାନୁଆରୀ

ମୂଲ୍ୟ—**ତିରିଶ ଟଙ୍କା ମାତ୍ର**

**JATIYAKABI BANCHHANIDHI**

( Biography )

By Dr. Manindra Mohanty
M.A., Ph.D.
Eram, Balasore (Orissa) 756162



Cover Art :
Sri Gobardhan Malik
Sri Ashok Kumar Mohanty
Sri Amulaya Pathi

Publisher :
Aparna Prakashani
Eram, Balasore ( Orissa )

Printer :
Sri Sarat Kumar Nayak
Kalinga Printers
Charampa, Bhadrak

First Edition :
1987, January

Price : **Rs. Thirty Only.**



## ଜାତୀୟକବି ବାଞ୍ଛାନିଧି

ଆବିର୍ଭାବ :
୧୮୯୭ / ଅପ୍ରେଲ / ୨୦

ତିରୋଭାବ :
୧୯୩୮ / ଅପ୍ରେଲ / ୧୯



କନିଷ୍ଠଭ୍ରାତା ସ୍ୱର୍ଗତ ପ୍ରେମାନନ୍ଦ ମହାନ୍ତ
( ୧୯୦୫ - ୧୯୭୬ )



କନିଷ୍ଠଭ୍ରାତା ଶ୍ରୀ ବବେକାନନ୍ଦ ମହାନ୍ତ
( ଜନ୍ମ - ୧୯୧୮ )





## ❊ ସମର୍ପଣ ❊

ଯେଉଁ ଦୁଇଜଣ ମୋ ପାଇଁ
ଜୀବନରେ ସବୁଠାରୁ ବେଶୀ
ଲୁହ ଗଡାଇଛନ୍ତି, ଅସମ୍ମାନିତ
ହୋଇଛନ୍ତି, ଯନ୍ତ୍ରଣା ପାଇଛନ୍ତି,
ସେହି ମୋର ବାପା
**ଶ୍ରୀଯୁକ୍ତ ବିବେକାନନ୍ଦ ମହାନ୍ତି**
ଏବଂ ବୋଉ
**ଶ୍ରୀମତୀ ଅପର୍ଣ୍ଣା ମହାନ୍ତିଙ୍କ**
ହାତରେ ଗଭୀର ଭକ୍ତି ଓ
କୃତଜ୍ଞତାର ସହିତ ସମର୍ପିତ ।

— **ମନୀନ୍ଦ୍ର ମହାନ୍ତି**
ଶିଶୁ ଶିକ୍ଷା ସଦନ, ଝରପ

# ବାଞ୍ଛାନିଧେଃ କଳ୍ପଲତେବ ମାନ୍ୟଂ -

ପଣ୍ଡିତ ସୁଧାକର ତ୍ରିପାଠୀ

ଇରମ/ବାସୁଦେବପୁର/ବାଲେଶ୍ୱର

ଯସ୍ୟୋଦୟାତ୍ ସ୍ଥାନ ମିଦଞ୍ଚ ଲେଭେ
ବାଞ୍ଛାନିଧେଃ କଳ୍ପଲତେବ ମାନ୍ୟଂ ।
ତଦାତ୍ମନଂ ସଦ୍‌ଗତିଂ କାମୟେଽହଂ
ବ୍ରହ୍ମତ୍ୱଲୀନସ୍ୟ ନିରାମୟସ୍ୟ ॥ ୧ ॥

ଯସ୍ୟ ପ୍ରଭାବାଦ୍ଧି ସୁଦୂରତରେଽପି
ମନୀଷୀ ବୃନ୍ଦାନ୍ ସମାହୃତ୍ୟ ବାଣ୍ୟାଃ
ଅନନ୍ୟ ଆଦର୍ଶ ପବିତ୍ରତାନ
ସଂସ୍ଥାପୟା ମାସ ଦିଗନ୍ତରେଷୁ ॥ ୨ ॥

ସଃ ଖର୍ବ କାୟୋଽପି ଦୃଢୋ ବଳିଷ୍ଠଃ
ମତିଜ୍ଞ ଶାସ୍ତ୍ରଜ୍ଞ ଭବିଷ୍ୟ ବକ୍ତା ।
ଚରିତ୍ରବାନ ମୂର୍ତ୍ତି ମନୋହରଶ୍ଚ
ବିବେକୀ ବୈରାଗ୍ୟ ସମଷ୍ଟି ରାଶୀନ୍ ॥ ୩ ॥

---

ଅନୁବାଦ :

ଯେଉଁ ବାଞ୍ଛାନିଧିଙ୍କ ଆବିର୍ଭାବରୁ ଏହି ମାଟି କଳ୍ପଲତା ଭଳି ସମ୍ମାନକୁ ଲାଭ କରିଥିଲା, ନିଷ୍କଳଙ୍କମୟ ବ୍ରହ୍ମଗୁଣରେ ଲୀନ ସେହି ମହାମାନ୍ୟ ଆତ୍ମାର ସଦ୍‌ଗତି ଲାଭ ହେଉ, ଏହି କାମନା କରିଥାଇଁ । ଯାହାଙ୍କ ବାଣୀର (ଅର୍ଥାତ ହୃଦୟସ୍ପର୍ଶୀ ଭାଷଣ ଓ କବିତା ଶୈଳୀର ଆବେଗପୂର୍ଣ୍ଣ ଗୁରୁଗମ୍ଭୀର ଭାବୋଚ୍ଛ୍ୱାସ ଯୁକ୍ତ) ପ୍ରଭାବରୁ ସୁଦୂରତର ହେଲେ ସୁଦ୍ଧା ଦିଗଦିଗନ୍ତରୁ ବିଦ୍ୱାନ ତଥା ନେତୃବୃନ୍ଦଙ୍କୁ ଟାଣି ଆଣି ନିର୍ମଳ ଓ ପବିତ୍ର ଇତିହାସକୁ (କାଳକାଳପାଇଁ) ସୃଷ୍ଟି କରି ଯାଇ ଅଛନ୍ତି । ଅତଏବ ସେ ଚିରସ୍ମରଣୀୟ ଅଟନ୍ତି ନିଶ୍ଚୟ । ସେହି ବାଞ୍ଛାନିଧି ବାମନ ଶରୀର ହେଲେ ହେଁ ଅତି ଟାଣୁଆ ସ୍ୱଭାବ, ବଳବାନ, ନୀତିନିପୁଣ, ବହୁଶାସ୍ତ୍ରଜ୍ଞ, ଭବିଷ୍ୟତ ଜ୍ଞାନୀ, ନିଷ୍କଳଙ୍କ ଚରିତ୍ର ନିଷ୍ଠା, ସ୍ଥୂଳ ସୁଗଠନ ମୂର୍ତ୍ତି, ବିଚାରବାନ ଓ ବୈରାଗ୍ୟ ଗୁଣଯୁକ୍ତ ଇତ୍ୟାଦି ବହୁଗୁଣର ସମାହାର ଥିଲେ, —ଏହା ସୁନିଶ୍ଚିତ ଅଟେ ।

---

# ମୁଖବନ୍ଧ

ନବ ଉତ୍କଳର ନିର୍ମାତା ଡକ୍ଟର ହରେକୃଷ୍ଣ ମହତାବ ୧୯୮୬ ମସିହା ନଭେମ୍ବର ୨୧ ତାରିଖରେ ଏକ ଚିଠିର ଉତ୍ତରରେ ଲେଖିଥିଲେ— " + + + ଏଥିପାଇଁ ( ଜାତୀୟ କବି ବାଞ୍ଛାନିଧି ଜୀବନୀ ଗ୍ରନ୍ଥ ) ମୁଖବନ୍ଧ ଲେଖିବି ଏବଂ ଉଦ୍‌ଘାଟନ ମଧ୍ୟ କରିବି ।'' ଜାନୁଆରୀ ୨୬ ତାରିଖ ପବିତ୍ର ଗଣତନ୍ତ୍ର ଦିବସରେ ଗ୍ରନ୍ଥଟି ସେ ଭୁବନେଶ୍ୱରସ୍ଥ ଏକାମ୍ର କାନନରେ ଉଦ୍‌ଘାଟନ କରିଥାନ୍ତେ । ମାତ୍ର କାଳ ସହିଲା ନାହିଁ ! ୧୯୮୭ ମସିହା ଜାନୁଆରୀ ୨ ତାରିଖରେ ସେ ସ୍ୱର୍ଗାରୋହଣ କଲେ । ମୁଖବନ୍ଧରେ ତାଙ୍କର ସ୍ମୃତିକୁ ସାଇତି ରଖିବା ପାଇଁ ତାଙ୍କ ରଚିତ 'କବି ବାଞ୍ଛାନିଧି' ଶୀର୍ଷକ ଲେଖାଟି ( ଜାତୀୟ କବି ଅଭିନନ୍ଦନ ଗ୍ରନ୍ଥ - ମାର୍ଚ୍ଚ—୧୯୭୩ ) ଏଠାରେ 'ମୁଖବନ୍ଧ' ରୂପେ ସନ୍ନିବିଷ୍ଟ ହେଲା । ପୁନଶ୍ଚ, ଏହାର ଦ୍ୱିତୀୟ ପର୍ଯ୍ୟାୟରେ ଏହି ଜୀବନୀ ଗ୍ରନ୍ଥର ସଂଗ୍ରହ, ରଚନା ଓ ପ୍ରକାଶନ ସହିତ ତାଙ୍କର ସମ୍ପର୍କ ଜାଣିବା ପାଇଁ ତାଙ୍କର ଏକ ଇଂରାଜୀ ଚିଠିର କିଛି ମନୋନୀତ ଅଂଶ ପ୍ରଦାନ କରାଗଲା ।

---

ବାଞ୍ଛାନିଧି ବାବୁ ମୋ ଠାରୁ ବୟସରେ ପ୍ରାୟ ତିନିବର୍ଷ ବଡ ଥିଲେ । ଘଟଣା ଚକ୍ରରେ ଭଦ୍ରକ ସ୍କୁଲରେ ପଢୁଥିବାବେଳେ ସେତେବେଳେ ସେ ଜଣେ ଶିକ୍ଷକ ଥିଲେ । ଅସହଯୋଗ ଆନ୍ଦୋଳନରେ ଆମ୍ଭେମାନେ ସମସ୍ତେ ମାତିଲୁଁ । ବାଞ୍ଛାନିଧିଙ୍କ ସଂଗୀତ ଜନତାର ହୃଦୟ ସ୍ପର୍ଶ କରି ସେମାନଙ୍କ ପ୍ରାଣକୁ ଯେପରି ଆଲୋଡନ କରୁଥିଲା, ସେଥିରେ ଆମେ ସମସ୍ତେ ମଧ୍ୟ ଆତ୍ମହରା ହୋଇ ଯାଇଥିଲୁଁ । ବାସ୍ତବିକ ସେ ଥିଲେ କବି ।

ମନୁଷ୍ୟ ଯେତେବେଳେ ଗଭୀର ନିଦ୍ରାମଗ୍ନ, ସେତେବେଳେ ପ୍ରତ୍ୟୁଷର ସମ୍ବାଦ ଦିଅନ୍ତି, କାକ, କୋକିଳ, କୁମ୍ଭାଟୁଆ । ସେମାନଙ୍କ ସ୍ୱରରେ ମନୁଷ୍ୟ ଜାଗିଉଠେ । ପ୍ରତ୍ୟୁଷରେ ଆମ ମନକୁ ସେମାନେ ଜାଗି ପାରନ୍ତି, ସେମାନଙ୍କ ସରଳ ଶୁଦ୍ଧ ଅବଚେତନ ସ୍ତରରୁ । ସେମାନଙ୍କର ମନୁଷ୍ୟ ପରି ମନ ଜିନିଷଟି ନାହିଁ । ଥିଲେ ସେମାନେ ମନୁଷ୍ୟକୁ ଆହୁରି ଭବିଷ୍ୟତର ବହୁ ସନ୍ଦେଶ ଦେଇ ପାରୁଥାନ୍ତେ । କବିର ମନଅଛି, ଏବଂ ତାଙ୍କର ଅବଚେତନ ଅବସ୍ଥାରେ ସେ ଭବିଷ୍ୟତର ସଂକେତ ପାଆନ୍ତି, ତାହାକୁ ହିଁ ସେ ଭାଷାରେ ପ୍ରକାଶ କରନ୍ତି । ଏହା ହିଁ ହେଉଛି ଶାଶ୍ୱତ କବିଙ୍କର ଲକ୍ଷଣ । ବାଞ୍ଛାନିଧି ଜଣେ ଶାଶ୍ୱତ କବି ଥିଲେ । ସେ କୌଣସି ଆନ୍ଦୋଳନରେ କାରାବରଣ କରି ନ ଥିଲେ ବା ତାଙ୍କର ମୃତ୍ୟୁ ବେଳକୁ ଦେଶରେ

ସମାଜବାଦର ସ୍ୱର ଉଠି ନଥିଲା । ତଥାପି ସେ ଭବିଷ୍ୟତର ସୂଚନା ସଂଗୀତାକାରରେ ଜନତାକୁ ଦେଇଥିଲେ । ଆଜି ସୁଦ୍ଧା ସେ ସଂଗୀତର ଝଙ୍କାର କାନେ କାନେ ଗୁଞ୍ଜରି ଉଠୁଛି । ହୁଏତ ତାଙ୍କର 'ପଦ୍ୟାବଳୀ' ଅନେକ ପଢି ନ ଥିବେ । ତେଣୁ ତାଙ୍କର ତିନୋଟି କବିତାର କିଛି କିଛି ଅଂଶ ଏଠାରେ ଉଦ୍ଧାର କରୁଛି –

"କି ହେବ ସେ ସ୍ୱରାଜ୍ୟ ଦେଇ,
ଯେବେ ମୋର ନ ମିଳିବ ପେଟ
ଖଟି ଖଟି ମଲେଣି ମୂଲିଆ
ଗୃହୀ ଚଷି ଦାନା କନା ନାଅଣ୍ଟ ।

ଅଧ ମାଣ ଜମି ଜଣକା
କୋରଡ଼ରେ ସେ ପୁଣି ବିକା
ଗାଁର ସଭିଏଁ କରଜ କରନ୍ତି
ଜଣେ ଦୁଇଜଣ ବସିଛନ୍ତି ସେଠି ।

\+ \+ \+ \+

ଜାଗ ହେ ଜାଗ ହେ ଜାଗ ପଲ୍ଲୀବାସୀ
ଜାଗନ୍ତୁ ଶ୍ରମଜୀବୀ ଜାଗ ହେ
ଜାଗ ହେ କୃଷକ ଜଗତ ପୋଷକ
ବଞ୍ଚିବାକୁ ନିଜେ ଲାଗ ହେ ॥

ଜଗତେ ସବୁରି ସମ ଅଧିକାର
କେ ବଡ଼ କେ ସାନ କେ ପ୍ରଭୁ କାହାର
କେ କାହାର ସାଧୁ କେ କାହା ଖାତକ
କିଏ ଦେବ କାହାକୁ ଭାଗ ହେ ॥

\+ \+ \+ \+

ସଂପାଦିବା ଲାଗି ଧନୀଙ୍କର ଧନ
ଶାସନ ମନ୍ତ୍ରର କଲେ ସରଜନ
ଅନ୍ୟାୟ ଶାସନ ଅନ୍ୟାୟ ବିଧାନ
ସବୁ ଅନ୍ୟାୟକୁ ଭାଙ୍ଗ ହେ ॥

\+ \+ \+ \+

ଉଠ ବେଗେ ଜାଗି ହେ
ପରାଣେ ଲାଗିବ ଯଦି ପଲ୍ଲୀହିତ ଲାଗି ହେବ ।
ନଗର ସହର ସୃଷ୍ଟି ପଲ୍ଲୀବାସୀ ଲାଗି ହେ,
ସେହି ପଲ୍ଲୀବାସୀ ଆଜି ଦୁଃଖ ଭୋଗୀ ହେ
ଚାଷୀ ଚାଷକରେ ଖଟି ଧନ ବାଢ଼େ ହେ
ଧନୀ ମହାଜନେ ଲୋଟି ତାର ଫଳ ଭୋଗୀ ହେ ॥

\+ \+ \+ \+

ଅବଶ୍ୟ ଏସବୁ ଗାନ୍ଧି ଚିନ୍ତାଧାରା ଅନ୍ତର୍ଭୁକ୍ତ । ଗାନ୍ଧିଜୀ ସ୍ୱାଧୀନତା ଆନ୍ଦୋଳନ ସହିତ ଯେଉଁ ସାମାଜିକ ଓ ଅର୍ଥନୈତିକ ସଂସ୍କାରକୁ ମିଶାଇ ଦେଇଥିଲେ, ତାହାହିଁ କବିଙ୍କ ଲେଖନୀରୁ ପ୍ରକାଶ ପାଉଛି । ତାହାହିଁ ଆଜି ସମାଜବାଦର ପ୍ରତିଷ୍ଠା ପାଇଁ ମୂଳଭିତ୍ତି ପ୍ରସ୍ତୁତ କରିଛି ।

୧୯୨୧ରେ ବିଦେଶୀ ବସନ ବର୍ଜନ ଓ ଆନୁଷ୍ଠାନିକ ଭାବେ ବିଦେଶୀ ବସନ ଦହନ କାର୍ଯ୍ୟକ୍ରମ ଥାଏ । ସ୍ତୂପାକାରରେ ବିଦେଶୀ ଲୁଗା ସଂଗ୍ରହକରି ସେଥିରେ ଅଗ୍ନି ସଂଯୋଗ ପୂର୍ବରୁ ବାଞ୍ଛାନିଧିଙ୍କ କୀର୍ତ୍ତନ ବୋଲି ଦଳେ ସେହି ସ୍ତୂପ ଚାରିପାଖେ ବୁଲିଲେ ।

"ତେଜ ତେଜ ଭାଇ ବିଦେଶୀ ବସନ ହେ ।"

ସ୍ତୂପରେ ଅଗ୍ନି ସଂଯୋଗ କରି ଦିଆହେଲା । କୀର୍ତ୍ତନର ଉନ୍ମାଦନାରେ ଜଣେ ନିଆଁ ଭିତରକୁ ପଶିଗଲେ ଓ ତାଙ୍କୁ ଟାଣି ଆଣିବାକୁ ହୋଇଥିଲା ।

ବାଲେଶ୍ୱର ଠାରୁ ବାର ମାଇଲ୍ ଦୂର ଇଞ୍ଚୁଡ଼ି ଚଟାଠାରେ ଲୁଣ ମାରିବା ପାଇଁ ଶହ ଶହ ନରନାରୀ ବାଳକ ବାଳିକା ଚାଲୁଛନ୍ତି ଶୋଭାଯାତ୍ରାରେ—ଆକାଶ-ଭେଦି ସ୍ୱର ଉଠୁଛି ବାଞ୍ଛାନିଧିଙ୍କ ସେହି ଅମର ସଂଗୀତ—

"ଗାଅ ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ,
ସ୍ୱାଧୀନ ସ୍ୱାଧୀନ ସ୍ୱାଧନ ହେ,
ଗାଅ ସାଗର ଭୂଧର ଅମ୍ବର ଚୁମ୍ବିତ
ଭାଲ ହିମାଚଳ ଗିରିବର କଂପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ହେ ।"

ଏ ସଂଗୀତ ସେତେବେଳେ ଶୁଣି ପଣ୍ଡିତ ନୀଳକଣ୍ଠ କହିଥିଲେ "ମୋର ରୋମାଞ୍ଚ ଜାତ ହେଉଛି ।"

କଟକରେ ପ୍ରାଦେଶିକ ସମ୍ମିଳନୀ । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସଭାପତି, କନିକା ଅତିଥୀଗୃହ ଚାଲିଥାଏ ବାଞ୍ଛାନିଧିଙ୍କ ସଂଗୀତ ବୋଲା ହେଲା—

"କେତେ ଧନ ଆଉ ଦୁଃଖିନୀ କନକା
ଅମିତ ଯାତନା ସହିବ,
ଦୁଃଖ ସହିବାକୁ ଦୁଃଖିନୀ ଜନମେ
ଜନମିଥିଲ କବା ଧରିବ ।

+ + + +

କନକା ଗାଇକ ଜମିଦାରୀ ଘର
ଏତେ ଅତ୍ୟାଚାର ଏତେ ଅନାଚାର ।

ହଜାର ହଜାର ଶ୍ରୋତୃମଣ୍ଡଳୀଙ୍କ ଆଖିରୁ ଲୁହ ବହିଲ । ଅତ୍ୟାଚାରର ନଗ୍ନରୂପ ଯେପରି ସମସ୍ତେ ଆଖି ଆଗରେ ଦେଖୁଛନ୍ତି, ଏପରି ହୃଦୟସ୍ପର୍ଶୀ ସେ କବିତା ଥିଲା ।

ଜହ୍ନ ମାମୁଁ କହ ମୋତେ,
କମ୍ପା ବାଘୁଣୀ ହୋଇଗଲୁ ଏତେ
ପିନ୍ଧୁ ପାଟି ଶାଢ଼ି ଉନ୍ଧିଲୁ
ଭାଇ ଭଉଣୀଙ୍କୁ ଭୋକେ ରଖିଲୁ ॥

ଗୀତ ଗାଇ ସ୍ୱେଚ୍ଛା ସେବକମାନେ ଗ୍ରାମେ ଗ୍ରାମେ ବୁଲୁଥିଲାବେଳେ ଘର ଭିତରୁ ସ୍ତ୍ରୀଲୋକେ ବିଦେଶୀ ଲୁଗା ଫୋପାଡ଼ି ଦିଅନ୍ତି—ଅଦ୍ଭୁତ ସେ ସଂଗୀତର ପ୍ରଭାବ । ସେ ସମୟକୁ ଯେପରି କବି ସଂଗୀତର ମୂର୍ଚ୍ଛନାରେ ଭସାଇ ଦେଇଛନ୍ତି, ସେହିପରି ମନେ ହେଉଥାଏ ।

ସମୟର ପ୍ରତୀକ ଥିଲେ କବି ବାଞ୍ଛାନିଧି । ଜନତାର ଭାବରେ ରୂପ ଦେଇ ସେ ସଂଗୀତ ରଚନା କରିଥିଲେ । ସାର୍ଥକ କବି ବାଞ୍ଛାନିଧି ଇତିହାସରେ ଅମର ହୋଇ ରହିବେ । ନିଜ ସମ୍ବନ୍ଧରେ କବି ଲେଖିଛନ୍ତି—

"ମୋର ଭଙ୍ଗା କୁଡ଼ିଆରେ ଭଙ୍ଗା ପଗଣରେ
ଭଙ୍ଗା କବିତାକୁ ଯୋଡୁଥିଲି,
ମୋର ଭଙ୍ଗା ଜୀବନକୁ କବିତା ଡଙ୍ଗାରେ
ଉଠାଇ ନେବାକୁ ଲୋଡୁଥିଲି ।"

ବାସ୍ତବିକ କବି କେବଳ ନିଜ ଜୀବନକୁ କବିତାରେ ଭସାଇଦେଇ ନ ଥିଲେ, ସେ ବିଶାଳ ଜନତାକୁ ମଧ୍ୟ ତାଙ୍କ ସାଙ୍ଗରେ ଭସାଇ ନେଇ ଯାଇଥିଲେ । ଧନ୍ୟ କବି ବାଞ୍ଛାନିଧି, ଧନ୍ୟ ଅମର କବିତାର ପ୍ରତିଭା !!

**ଡକ୍ଟର ହରେକୃଷ୍ଣ ମହତାବ**

" × × × I know that the last many years Manindra has been collecting materials to write the poet's life. I encouraged him in this matter because although Birakishore Das's life has been published and widely appreciated the life of Banchhanidhi Babu Similarly has not been published yet. In fact Manindra once showed me the manuscript and I corrected it at certain places and asked him to collect further materials. × × ×"

**Dr. Harekrushna Mahatab.**

Bhubaneswar/Ekamra Nivas

8-9-84

# ଖଣ୍ଡିଏ ଚିଠି

କଟକ

ତା ୨୭-୮-୮୪

ଆୟୁଷ୍ମାନ ମନୋଜ୍,

ତମର ୧୫-୮-୮୪ ତାରିଖର ଚିଠି ମୁଁ ଏବେ ପାଇ ଚିଠି ଲେଖୁଛି । ଆଜିକାଲି ଚିଠି ପାଇବାରେ ସାଧାରଣତଃ ବିଳମ୍ବ ହେଉଥିବାରୁ ତମ ଚିଠି ମଧ୍ୟ ମୁଁ ବିଳମ୍ବରେ ପାଇଲି ।

ବାଞ୍ଛାନିଧି ବାବୁଙ୍କ ବିଷୟରେ କଅଣ ଲେଖି ପାରିବ ? ସ୍ୱାଧୀନତା ସଂଗ୍ରାମ ସମୟରେ ଗୀତ ରଚନାକରି ଏବଂ ସଭା, ସମ୍ମିଳନୀ ଆଦିରେ ବୋଲି ସେ ଯେଉଁ ଉତ୍ସାହ ସୃଷ୍ଟି କରୁଥିଲେ, ତାହା ବର୍ତ୍ତମାନ ସମୟରେ କଳ୍ପନାର ଅତୀତ । ସେତେବେଳର ବାତାବରଣ ଯେପରି ଥିଲା, ତାହା କ'ଣ କିଏ ବୁଝାଇ କହି ପାରିବ ? ଯେ ନିଜ ଶୁଣିଛନ୍ତି, ଦେଖିଛନ୍ତି, ସେ ଉନ୍ମାଦନାକୁ ଅନୁଭବ କରିଛନ୍ତି, ତାଙ୍କ ପକ୍ଷରେ ମଧ୍ୟ ତାହା ବ୍ୟକ୍ତ କରିବା କଠିନ । ତେଣୁ ମୁଁ ସେ ବିଷୟ କଅଣ ଲେଖିବି ?

ବର୍ତ୍ତମାନ ମୁଁ ଭାବୁଛି, ଭାରତ ସ୍ୱାଧୀନ ହେବ, ସ୍ୱାଧୀନ ଭାରତରେ ଯେପରି ସମାଜର କଳ୍ପନା ସେମାନେ କରୁଥିଲେ, ତାହା ସିଦ୍ଧ କରିବା ପାଇଁ ଚେଷ୍ଟା କରିବା ତେବେ ତାହାହିଁ ସ୍ମୃତିରକ୍ଷା କାର୍ଯ୍ୟ ହେବ ।

ସ୍ୱାଧୀନ ଭାରତରେ ଶୋଷଣ, ଆଳସ୍ୟ ପରପୀଡ଼ନ, ନିଶାଦ୍ରବ୍ୟ, ବିଳାସ ଆଦି ଦୂର କରିବାର କଳ୍ପନା କରାଯାଉଥିଲା । ବର୍ତ୍ତମାନ ସେହି ସବୁ କାର୍ଯ୍ୟ କଲାପରେ ଦେଶ ସ୍ୱାଧୀନ ହେଲା ବୋଲି ଲୋକେ ଅନୁଭବ କରିବେ, ବୟସ ବେଶୀ ହେବାରୁ ମୋର ଆଉ ସେପରି କାର୍ଯ୍ୟ କରିବାର ଶକ୍ତି ନାହିଁ । ମାତ୍ର ମୁଁ ତମମାନଙ୍କ ଠାରୁ ଆଶା କରୁଛି ଯେ, ଗାନ୍ଧିଜୀଙ୍କ ପରିକଳ୍ପିତ ସ୍ୱାଧୀନ ଭାରତ ତମେମାନେ କାର୍ଯ୍ୟତଃ କରିବ ।

ଗୋଟିଏ ଅଞ୍ଚଳ ବାଛି ଠିକ୍ କର, ଯେଉଁଠାରେ କେହି ଅନାହାରରେ ରହିବେ ନାହିଁ କି କେହି କାହାପ୍ରତି ଅନ୍ୟାୟ ଆଚରଣ କରିବେ ନାହିଁ ଏବଂ କେହି ଶୋଷିତ ବା ଶୋଷକ ରହିବେ ନାହିଁ । ତାହା କରିପାରିଲେ ଗୋଟିଏ ବଡ଼ କଥା ହେବ ।

ବାଞ୍ଛାନିଧି ବାବୁ ଭାରତକୁ ସ୍ୱାଧୀନ କରିବାପାଇଁ କାମ କରିଥିଲେ । ସ୍ୱାଧୀନ ଭାରତରେ ଯେପରି ଶୋଷଣ ବା ଶୋଷିତ କେହି ନ ରହିବେ ସେଥିପାଇଁ ଯୋଜନା କର । ସମୁଦାୟ ଭାରତ ପାଇଁ କାମ ନକରି ଗୋଟିଏ ଅଞ୍ଚଳ ଧରି କାମକଲେ ବଡ଼ ଭଲ କଥା ହୋଇ ପାରନ୍ତା । ଆଶା, ତମର ସବୁ ଭଲ ।

ରମାଦେବୀର

ଆଶୀର୍ବାଦ

# ॥ ତୁଳସୀ ଚଉରା ॥

୧୯୫୯ ମସିହା । ଯେତେବେଳେ ମୁଁ ଭଦ୍ରକ ହାଇସ୍କୁଲରେ ସପ୍ତମ ଶ୍ରେଣୀରେ ପଢ଼ୁଥାଏଁ । 'ମାତୃଭୂମି' ଦୈନିକ ସମ୍ବାଦ ପତ୍ରର, ସାପ୍ତାହିକ ଶିଶୁ ଲେଖା ସ୍ତମ୍ଭ 'କିଶୋର ଫଳକ'ରେ 'ଭ୍ରମର ପରି ପିଲଟିଏ' ଶୀର୍ଷକରେ ମୋର ଏକ ଲେଖା ପ୍ରକାଶ ପାଇଥିଲା । ସେଇଟି ସ୍ୱର୍ଗତ ବାଞ୍ଛାନିଧିଙ୍କ ବିଷୟରେ ରଚିତ ପ୍ରଥମ ଲେଖା । ଲେଖାଟି ବଡ଼ବାପା ସ୍ୱର୍ଗତ ପ୍ରେମାନନ୍ଦ ମହାନ୍ତିଙ୍କର ବେଶ ପସନ୍ଦ ହୋଇଥିଲା । ତାଙ୍କର ଠାରୁ ଉତ୍ସାହ ପାଇ ଏହି ଦିଗରେ ମନ ବଳାଇଲି ।

ସମୟ ସୁଅ ବହି ଚାଲିଲା । ୧୯୬୩ ମସିହାରେ ଆମେ ଭଦ୍ରକ କଲେଜର ସହପାଠୀ କେତେଜଣ ମିଶି ( ଶ୍ରୀ ନନ୍ଦକିଶୋର ମହାନ୍ତି ଓ ଶ୍ରୀ ପରମାନନ୍ଦ ରାଉତ ପ୍ରଭୃତି ) ଏକ ସାହିତ୍ୟାନୁଷ୍ଠାନ 'ଭଦ୍ରକ ରବିବାସରୀୟ ସାହିତ୍ୟ ଚକ୍ର' ନାମରେ ଗଠନ କଲୁଁ । ଏହି ଅନୁଷ୍ଠାନ ଆନୁକୂଲ୍ୟରେ ବିଭିନ୍ନ କବିଙ୍କ ଜୟନ୍ତୀ ଓ ଶ୍ରାଦ୍ଧୋତ୍ସବ ପାଳନ ଅବସରରେ କବି ବାଞ୍ଛାନିଧିଙ୍କର ମଧ୍ୟ ପାଳନ କରାଗଲା । ସେଥିପାଇଁ ତାଙ୍କ ଜୀବନୀ ଓ ସାହିତ୍ୟକୃତି ପ୍ରସଙ୍ଗରେ ଆଲୋଚନାର ଆବଶ୍ୟକତା ପଡ଼ିଲା । ତେଣୁ ବାଞ୍ଛାନିଧିଙ୍କ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତିମାନଙ୍କ ଠାରୁ କିଛି କିଛି ଉପାଦାନ ସଂଗ୍ରହ କରି ବିଭିନ୍ନ ସମୟରେ ସମ୍ବାଦ ପତ୍ର, ପତ୍ର ପତ୍ରିକା ଏବଂ ଆଲୋଚନା ଚକ୍ର ପାଇଁ ଏ ସଂପର୍କରେ ଲେଖାଲେଖି କଲି ।

ଭଦ୍ରକ ହାଇସ୍କୁଲରେ ଷଷ୍ଠ ଶ୍ରେଣୀରେ ମୁଁ ଏକ ହାତ ଲେଖା ପତ୍ରିକା 'ପଥିକ' ପ୍ରକାଶ କରୁଥିଲି । ମୁଁ ଥିଲି ଏହାର ପ୍ରତିଷ୍ଠାତା, ଏହା ଦୁଇ/ତିନି ବର୍ଷ ପର୍ଯ୍ୟନ୍ତ ପ୍ରକାଶ ପାଇଥିଲା । ତେଣୁ, ସାହିତ୍ୟ ପ୍ରତି ମୋର ଏକ ଅନୁରାଗ ଭାବ ଜନ୍ମିତ ଆସି ଯାଇଥିଲା । ଅଷ୍ଟମ ବା ନବମ ଶ୍ରେଣୀରେ ମୁଁ ପଢ଼ିଲାବେଳେ ବଡ଼ବାପା ସ୍ୱର୍ଗତ ପ୍ରେମାନନ୍ଦ ମହାନ୍ତି ମୋତେ ବାଞ୍ଛାନିଧିଙ୍କ ଅପ୍ରକାଶିତ ରଚନା ସଂଗ୍ରହ କରିବାକୁ ଦାୟିତ୍ୱ ଦେଇଥିଲେ । ବାଞ୍ଛାନିଧି ଜୀବିତାବସ୍ଥାରେ 'ଉତ୍କଳ ବୀଣା' ନାମରେ ଦୁଇ ଖଣ୍ଡ ପୁସ୍ତିକା ଦୁଇଟି ଝଙ୍କାରରେ ବିଭକ୍ତ କରି ପ୍ରକାଶ କରିଥିଲେ । ଏହା ବ୍ୟତୀତ ତାଙ୍କର ଅସଂଖ୍ୟ ସଂଗୀତ ଅପ୍ରକାଶିତ ହୋଇ ବିଭିନ୍ନ ଲୋକଙ୍କ ପାଖରେ ରହି ଯାଇଥିଲା । ସେତେବେଳେ ବଡ଼ବାପା ପ୍ରେମାନନ୍ଦ 'ଓଡ଼ିଶା ସାହିତ୍ୟ ଏକାଡେମୀ' ଆନୁକୂଲ୍ୟରେ 'ବାଞ୍ଛାନିଧି ପଦ୍ୟାବଳୀ' ପ୍ରକାଶ କରିବାକୁ ଡକ୍ଟର ହରେକୃଷ୍ଣ ମହତାବଙ୍କ ଜରିଆରେ ଉଦ୍ୟମ ଚଳାଇଥିଲେ । ଉତ୍କଳ ବୀଣା'ର ଦୁଇଟି ଝଙ୍କାର ସମେତ ଆଉ ଅପ୍ରକାଶିତ ସଂଗୀତ ଗୁଡ଼ିକ ସଂଗ୍ରହ କରିବାର

ଆବଶ୍ୟକତା ପଡ଼ିଲା । ଏଥିରେ ସେ ମୋତେ ଉତ୍ସାହିତ କରାଇ ଦେଲେ । ବାଞ୍ଛାନିଧିଙ୍କ ସମସାମୟିକ ଅଥବା ତାଙ୍କ ଧ୍ୱେଷ୍ଟର ଦଳର ଅଭିନେତା, କର୍ମକର୍ତ୍ତାମାନଙ୍କ ପାଖକୁ ମୋତେ ବାରମ୍ବାର ପଠାଇଲେ ଓ ପୁରୁଣା ବସ୍ତାମାନରୁ ବାଞ୍ଛାନିଧିଙ୍କ ରଚିତ ସଂଗୀତମାନ ସଂଗ୍ରହ କରି ନିଜ ଖାତାରେ ମୋତେ ଲେଖି ଆଣିବାକୁ ପଡ଼ୁଥିଲା । ଏହି ପ୍ରସଙ୍ଗରେ ମୁଁ ନଟଗନ୍ଧର୍ବ ସ୍ୱର୍ଗତ ଗୌରାଙ୍ଗ ଚନ୍ଦ୍ର ଦାସଙ୍କ ମାର୍କେଟାଇଞ୍ଜିତ ଦୋକାନ ଏବଂ ମଚ୍ଛିନ୍ଦ୍ରାପୁରସ୍ଥିତ ବାସଭବନକୁ ବାରମ୍ବାର ଯିବାକୁ ପଡ଼ୁଥିଲା । ସେ ଥିଲେ ବାଞ୍ଛାନିଧିଙ୍କ ସଂଗୀତର ପ୍ରଥମ ସ୍ୱରକାର । ତାଙ୍କଠାରୁ ମୁଁ ବାଞ୍ଛାନିଧିଙ୍କ ସଂଗୀତ ଓ ପ୍ରବନ୍ଧ ସଂଗ୍ରହ କରିଥିଲି । ବଡବାପା ଏବଂ ମୋ ବାପା ଶ୍ରୀ ବିବେକାନନ୍ଦ ମହାନ୍ତିଙ୍କ ପୁରୁଣା ବସ୍ତାମାନରୁ କେତେକ ଦୁଷ୍ପ୍ରାପ୍ୟ ସଂଗୀତ ଓ ଚିଠି ସଂଗ୍ରହ କରିଥିଲି । 'ବାଞ୍ଛାନିଧି ପଦ୍ୟାବଳୀ' (ଉତ୍କଳ ବାଣୀ ବ୍ୟତୀତ )ର ପ୍ରେସ୍‌କପି ମୁଁ ପ୍ରସ୍ତୁତ କରିବାର ସୁଯୋଗ ପାଇଥିଲି ଏବଂ ତାକୁ ବଡବାପା 'ଓଡ଼ିଶା ସାହିତ୍ୟ ଏକାଡେମୀ'କୁ ପ୍ରେରଣ କରିଥିଲେ । ଏହା ୧୯୬୩ ମସିହାରେ ପ୍ରକାଶ ପାଇଥିଲା ।

କବି ବାଞ୍ଛାନିଧିଙ୍କ ସଂଗୀତ ସଂଗ୍ରହ କଲାବେଳେ ତାଙ୍କ ଜୀବନୀ ପ୍ରସଙ୍ଗରେ ନଟଗନ୍ଧର୍ବ ଗୌରାଙ୍ଗ ଚନ୍ଦ୍ର ଦାସ, ଶ୍ରୀ ବୃନ୍ଦାବନ ଚନ୍ଦ୍ର ମହାନ୍ତି, (ଇରମ), ସ୍ୱର୍ଗତ ସୁଦର୍ଶନ ପଣ୍ଡା (ବଇଷ୍ଟା ) ଏବଂ ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ପାଢ଼ୀ (ଇରମ )ଙ୍କ ଠାରୁ କିଛି କିଛି ଶୁଣି ତାକୁ ନୋଟ୍‌କରି ନେଉଥିଲି । ସେତେବେଳେ ତାଙ୍କର ବ୍ୟଥିତମ ଜୀବନ କଥା ଶୁଣି ମୋର କୈଶୋର ମନ ଦ୍ରବୀଭୂତ ହୋଇ ଯାଇଥିଲା । ମୁଁ ଭାବିଲି, ଏତେସବୁ ଭଲ ଭଲ କଥା ବଡବଡ କଥା, କଅଣ ସମୟ ସ୍ରୋତରେ ଏମିତି ମିଶି ଯିବ ? କେହି ଏକଥା ଜାଣି ପାରିବେ ନାହିଁ ? ଶୁଣି ପାରିବେ ନାହିଁ ? ଏହାକୁ ସ୍ଥାୟୀରୂପ ଦେବାପାଇଁ ଜୀବନୀ ଗ୍ରନ୍ଥଟିଏ ରଚନା କଲେ କେମିତି ହୁଅନ୍ତା ? ମୁଣ୍ଡକୁ ଏ ଭାବନା ପଶିଲା ମାତ୍ରେ ମୁଁ ସେହି ସବୁ ନୋଟକୁ ସାଇତି ରଖିଲି । ସୁବିଧା ସୁଯୋଗ ଦେଖି ଅଧିକ ତଥ୍ୟ ବିଭିନ୍ନ ସ୍ଥାନରୁ ବିଭିନ୍ନ ବ୍ୟକ୍ତିଙ୍କ ଠାରୁ ସଂଗ୍ରହ କରିବାରେ ଲାଗିଗଲି । ପ୍ରଥମେ ଘରୁ ଏହି କାର୍ଯ୍ୟ ଆରମ୍ଭ କଲି । କାରଣ, ଇଂରାଜୀରେ ଏକ ପ୍ରବଚନ ଅଛି– "Charity begins at home." ବଡ଼ବାପା, ବଡ ବାପାଙ୍କ ସହିତ ଆମ ଘରର ବୟୋବୃଦ୍ଧ ମୂଲିଆ ଛତଭାଇ, (ଶଚୀନ୍ଦ୍ର ବେହେରା, ଢଳଦା, ୰ ଉପେନ୍ଦ୍ର ବେହେରା, ଢଳଦା ) ଶିରିଆ ବଉ, ବଡ଼ମା (୰ ପଦ୍ମାବତୀ ମହାନ୍ତି, ଇରମ ) ଭଦ୍ରଙ୍କ ବାସ ଘରେ ଆମ ସେବା ଯତ୍ନରେ ଅନବରତ ବ୍ୟସ୍ତ ଥିବା ରାମଦା' ( ୰ ରାମ ଚନ୍ଦ୍ର ମହାନ୍ତି, ଇରମ), ୰ ଜଗବନ୍ଧୁ ପାଣି (ସଦେଇପଡ଼ା ), ବନ୍ଧୁଆ ଅଜା (୰ ପ୍ରାଣବନ୍ଧୁ ମହାନ୍ତି, ଇରମ), ଶ୍ରୀ ଅନିରୁଦ୍ଧ ମହାନ୍ତି (ଇରମ), ଶ୍ରୀ ବଳରାମ ପାଣ୍ଡବ (ଗୋକୁଳପୁର) ଶ୍ରୀ ଗୌରାଙ୍ଗ ଚନ୍ଦ୍ର ମହାନ୍ତି (ବରଣ୍ଡୁଆ), ଶ୍ରୀ ଗଣେଶ ପ୍ରସାଦ ତ୍ରିପାଠୀ (ଇରମ),

୰ ଜଗନ୍ନାଥ ମହାନ୍ତ (ଈରମ), ଶ୍ରୀ କମଳା ପ୍ରସାଦ କର (ପଟ୍ଟୁଆଁ) ଏବଂ ୰ ନନ୍ଦକିଶୋର ଦାସ (ଯୋଚ୍ଚ) ପ୍ରଭୃତିଙ୍କ ସ୍ମୃତିଚାରଣ ସଂଗ୍ରହ କରି ପଠାଇଲି ।

• କବି ମଞ୍ଜୁଳ କୃଷ୍ଣପ୍ରସାଦ ବସୁ 'ଭଦ୍ରକ ଗବର୍ଣ୍ଣମେଣ୍ଟ ହାଇସ୍କୁଲ୍'ର ବାଞ୍ଛାନିଧି ଜୟନ୍ତୀକୁ ଭଦ୍ରକ କଲେଜ ଆସିଥିଲେ । ସେ ମଧ୍ୟ କିଛି ସ୍ମୃତିଚାରଣ ଯୋଗାଇ ଦେଇଥିଲେ । ଭଦ୍ରକର ସୁପରିଚିତ ଆଡ଼ଭୋକେଟ୍ ଶ୍ରୀ ନବୀନକୃଷ୍ଣ ଚନ୍ଦ୍ର ଭାରତର ତଥା ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଐତିହାସିକ ପୃଷ୍ଠଭୂମିରେ ବାଞ୍ଛାନିଧିଙ୍କ ଆବର୍ତ୍ତିକୁ ନେଇ କେତୋଟି ଲେଖା 'ଆସନ୍ତାକାଲି' ଓ 'ଗବର୍ଣ୍ଣମେଣ୍ଟ ପ୍ରଜାତନ୍ତ୍ର'ରେ ଏକାଧିକ ଥର ଲେଖିଥିଲେ ।

ଏହିସବୁ ହେଲା କବି ବାଞ୍ଛାନିଧିଙ୍କ ଜୀବନୀ ସଂଗ୍ରହ ମୂଳରେ ଥିବା ବିଭିନ୍ନ ଘଟଣା ।

ଥରେ ଗ୍ରୀଷ୍ମ ଛୁଟିରେ ଈରମର ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପାତ୍ରୀଙ୍କ ଘରେ ପହଞ୍ଚିଲି । ସେତେବେଳକୁ ତାଙ୍କ ଦୃଷ୍ଟିଶକ୍ତି କ୍ଷୀଣ ହୋଇ ଆସିଥାଏ । ମାତ୍ର ସ୍ମୃତି ଶକ୍ତି ବେଶ୍ ପ୍ରଖର ଥିଲା । ବାଞ୍ଛାନିଧିଙ୍କ ଜୀବନୀ ସଂଗ୍ରହ କଥା ମୁଁ ଯେପରି କହିଛି, ସେ ବଡ଼ ଉତ୍ସାହର ସହିତ ତାଙ୍କର ସ୍ମୃତି-ପେଟିକା ଖୋଲି ବସିଲେ । ଗୋଟିଏ ବୈଠକରେ ନୁହେଁ, ଏକାଧିକ ବୈଠକରେ ତାଙ୍କଠାରୁ ମୁଁ ଉପାଦାନ ସଂଗ୍ରହ କରିବାରେ ଲାଗିଲି । ତାଙ୍କ ପ୍ରଦତ୍ତ ତଥ୍ୟ ଗୁଡ଼ିକରୁ ବାଞ୍ଛାନିଧିଙ୍କର ଏକ ସାମଗ୍ରିକ ବ୍ୟକ୍ତିତ୍ୱର କିଛି ସୂଚନା ପାଇଲି । ଏହି ସବୁ ଉପାଦାନକୁ ପୁଞ୍ଜି କରି ଏହି ଜୀବନୀ ଗ୍ରନ୍ଥର ଶୁଭାରମ୍ଭ ହେଲା ।

ବାଞ୍ଛାନିଧି ଦିନଲିପି ବା ଡାଏରୀ ଲେଖୁ ନଥିଲେ କିମ୍ବା ତାଙ୍କ ସହକର୍ମୀମାନେ ତାଙ୍କ ବିଷୟରେ କିଛି ଟିପ୍ପଣୀ ଗୁଡ଼ାଇ ନଥିଲେ । ତାଙ୍କ ଜୀବନସ୍ରୋତ ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନମୁଖୀ ହୋଇଛି । ଏହି ବିଭିନ୍ନ ପର୍ଯ୍ୟାୟ ସହିତ କୌଣସି ବ୍ୟକ୍ତି ତାଙ୍କ ସାଥୀରେ ଧାରାବାହିକ ଭାବରେ ନ ଥିଲେ । ତେଣୁ, ତାଙ୍କ ଜୀବନର କେତେକ ସମୟର ବିସ୍ତୃତ ତଥ୍ୟ ମିଳିବାବେଳେ, କେତେକ ସମୟରେ ସଂକ୍ଷିପ୍ତ ତଥ୍ୟ ମଧ୍ୟ ମିଳିବା ସମ୍ଭବ ହୋଇନାହିଁ । ସେଥିପାଇଁ ପାଠକଙ୍କୁ ଅସଂଲଗ୍ନ ଲାଗିବା ଅତି ସ୍ୱାଭାବିକ କଥା । ତାଙ୍କର ମିଳିଥିବା କେତୋଟି ଚିଠିରୁ ତାଙ୍କର ସମଗ୍ର ଜୀବନ ପ୍ରସଙ୍ଗରେ ଜାଣିବା ଆଦୌ ପର୍ଯ୍ୟାପ୍ତ ନୁହେଁ । ସେଥିରେ ପୁଣି ସହକର୍ମୀମାନଙ୍କର ବିସ୍ମୃତି ଏହି କାର୍ଯ୍ୟରେ ବହୁ ଅନ୍ତରାୟ ସୃଷ୍ଟି କରିଛି । ପୁନଶ୍ଚ ତାଙ୍କ ଜୀବନୀ ସଂଗ୍ରହ ଆରମ୍ଭ କରିବାରେ ମଧ୍ୟ ବହୁ ବିଳମ୍ବ ଘଟିଛି । ତେଣୁ ତାଂକ ସହକର୍ମୀ ବା ସମସାମୟିକ ଅନେକ ବ୍ୟକ୍ତିଙ୍କର ମୃତ୍ୟୁ ଘଟିଲାଣି । ଫଳରେ ଅନେକ ତଥ୍ୟ ଲୋକଲୋଚନର ଅନ୍ତରାଳରେ ରହିଗଲା ।

ବାଞ୍ଛାନିଧି ମୋ ପାଇଁ ଇତିହାସର ଏକ ଚରିତ୍ର । କାରଣ ମୁଁ ଧରାପୃଷ୍ଠରେ ମୋ

ବାପାଙ୍କର ବିବାହ ଅନୁଷ୍ଠିତ ହୋଇଥିଲା । ଏହି ଅଦେଖା ଓ ଅଶୁଣା ବ୍ୟକ୍ତିଙ୍କ ସଂପର୍କରେ ଯାହା କିଛି ତଥ୍ୟ ସଂଗ୍ରହ କରିଛି, ସେ ସବୁକୁ ସାମଗ୍ରିକ ଭାବରେ ବିଗ୍ଭର କଲେ ମନେହୁଏ – ଏହି ବଳିଷ୍ଠ ବ୍ୟକ୍ତିତ୍ୱବାନ ଚରିତଟି ସତରେ କେତେ ଅସହାୟ ! ଦେଶ ସେବାରେ ସେ ନିଜ ଜୀବନକୁ ସଂପୂର୍ଣ୍ଣ ଭାବରେ ବିନିଯୋଗ କରିବାର ସୁଯୋଗ ପାଇ ନାହାନ୍ତି । କାରଣ, ପିତାଙ୍କ ସ୍ୱପ୍ନ ଓ ପରିବାର ତାଙ୍କୁ ପଛରୁ ଟାଣିଛି । ଦେଶ ଓ ପରିବାର ଉଭୟ ନାବରେ ସେ ପାଦଦେଇ ଥିବାରୁ ତାଙ୍କ ଜୀବନୀ ଏକରୁଣ ହୋଇ ଉଠିଛି । ଆଉ, ସେ ଯେତେବେଳେ ସଫଳତାର ଉଚ୍ଚ ଶିଖରକୁ ଅଗ୍ରସର ହେଉଥିଲେ, ଠିକ୍ ସେତିକିବେଳେ ମୃତ୍ୟୁର କଳା ଗୁଢର ତାଙ୍କୁ ଆଚ୍ଛାଦିତ କରିଦେଲା । ତାଙ୍କର ଇଚ୍ଛା କେବଳ ଇଚ୍ଛାରେ ହିଁ ରହିଗଲା । ଏକ ଅସହାୟ ଜୀବନ ଅସମାପ୍ତି ମଧ୍ୟରେ ସମାପ୍ତ ହୋଇଗଲା । ମାତ୍ର ଏକଚାଳିଶ ବର୍ଷ [୧୮୯୭-୧୯୩୮] ବୟସରେ ସେ ସ୍ୱର୍ଗାରୋହଣ କଲେ ! କେତେ ବା ବୟସ !

ତାଙ୍କର ପ୍ରାୟ ଅର୍ଦ୍ଧଶତାଧିକ ଗୀତ କବିତା ସହିତ ଗୋଟିଏ ପ୍ରବନ୍ଧ ଓ ଗୋଟିଏ ନାଟକ ମୁଁ ଉଦ୍ଧାର କରିଛି । ଏହାର 'ପରିଶିଷ୍ଟ'ରେ ସେ ସବୁକୁ ପରିସ୍ଥ କରିବାର ବାସନା ଥିଲା । ମାତ୍ର କେତେକ କାରଣରୁ ତାହା ସ୍ଥଗିତ ରହିଲା, ପରେ ଏହା ପ୍ରକାଶ କରାଯିବ ।

'ଜାତୀୟ କବି ବାଞ୍ଛାନିଧି ପରିକ୍ରମା' ଶୀର୍ଷକରେ ବିଭିନ୍ନ ଲେଖକଙ୍କର ଆଲୋଚନା ଓ ସ୍ମୃତିଚାରଣର ସଂକଳନ ମୁଁ ସଂପାଦନା କରିଛି । ଏବେ, ଏହା ମୁକ୍ତି ଅପେକ୍ଷାରେ, ଆନନ୍ଦର କଥା, କେତେଜଣ ତରୁଣ ଗବେଷକ ପି:ଏଚ.ଡ଼. ଡ଼ିଗ୍ରୀ ପାଇଁ ବାଞ୍ଛାନିଧିଙ୍କ କୃତି ଉପରେ ଗବେଷଣା କରିବାକୁ ମନ ବଳାଇଛନ୍ତି । ଆଶା, ଖୁବ୍ ଶୀଘ୍ର ସେମାନେ ସଫଳ ହେବେ ।

ଏହି ଜୀବନୀ ଗ୍ରନ୍ଥ ପ୍ରକାଶନ ପ୍ରସଙ୍ଗରେ ହଠାତ୍ ଘନେ 'ମିଛ ମେଘ' ଭ୍ରମଗ୍ର ଆକାଶକୁ ଅଚ୍ଛନ୍ନ କରି ପକାଇଥିଲା । ମାତ୍ର, ଏବେ ଆକାଶ ନିର୍ମଳ ହୋଇଯାଇଛି । ବାଞ୍ଛାନିଧିଙ୍କ ଜୀବନ ସମଗ୍ର ଭାରତ ପାଇଁ ଏକ ସମର୍ପିତ ଜୀବନ, ତେଣୁ ସେହି ମନୀଷୀଙ୍କ ଜୀବନୀ ସଂଗ୍ରହ ରଚନା ଓ ପ୍ରକାଶ କରିବା ପ୍ରତ୍ୟେକ ସଂସ୍କୃତି ସଚେତନ ଭାରତୀୟଙ୍କର ଦାୟିତ୍ୱ ଓ ଅଧିକାର ରହିଛି । ଏହି 'ମିଛମେଘ' ହିଁ ଏହି ଜୀବନୀ ଗ୍ରନ୍ଥ ପ୍ରକାଶନରେ ଦୁଇବର୍ଷ ବିଳମ୍ବ ଘଟାଇବା ପାଇଁ ଦାୟୀ । ଉତ୍ତର ପୁରୁଷ ଓ ଇତିହାସ ଏହାର ବିଗ୍ଭର କରିବ । ପାଠକମାନଙ୍କ ପାଖରେ ଏହି ଅନିଚ୍ଛାକୃତ ବିଳମ୍ବ ପାଇଁ ମୁଁ ଦୁଃଖିତ ।

ନବଉତ୍କଳର ପ୍ରତିଷ୍ଠାତା, ଓଡ଼ିଶା ବିପ୍ଳୋବୁଦ୍ଧ ନେତା, ଐତିହାସିକ, ସାହିତ୍ୟିକ,

ସାମ୍ବାଦିକ ଓ ସମାଜସେବୀ ତଥା ସ୍ୱାଧୀନତା ସଂଗ୍ରାମୀ ୯ ଡ଼କ୍ଟର ହରେକୃଷ୍ଣ ମହତାବ ( ଯିଏ କି ବାଞ୍ଛାନିଧିଙ୍କର ପ୍ରିୟ ଛାତ୍ର ଥିଲେ ) କେତେକ ତଥ୍ୟ ଯୋଗାଇ ଦେଇଛନ୍ତି । କେବଳ ସେତିକି ନୁହେଁ, ଏହି ଜୀବନୀ ଗ୍ରନ୍ଥର ପାଣ୍ଡୁଲିପିକୁ ପାଠକରି ଆବଶ୍ୟକୀୟ ପରାମର୍ଶ ପ୍ରଦାନ କରିଥିବାରୁ ଏବଂ ପୁସ୍ତକ ପ୍ରକାଶନ ପାଇଁ ପାଞ୍ଚଶହ ଟଙ୍କା ଆର୍ଥିକ ସାହାଯ୍ୟ କରି ଉତ୍ସାହିତ କରିଥିବାରୁ ସେହି ପରିବାର, ମହାନ ଆତ୍ମାଙ୍କଠାରେ ବାରମ୍ବାର କୃତଜ୍ଞତା ଜଣାଉଛୁ । କେବଳ ସେତିକି ନୁହେଁ, ଇରମରେ ପ୍ରତିଷ୍ଠିତ 'ବାଞ୍ଛାନିଧି ସ୍ମାରକ ନାଟ୍ୟନିକେତନ' ସାଂସ୍କୃତିକ ଅନୁଷ୍ଠାନ ପାଇଁ ତାଙ୍କର ସାହାଯ୍ୟ ଓ ସହାନୁଭୂତି ସବୁଦିନେ ସ୍ମରଣୀୟ ହୋଇ ରହିବ ।

ସ୍ୱର୍ଗତ ଶଙ୍କର୍ଷଣ ନାୟକ (ଇରମ ) ବାଞ୍ଛାନିଧିଙ୍କ ଜନ୍ମଜାତକ ଯୋଗାଇ ଦେଇଥିଲେ । ଏହାର ରଚନା ପାଇଁ ଯେଉଁ ସବୁ ପୁସ୍ତକ ଓ ପତ୍ରପତ୍ରିକାର ସାହାଯ୍ୟ ଗ୍ରହଣ କରିଛୁ, ସେସବୁର ଲେଖକ ଓ ସଂପାଦକ ମାନଙ୍କଠାରେ ମୁଁ କୃତଜ୍ଞତା ଜଣାଉଛୁ । ପ୍ରଚ୍ଛଦ ପଟ୍ଟ ପାଇଁ ଶ୍ରଦ୍ଧେୟ ତରୁଣ ଶିଳ୍ପୀ ଶ୍ରୀ ଗୋବର୍ଦ୍ଧନ ମଲ୍ଲିକ (ନୂଆଗାଁ, ଇରମ ) ଏବଂ ଅନୁଜ ପ୍ରଥମ ପ୍ରସିଦ୍ଧ ଯୁବଶିଳ୍ପୀ ଶ୍ରୀ ଅଶୋକ କୁମାର ମହାନ୍ତି ( ପାଳିଆବନ୍ଧା ) ଏବଂ ସର୍ବୋପରି ଏହାର ମୁଦ୍ରାକର ଶ୍ରଦ୍ଧାସ୍ପଦ ଶ୍ରୀ ଶରତ କୁମାର ନାୟକ (କଳିଙ୍ଗ ପ୍ରିଣ୍ଟର୍ସ, ଚରଂପା, ଭଦ୍ରକ )ଙ୍କ ଉପକାର ଭୁଲିବାର ନୁହେଁ । ଇରମ ଅଞ୍ଚଳର ପ୍ରସିଦ୍ଧ ବୟୋବୃଦ୍ଧ ପଣ୍ଡିତ ମହାଶୟ ଶ୍ରୀଯୁକ୍ତ ସୁଧାକର ତ୍ରିପାଠୀ (ସଦେଇପଡ଼ା) ପୁସ୍ତକର ପ୍ରାରମ୍ଭରେ ବାଞ୍ଛାନିଧିଙ୍କ ପ୍ରସଙ୍ଗରେ ସଂସ୍କୃତ ଶ୍ଳୋକ ରଚନା କରିଥିବାରୁ ଏହି ଶୁଭ ଅବସରରେ ତାଙ୍କୁ ପ୍ରଣତି ଜଣାଉଛୁ ।

ଇରମ ଅଞ୍ଚଳର ସୁପରିଚିତ ଓ ପୁରାତନ ସାଂସ୍କୃତିକ ଅନୁଷ୍ଠାନ 'ବାଞ୍ଛାନିଧି ସ୍ମାରକ ନାଟ୍ୟ ନିକେତନ' ( ସ୍ଥାପିତ ୧୯୬୨ )ର କର୍ମକର୍ତ୍ତା ଓ ସଦସ୍ୟମାନେ ବିଭିନ୍ନ ସମୟରେ ଏହି ଜୀବନୀର ସଂଗ୍ରହ, ରଚନା ଓ ପ୍ରକାଶନ ଦିଗରେ ଉତ୍ସାହ ଓ ଆନୁଷଙ୍ଗିକ ଉଦ୍ୟମ କରିଥିବାରୁ ସମସ୍ତଙ୍କୁ ମୁଁ ସାଧୁବାଦ ଜଣାଉଛୁ । ବିଶେଷତଃ ସର୍ବଶ୍ରୀ ଗଙ୍ଗାଧର ପଣ୍ଡା, ଉମାକାନ୍ତ ତ୍ରିପାଠୀ, ପଦ୍ମଲୋଚନ ନାୟକ, କବୀନ୍ଦ୍ର ମୋହନ ମହାନ୍ତି, ନବକୃଷ୍ଣ ମହାନ୍ତି, ଭାଗୀରଥି ମହାନ୍ତି ପ୍ରମୁଖଙ୍କ ଭୂମିକା ସ୍ମରଣୀୟ । ସମସ୍ତଙ୍କୁ ମୋର ସ୍ନେହାଶୀର୍ବାଦ ।

'ଜାତୀୟ କବି ବାଞ୍ଛାନିଧି ପ୍ରକାଶନ ସମିତି'ର ଆର୍ଥିକ ସହାୟତାରେ ଏହି ପୁସ୍ତକ ପ୍ରକାଶ ପାଇବାର ଯୋଜନା ପ୍ରଥମେ କରାଯାଇଥିଲା । ମାତ୍ର ଆଶାନୁରୂପେ ଅର୍ଥ ସଂଗ୍ରହ ନ ହୋଇ ପାରିବାରୁ ( ବିଶେଷତଃ 'ମିଛମେଘ' ଘୋଟି ଆସିବାରୁ ) ଏକ ପ୍ରକାଶନ ସଂସ୍ଥାକୁ ଏହାର ଦାୟିତ୍ୱ ଦେବାକୁ ବାଧ୍ୟହେଲୁଁ । ଯେଉଁ ବଦାନ୍ୟ ବ୍ୟକ୍ତିଗଣ ଏହି 'ପ୍ରକାଶନ ସମିତିକୁ ଶ୍ରଦ୍ଧା ଦେଇଛନ୍ତି' ସେମାନଙ୍କ ଠାରେ ମୁଁ

ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛୁ । ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଏହାର ପ୍ରକାଶନ ଦାୟିତ୍ୱ 'ଅପର୍ଣ୍ଣା ପ୍ରକାଶନୀ' ଗ୍ରହଣ କରିଥିବାରୁ ଏହି ପୁସ୍ତକ ପ୍ରକାଶନ ସଂସ୍ଥା ଆମର ଧନ୍ୟବାଦର ପାତ୍ର ।

ପାଣ୍ଡୁଲିପିର ପ୍ରସ୍ତୁତ କରିବା ଦିଗରେ ଯିଏ ମୋତେ ସାହାଯ୍ୟ କରିଛନ୍ତି, ସେ ହେଲେ ଶ୍ରୀମତୀ ରେଣୁବାଳା ମହାନ୍ତି । ତାଙ୍କ ସାହାଯ୍ୟ ମଧ୍ୟ ଭୁଲିବାର ନୁହେଁ ।

ବଡ଼ ଆନନ୍ଦର କଥା, ଚକ୍ରତୀର୍ଥ ଛିରମର କେତେଜଣ ଉତ୍ସାହୀ ଯୁବକ-ଯୁବତୀ ସ୍ୱର୍ଗତ ବାଞ୍ଛାନିଧିଙ୍କ ଲୁପ୍ତପ୍ରାୟ ସଂଗୀତର ସୁପ୍ରସାର ପାଇଁ ୧୯୮୭ ଅକ୍ଟୋବର ୨୪ ତାରିଖରେ ବାଞ୍ଛାନିଧିଙ୍କ ନିଜ କଣ୍ଠସ୍ୱରର ଦୁଇଟି ଗୀତ ସହିତ ଊଣେଇଶଟି ଗୀତକୁ ଦୁଇଟି କେସେଟରେ ରେକର୍ଡିଂ କରିଛନ୍ତି । ଏହାର ସଂଗୀତାଂଶରେ— ଗୀତାରାଣୀ ବାରିକ, ନିବେଦିତା ପାତ୍ରୀ, ସ୍ୱୟଂପ୍ରଭା ପାତ୍ରୀ, ଶାଶ୍ୱତୀ ମହାନ୍ତି, ଗୋପାଳ ଚନ୍ଦ୍ର ବେଜ, ଅମରେନ୍ଦ୍ର ଦାସ, ମର୍ଶୁରାମ ସାହୁ, ଅମୂଲ୍ୟ ପ୍ରସାଦ ଦାସ, ବାଦ୍ୟଯନ୍ତ୍ରରେ- ଇନ୍ଦୁରାମ ପାତ୍ରୀ, ଅନିରୁଦ୍ଧ ପାତ୍ରୀ, ଗୋପାଳ ଚନ୍ଦ୍ର ବେଜ, ମହେନ୍ଦ୍ର ବେହେରା, କରୁଣା ପ୍ରଧାନ, ଶ୍ୱେତ ଯେନା, ସଂଗୀତ ପରିଚାଳନାରେ— ଅମୂଲ୍ୟ ପ୍ରସାଦ ଦାସ, କବିଙ୍କ ପରିଚୟ ପ୍ରଦାନରେ— ମଧୁସୂଦନ ଦାଶ, ସଂଳାପରେ— ଅମର ନାଥ ପାତ୍ରୀ ଓ ଗୀତାରାଣୀ ବାରିକ, ଘୋଷଣାରେ— ସନ୍ତୋଷ କୁମାର ଦାସ, ଉପସ୍ଥାପନାରେ – ଅମର ନାଥ ପାତ୍ରୀ ଓ ଅମୂଲ୍ୟ ପ୍ରସାଦ ଦାସ, ଶବ୍ଦ ଗ୍ରହଣରେ— ପିୟା ରେକର୍ଡିଂ ସେଣ୍ଟର ( ବାସୁଦେବପୁର/ବାଲେଶ୍ୱର ) ସହଯୋଗ କରିଥିବାରୁ ସେମାନେ ପ୍ରଶଂସାର ପାତ୍ର/ପାତ୍ରୀ । ଏହା ସଂଗୀତ ସମୀକ୍ଷକ ତଥା ଗବେଷକ ମାନଙ୍କୁ ସାହାଯ୍ୟ କରିବ ।

ପାଠକମାନଙ୍କୁ ଅନୁରୋଧ, ପୁସ୍ତକ ଶେଷରେ ପ୍ରଦତ୍ତ ସଂଶୋଧନ ପତ୍ରକୁ ଦେଖି ପ୍ରଥମେ ସଂଶୋଧନ କରିନେଇ, ତା'ପରେ ପଢ଼ା ଆରମ୍ଭ କରିବେ । ଏହି ଭ୍ରମପାଇଁ ମୁଁ ଦୁଃଖିତ । ଯଦି କୌଣସି ବ୍ୟକ୍ତି ବାଞ୍ଛାନିଧିଙ୍କ ସଂପର୍କରେ ଅଧିକ କିଛି ନୂତନ ତଥ୍ୟ ଜାଣିଥାନ୍ତି, ତେବେ ନିଜର ସଂପୂର୍ଣ୍ଣ ଠିକଣା ସହ ଲେଖି ପଠାଇଲେ ପରବର୍ତ୍ତୀ ସଂସ୍କରଣରେ ଏହାକୁ ପରିସ୍ଥ କରିଯିବାର ଉଦ୍ୟମ କରାଯିବ ଏବଂ ପ୍ରେରକଙ୍କ ନାମୋଲ୍ଲେଖ ମଧ୍ୟ ରହିବ ।

ଜାତୀୟ ଇତିହାସର ସ୍ରୋତରେ ଏହି ଜୀବନ ଚିତ୍ରଟିକୁ ପ୍ରକାଶ କରିବା ପାଇଁ ମୋର ଏହି କ୍ଷୁଦ୍ର ଉଦ୍ୟମଟି ସାମାନ୍ୟତମ ସଫଳ ହେଲେ ମୋର ପରିଶ୍ରମ ଫଳବତୀ ହୋଇଛି ବୋଲି ଭାବିବି ।

ପରିଶେଷରେ, ଯେଉଁ ମହାନ୍ ଆତ୍ମାଙ୍କର ଓଡ଼ିଶାରେ ସାମାନ୍ୟ ପରିଚୟ ପାଇଁ ଏହି ଜୀବନୀ ଗ୍ରନ୍ଥର ପରିକଳ୍ପନା, ସେହି ଅମର ଆତ୍ମାଙ୍କ ପାଦ ପ୍ରାନ୍ତରେ ମୁଁ ଭକ୍ତିପୂତ ପ୍ରଣତି ଜଣାଉଛି । ଆଶା, ସେ ଗ୍ରହଣ କରିବେ ।

ସ୍ୱସୃଷ୍ଟି ସଦନ
ଇରମ/ବାଲେଶ୍ୱର

**ମନୀନ୍ଦ୍ର ମହାନ୍ତ**
୧୯୮୭/ଜାନୁଆରୀ/ଛବିଶ
[ ଗଣତନ୍ତ୍ର ଦିବସ ]

# ।। କୃତଜ୍ଞ ପତ୍ର ।।

'ବାଞ୍ଛାନିଧି ଜୀବନୀ ପ୍ରକାଶନ ସମିତି'ରେ ସଦସ୍ୟ ହୋଇ ଏହି ପବିତ୍ର କାର୍ଯ୍ୟ କାର୍ଯ୍ୟରେ ଯେଉଁ ସହୃଦୟ ବ୍ୟକ୍ତିମାନେ ଆର୍ଥିକ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ଆମେ ହାର୍ଦ୍ଦିକ କୃତଜ୍ଞତା ଜଣାଉଛୁଁ ।

ବାଞ୍ଛାନିଧି ସ୍ମାରକ ନାଟ୍ୟନିକେତନ, ଇରମ, ବାଲେଶ୍ୱର

୧। ଡକ୍ଟର ହରେକୃଷ୍ଣ ମହତାବ— ଏକାମ୍ର ନିବାସ, ଭୁବନେଶ୍ୱର-୨
୨। ଶ୍ରୀ ଦାମୋଦର ସାହୁ— ସଭ୍ୟ, ହିନ୍ଦ୍ ସେବକ ସଂଘ, ସେ ଦ୍ୱାର, କଟକ
୩। ଶ୍ରୀଯୁକ୍ତା ଗୋଦାବରୀ ଦେବୀ
ମାର୍ଫତ- ଶ୍ରୀଯୁକ୍ତ ରବୀନ୍ଦ୍ର ଦାସ— ଗୋପାଳଗାଁ, ବାଲେଶ୍ୱର
୪। ଶ୍ରୀ ଆର୍ତ୍ତତ୍ରାଣ ଦାସ— ଗୌତମ ନଗର, ପ୍ଲଟ-୩୫, ଭୁବନେଶ୍ୱର
୫। ଶ୍ରୀ ଅନିରୁଦ୍ଧ ମହାନ୍ତି— ବାସୁଦେବପୁର, ବାଲେଶ୍ୱର
୬। ଶ୍ରୀ ଗୌରାଙ୍ଗ ଚନ୍ଦ୍ର ମହାନ୍ତି— ବରଣ୍ଡୁଆ, ବେତଡ଼ା, ବାଲେଶ୍ୱର
୭। ଶ୍ରୀଯୁକ୍ତା ସୁଲୋଚନା ମହାନ୍ତି ,, ,, ,,
୮। ଶ୍ରୀ ଗଣେଶ ପ୍ରସାଦ ତ୍ରିପାଠୀ— ଇରମ, ବାଲେଶ୍ୱର
୯। ଶ୍ରୀ ଚିନ୍ତାମଣି ଦାସ—ଚୁଡ଼ାମଣି, ବାଲେଶ୍ୱର
୧୦। ଶ୍ରୀ ମୁରଲୀ ମୋହନ ସିଂହ— ସୁଏଲପୁର, ମୋହଗଞ୍ଜ, ବାଲେଶ୍ୱର
୧୧। ଅଧ୍ୟାପକ ଶ୍ରୀ ହରେକୃଷ୍ଣ ଦାଶ—ଅତ୍ରୁଆଁ, ବାଲେଶ୍ୱର.
୧୨। ଶ୍ରୀ ଯେଠୁରାମ ମହାନ୍ତି—S. I. D. A. V., ବଲାଣି, କେନ୍ଦୁଝର
୧୩। ଡାକ୍ତର ଏସ୍. ପି. ପ୍ରଧାନ—ସିନିୟର ମେଡ଼ିକାଲ ଅଫିସର, ବଲାଣି
୧୪। ଶ୍ରୀ ଶତ୍ରୁଘ୍ନ ବିଶ୍ୱାଳ - ହେଡ଼ ମାଷ୍ଟର, D. A. V. ସ୍କୁଲ, ବଲାଣି
୧୫। ଶ୍ରୀ ବିବେକାନନ୍ଦ ମହାନ୍ତି—ଇରମ
୧୬। ଶ୍ରୀ ଭାସ୍କର ଚନ୍ଦ୍ର ପଣ୍ଡା—ଇରମ
୧୭। ଶ୍ରୀ ଘନଶ୍ୟାମ ତ୍ରିବେଦୀ—ଇରମ
୧୮। ଶ୍ରୀ ଜଗମୋହନ ମହାନ୍ତି—ଇରମ
୧୯। ଶ୍ରୀ ରମେଶ ଚନ୍ଦ୍ର ମହାନ୍ତି—ଇରମ
୨୦। ଶ୍ରୀଯୁକ୍ତା ଅପର୍ଣ୍ଣା ମହାନ୍ତି—ଇରମ
୨୧। ଶ୍ରୀ ଗଙ୍ଗାଧର ପଣ୍ଡା—ଇରମ
୨୨। ଶ୍ରୀ ରବୀନ୍ଦ୍ର ମୋହନ ମହାନ୍ତି—ଇରମ
୨୩। ଶ୍ରୀ ନବକୃଷ୍ଣ ମହାନ୍ତି—ଇରମ
୨୪। ଶ୍ରୀ କମଳ ଲୋଚନ ମହାନ୍ତି - ଇରମ
୨୫। ଶ୍ରୀ ତାରାକାନ୍ତ ମହାନ୍ତି - ଇରମ

୨୬। ଶ୍ରୀଯୁକ୍ତା ଟେଣ୍ଟୁବାଳା ମହାନ୍ତି—ଇରମ

୨୭। ଶ୍ରୀଯୁକ୍ତା ମନ୍ଦାରବାଳା ମହାନ୍ତି—ଇରମ

୨୮। ଶ୍ରୀ ନିରଞ୍ଜନ ପାତ୍ରୀ—ନୂଆଗାଁ, ଇରମ

୨୯। ଶ୍ରୀ ଜୟକୃଷ୍ଣ ମଲ୍ଲିକ—ନୂଆଗାଁ, ଇରମ

୩୦। ଅଧ୍ୟାପକ ଶ୍ରୀ ଗୋକୁଳ ବିହାରୀ ମଲ୍ଲିକ—ନୂଆଗାଁ

୩୧। ଶ୍ରୀ ରବୀନ୍ଦ୍ର ନାଥ ମଲ୍ଲିକ—ନୂଆଗାଁ

୩୨। ଶ୍ରୀ ଚିତ୍ତ ରଞ୍ଜନ ପଣ୍ଡା—ନୂଆଗାଁ।

୩୩। ଶ୍ରୀ ପରମାନନ୍ଦ ରାଉତ—ରାଜଘର ପୋଷ୍ଟ, ବାଲେଶ୍ୱର

୩୪। ଶ୍ରୀ ଗିରିଶ ଚନ୍ଦ୍ର ପଟ୍ଟନାୟକ—ଭୁବନେଶ୍ୱର

୩୫। ଶ୍ରୀଯୁକ୍ତା ଶକୁନ୍ତଳା ପଟ୍ଟନାୟକ—ଭୁବନେଶ୍ୱର

୩୬। ଇଞ୍ଜିନିୟର ଗୁରୁ ପ୍ରସାଦ ମହାପାତ୍ର—ମହାଶ, ବାଲେଶ୍ୱର

୩୭। ଶ୍ରୀଯୁକ୍ତା ବକୁଳଲତା ମହାପାତ୍ର—ମହାଶ, ବାଲେଶ୍ୱର

୩୮। ଅଧ୍ୟାପକ ଶ୍ରୀ ଧନଞ୍ଜୟ ସାହୁ—ଆଗଲପୁର ପଞ୍ଚାୟତ କଲେଜ, ବଲାଙ୍ଗିର

୩୯। ଶ୍ରୀ ନିରଞ୍ଜନ ସାମନ୍ତ—ଅରଣ୍ଡିଆ, ବାଲେଶ୍ୱର

୪୦। ଶ୍ରୀ କୈଳାସ ଚନ୍ଦ୍ର ନାୟକ—ସାବରଙ୍ଗ, ବାଲେଶ୍ୱର

୪୧। ଶ୍ରୀଯୁକ୍ତା ଶରତ କୁମାରୀ ମହାନ୍ତି—ବଇଆଁ, ବାଲେଶ୍ୱର

୪୨। ଶ୍ରୀ ନନ୍ଦ କିଶୋର ମହାନ୍ତି—ଜଗନ୍ନାଥପୁର, ଭଦ୍ରକ

୪୩। ଅଧ୍ୟାପକ ଶ୍ରୀ ବ୍ରଜବନ୍ଧୁ ସାହୁ—ସାରସ୍ୱତ ମହାବିଦ୍ୟାଳୟ, ଅନନ୍ତପୁର, ସୋର, ବାଲେଶ୍ୱର

୪୪। ଶ୍ରୀ ଦେବେନ୍ଦ୍ର ନାଥ ଦାସ—ଗୋକୁଳପୁର, ନାୟକାଣୀଡ଼ିହ, ବାଲେଶ୍ୱର

୪୫। ଶ୍ରୀ ନରେନ୍ଦ୍ର ଦାସ—ଗୋକୁଳପୁର, ନାୟକାଣୀଡ଼ିହ, ବାଲେଶ୍ୱର

୪୬। ଶ୍ରୀ ଗଙ୍ଗାଧର ଓଝା—ବଙ୍ଗାଳୀ ଦଗା ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ଢଆଡ଼ିସାହି ପୀରହାଟ ବଜାର, ବାଲେଶ୍ୱର

୪୭। ଶ୍ରୀଯୁକ୍ତ ବୈଜୟନ୍ତୀ ମହାନ୍ତି—କୁଆଁସ, ଭଦ୍ରକ

୪୮। ଶ୍ରୀ ବ୍ରଜକିଶୋର ମହାନ୍ତି—କୁଆଁସ, ଭଦ୍ରକ

୪୯। ଶ୍ରୀ ଶରତ କୁମାର ନାୟକ—କଳିଙ୍ଗ ପ୍ରିଣ୍ଟର୍ସ, ଚରଂପା, ଭଦ୍ରକ

୫୦। ଶ୍ରୀ ମଧୁସୂଦନ ପୃଷ୍ଟି—ପ୍ରଧାନ ଶିକ୍ଷକ, ବାଲିଖଣ୍ଡ ଉଚ୍ଚ ବିଦ୍ୟାଳୟ, ବାଲିଖଣ୍ଡ, ବାଲେଶ୍ୱର

୫୧। ଶ୍ରୀ ଅଜୟ କୁମାର ଦାସ—ଶ୍ରୀଜଙ୍ଗ, ବାଲେଶ୍ୱର

୫୨। ଶ୍ରୀଯୁକ୍ତା ପ୍ରଫୁଲ୍ଲ କୁମାରୀ ଦାସ—ଶ୍ରୀଜଙ୍ଗ, ବାଲେଶ୍ୱର

୫୩। ଅଧ୍ୟାପକ ଭଗୀରଥି ମହାନ୍ତି—ଇରମ

୫୪। ଡକ୍ଟର ମନୀନ୍ଦ୍ର ମହାନ୍ତି—ଇରମ

— X —

# ।। ସୂଚୀପତ୍ର ।।

## ପ୍ରଥମ ପରିଚ୍ଛେଦ : ଉପୋଦ୍‌ଘାତ



## ଦ୍ୱିତୀୟ ପରିଚ୍ଛେଦ : ଜୀବନର ପୂର୍ବାହ୍ନ



## ତୃତୀୟ ପରିଚ୍ଛେଦ : ଜୀବନର ମଧ୍ୟାହ୍ନ

## ଚତୁର୍ଥ ପରିଚ୍ଛେଦ : ଜୀବନର ଅପରାହ୍ନ

# ପ୍ରଥମ ପରିଚ୍ଛେଦ : ଉପୋଦ୍‌ଘାତ

## ॥ ଏକ ॥

୧୮୦୩ ମସିହା ।

ସେପ୍‌ଟେମ୍ବର ମାସ ।

ଆଠ ତାରିଖ ।

ସେହିଦିନ ଇଂରେଜ ସୈନ୍ୟମାନେ କର୍ଣ୍ଣେଲ୍ ହାର୍କୋର୍ଟଙ୍କ ସେନାପତିତ୍ୱରେ ଗଞ୍ଜାମରୁ (ଚବିଶ ଶହ ଦେଶୀ ସିପାହି ଓ ଛଅଶହ ଇଂରେଜ ସୈନ୍ୟଙ୍କୁ ନେଇ) ଓଡ଼ିଶା ଅଭିମୁଖେ ବାହାରିଲେ । ସେଦିନ ରାତିରେ ଓଡ଼ିଶା ସୀମାର ପ୍ରୟାଗୀ ଗ୍ରାମର ବେଳାଭୂମିରେ ସେମାନେ ବିଶ୍ରାମ ନେଇ ନଅ ତାରିଖ ଦିନ ଚିଲିକା ମୁହାଣ ଓ ପନ୍ଦର ତାରିଖ ଦିନ ମାଣିକପାଟଣା ଦେଇ ଚବିଶକୁଦରେ ବାଇଶ ତାରିଖ ଦିନ ପହଞ୍ଚିଲେ । ପୁରୀରେ ଶ୍ରୀଜଗନ୍ନାଥ ମନ୍ଦିରକୁ ହିନ୍ଦୁ ସୈନ୍ୟମାନଙ୍କ ଦାୟିତ୍ୱରେ ଛାଡ଼ି ସେମାନେ କଟକ ଅଭିମୁଖେ ଗଲେ । ମରହଟ୍ଟା ସୈନ୍ୟମାନେ ଶିବିରରେ ବସି ଭୋଜନ କଲାବେଳେ ଇଂରେଜ ସୈନ୍ୟମାନେ ଆକ୍ରମଣ କରିବାରୁ ସେମାନେ ଛତ୍ରଭଙ୍ଗ ଦେଇ ପିପିଲି ନିକଟସ୍ଥ ଦାଣ୍ଡମୁକୁନ୍ଦପୁର ଠାରେ ସେମାନଙ୍କୁ ମୁକାବିଲା କରିବାପାଇଁ ପ୍ରସ୍ତୁତ ହୋଇ ରହିଲେ । ଅକ୍‌ଟୋବର୍ ଚାରି ତାରିଖରେ ଇଂରେଜ ସୈନ୍ୟମାନେ ମାଡ଼ିଆସିବାରୁ ମରହଟ୍ଟାମାନେ ପାରୁପର୍ଯ୍ୟନ୍ତ ତାଙ୍କ ସହିତ ଯୁଦ୍ଧକଲେ, ମାତ୍ର ସେମାନେ ପରାଜୟ ସ୍ୱୀକାର କରି ଖୋର୍ଦ୍ଧା ଜଙ୍ଗଲକୁ ପଳାୟନ କଲେ । ତା'ପରେ ଇଂରେଜ ସୈନ୍ୟମାନେ କାଠଯୋଡ଼ିବାଟେ ମାଲୁଦର ଫତେ ମହମ୍ମଦଙ୍କ ସାହାଯ୍ୟରେ ଡଙ୍ଗାରେ ପାରିହୋଇ କଟକରେ ଅକ୍‌ଟୋବର୍ ଆଠ ତାରିଖ ଦିନ ଲାଲବାଗ ବାଟେ କଟକରେ ପ୍ରବେଶ କଲେ । ଏହି ଲାଲବାଗ ଥିଲା ମରହଟ୍ଟାମାନଙ୍କ କଚେରି । ସେଠାକାର କର୍ମଚାରୀମାନେ ଭୟରେ ବାରବାଟୀ ଦୁର୍ଗରେ ଆଶ୍ରୟ

ନେଲେ । କିନ୍ତୁ ଇଂରେଜ ସୈନ୍ୟମାନେ ଅକ୍ଟୋବର ଦଶ ତାରିଖ ଦିନ ବାରବାଟୀ ଦୁର୍ଗରେ ପ୍ରବେଶକଲେ ଓ ସମଗ୍ର ଓଡ଼ିଶା ଇଂରେଜମାନଙ୍କ ଅଧିକାରକୁ ଆସିଲା ।

ଏଣେ କେପ୍‌ଟେନ୍ ମର୍ଗାନ୍ କଲିକତାରୁ ଏକହଜାର ଦେଶୀ ଓ ତିନିହଜାର ଇଂରେଜ ସୈନ୍ୟନେଇ ଜାହାଜରେ ଆସି ବାଲେଶ୍ୱର ବନ୍ଦରରେ ଲଙ୍ଗର ପକାଇଲେ । ଏହି ଜାହାଜ ବଳଙ୍ଗ ନଦୀ ବାଟେ ଆସି ପୁରୁଣା ବାଲେଶ୍ୱର ବା ଟବଗାଁ ନିକଟସ୍ଥ କାରପଡାଠାରେ ପହଞ୍ଚିଥିଲା । ସୈନ୍ୟମାନେ ଜାହାଜରୁ ଓହ୍ଲାଇ ବାଲେଶ୍ୱରକୁ ଆସିଲାବେଳେ ବାରବାଟୀ ପାଖ ବାଲିଆପାଟଠାରେ (ବାଲିପାଟ) ମରହଟ୍ଟାମାନେ ଇଂରେଜ ସୈନ୍ୟଙ୍କୁ ଅଟକାଇଲେ । ତୁମୁଳ ଯୁଦ୍ଧ ହେଲା ଓ ମରହଟ୍ଟାମାନେ ପରାସ୍ତ ହେଲେ । ତେଣୁ ୧୮୦୩ ମସିହା ସେପ୍‌ଟେମ୍ବର ମାସ ଏକୋଇଶ୍ ତାରିଖରେ ଇଂରେଜମାନେ ବାଲେଶ୍ୱର ଅଧିକାର କଲେ । ସେହି ସୈନ୍ୟମାନେ ପରେ ସୋରୋ ଆକ୍ରମଣକଲେ । ସୋରୋ ଦୁର୍ଗରେ ଥିବା ମରହଟ୍ଟାର ମୟୂର ପଣ୍ଡିତ ପରାସ୍ତ ହେଲେ ଏବଂ ସୋରୋ ଇଂରେଜ-ମାନଙ୍କ ହସ୍ତଗତ ହେଲା ।

ପୁନଶ୍ଚ, କର୍ଣ୍ଣେଲ୍ ଫରଗୁସନ୍ ଇଂରେଜ ସୈନ୍ୟନେଇ କଲିକତାରୁ ମେଦିନୀପୁର ବାଟେ ଜଳେଶ୍ୱର ଆକ୍ରମଣ କଲେ ଏବଂ ପରେ ବାଲେଶ୍ୱରରେ ପହଞ୍ଚିଲେ । ଏହି ଦୁଇଦଳ ଏକସଙ୍ଗ ଭାବରେ କଟକ ପର୍ଯ୍ୟନ୍ତ ହାର୍କୋର୍ଟଙ୍କ ଦଳକୁ ସାହାଯ୍ୟ କରିବାକୁ ଆସିଥିଲେ । ଏହାପରେ କନିକା, କୁଜଙ୍ଗ ଓ ହରିଶପୁରର ରାଜାମାନେ ଇଂରେଜ ମାନଙ୍କ ଅଧିନତା ସ୍ୱୀକାର କଲେ ।

୧୮୦୪ ମସିହାରେ କଟକ ଓ ଗଞ୍ଜାମରୁ ଦୁଇଦଳ ଇଂରେଜସୈନ୍ୟ ଖୋରଧା ଆକ୍ରମଣକଲେ । କାରଣ, ଇଂରେଜମାନେ ଭାବିଥିଲେ ଯେ ମରହଟ୍ଟାମାନେ ଗୋପନରେ ରାଜା ମୁକୁନ୍ଦଦେବଙ୍କୁ ଉତ୍ତେଜିତ କରାଉଛନ୍ତି ! ପୁଣି ତାଙ୍କର ପୂର୍ବ ପିପିଲି ଅତ୍ୟାଗ୍ରହର ରାଗ ମଧ୍ୟ ଥିଲା । ଏଣୁ ଇଂରେଜ ସୈନ୍ୟମାନେ ଆକ୍ରମଣ କଲେ ଏବଂ ତିନି ସପ୍ତାହ କାଳ ଦୁର୍ଗ ଅବରୋଧ ପରେ ଗୋଲାବାରୁଦରେ ଦୁର୍ଗର ପାଚେରି ଭାଙ୍ଗିଗଲା । ଶେଷରେ ମୁକୁନ୍ଦଦେବ ଆତ୍ମ ସମର୍ପଣ କଲେ । ତାଙ୍କୁ ପ୍ରଥମେ କଟକର ବାରବାଟୀ ଦୁର୍ଗରେ ବନ୍ଦୀକରି ରଖାଗଲା ଓ ପରେ ତାଙ୍କୁ ମେଦିନୀପୁରକୁ ପଠାଇ ଦିଆଗଲା । ଏହା ଫଳରେ ଖୋରଧା ରାଜବଂଶର ତିନିଶହ ବର୍ଷ ରାଜତ୍ୱର ଅବସାନ ଘଟିଲା ଓ ଓଡ଼ିଶାରେ ଇଂରେଜ ଶାସନର ମୂଳଦୁଆ ପ୍ରତିଷ୍ଠା ହେଲା ! ପରାଧୀନତାର ଅନ୍ଧ-କାରରେ ସମଗ୍ର ଓଡ଼ିଶା ଆଚ୍ଛନ୍ନ ହୋଇପଡ଼ିଲା ।

XOX

# || ଦୁଇ ||

ପରାଧୀନତାର ଅମାଅନ୍ଧକାରରେ ସମଗ୍ର ଭାରତବର୍ଷ ଯେତେବେଳେ ଆଚ୍ଛନ୍ନ ହୋଇ ପଡ଼ିଥିଲା, ସେତେବେଳେ ସ୍ୱାଧୀନତା ପାଇଁ ମୁକ୍ତି ସଂଗ୍ରାମର ପ୍ରଥମ ସ୍ଫୁରଣ ଆମ ଓଡ଼ିଶା ଭୂମିରେ ପ୍ରଥମେ ଝଲସି ଉଠିଲା । ଏହି ଐତିହାସିକ ସ୍ଫୁରଣର ଅପରନାମ 'ପାଇକ ବିଦ୍ରୋହ' ।୮୧୭ମସିହା ମାର୍ଚ୍ଚ ମାସରେ ଓଡ଼ିଶାର ପାଇକମାନେ ଏହି ବିଦ୍ରୋହ ଘୋଷଣା କରିଥିଲେ । ପାଇକମାନେ ଖୋରଧାର ଭୋଇ ବଂଶ ରାଜତ୍ୱ ଆରମ୍ଭରୁ ଜାଗିର ପାଇ ଆସୁଥିଲେ । ସେମାନେ ଯୁଦ୍ଧ କଲେ ମଧ୍ୟ କୃଷି ସେମାନଙ୍କ ଜୀବିକା ଥିଲା । ରାଜାଙ୍କ ଆଦେଶରେ ସେମାନେ ଯୁଦ୍ଧ କରୁଥିଲେ । ସେମାନେ ଖୁବ୍ ସାହସୀ ଓ ଶୃଙ୍ଖଳିତ ଜୀବନ ଯାପନ କରୁଥିଲେ । ମାତ୍ର ଇଂରେଜମାନଙ୍କ ରାଜତ୍ୱ ପରେ ଖୋରଧା ଶାସନ କାର୍ଯ୍ୟରେ ନିଯୁକ୍ତ ଅଫିସର ମେଜର ଫ୍ଲେଚର ସେମାନଙ୍କଠାରୁ ନିଷ୍କର ଜାଗିର ଛଡ଼ାଇ ଆଣିଲେ । ପୁଣି ଖଜଣା ଆଦାୟ ସମୟରେ ପାଇକମାନଙ୍କ ଉପରେ କଠୋର ଅତ୍ୟାଚାର କରାଗଲା । ୧୮୧୨ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ କଉଡ଼ି ମୁଦ୍ରାକୁ ଅଚଳ ବୋଲି ଘୋଷଣା କରିଦେଲା । ତେଣୁ ଦୈନନ୍ଦିନ ଜୀବନରେ ଅନେକ ଅସୁବିଧା ହେଲା । ଶେଷରେ ସରକାର ଲୁଣ ଉପରେ କର ବସାଇବାରୁ ତାହା ସେମାନଙ୍କୁ ଅଧିକ ବାଧିଲା । ସେମାନେ ଲୁଣ ବ୍ୟବସାୟ ମଧ୍ୟ କରି ପାରିଲେ ନାହିଁ । ଏହି ସବୁ କାରଣରୁ ପାଇକମାନେ ଏକତ୍ର ହୋଇ ଖୋରଧା ରାଜାଙ୍କର ପୁନଃପ୍ରତିଷ୍ଠା ପାଇଁ ଇଂରେଜ ସରକାର ବିରୁଦ୍ଧରେ ବିଦ୍ରୋହ କଲେ । ଏହି 'ପାଇକ ବିଦ୍ରୋହ'ର ନେତୃତ୍ୱ ନେଲେ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ଭ୍ରମରବର ରାୟ ଏବଂ ଅନ୍ୟତମ ସେନାପତି ଅନୁଗୋଳର ରାଜା ସୋମନାଥ ସିଂହ ଜଗଦେବ । ବକ୍ସି ଜଗବନ୍ଧୁ ଖୋରଧା ରାଜବଂଶରେ ପ୍ରଧାନ ସେନାପତିରୂପେ କାର୍ଯ୍ୟ କରୁଥିଲେ । କୃଷ୍ଣଚନ୍ଦ୍ର ସିଂହ ଏବଂ ଲକ୍ଷ୍ମୀନାରାୟଣଙ୍କ ଷଡଯନ୍ତ୍ର କ୍ରମେ ସେ ତାହାଙ୍କ ପ୍ରଗନା ହରାଇ ପଥର ଭିକାରୀ ହୋଇଗଲେ । ତେଣୁ, ସେ ଖୋରଧାର ରାଜାଙ୍କୁ ପୂର୍ବପରି ରାଜ-ସିଂହାସନରେ ବସାଇଲେ ତାଙ୍କର ଦୁର୍ଦ୍ଦଶା ଫେରିବ ବୋଲି ଆଶାକରି ବିଦ୍ରୋହ ଆରମ୍ଭ କଲେ ।

ଘୁମୁସରରୁ ୪ଶହ କନ୍ଧ ଖୋରଦା ଭିତରକୁ ପ୍ରବେଶ କରି ବିଦ୍ରୋହ ଆରମ୍ଭ କଲେ । ଏମାନଙ୍କ ବିଦ୍ରୋହ ଦେଖି ପାଇକମାନଙ୍କ ମନରେ ବିଦ୍ରୋହାଗ୍ନି ଆହୁରି ହୁତହୁତ କରି ଜଳି ଉଠିଲା । ସେମାନେ କନ୍ଧମାନଙ୍କ ସହିତ ମିଶି ବାଣପୁର ଆକ୍ରମଣ କରି ସରକାରୀ ଘର ଓ କଚେରୀ ଲୁଣ୍ଠନ କରି ପନ୍ଦର ହଜାର ଟଙ୍କାର ଧନ

ସମ୍ପତ୍ତି ଲୁଟିନେଲେ । ଚିଲିକାରେ ଲୁଣ ବ୍ୟାପାରୀମାନଙ୍କ ନୌକା ମଧ୍ୟ ଲୁଣ୍ଠନ କଲେ । ସେମାନଙ୍କ ସରକାରୀ ଘର ଭାଙ୍ଗିଦେଇ ଖଜଣା ଲୁଟିନେଲେ । ତହସିଲଦାର ଚରଣ ପଟ୍ଟନାୟକଙ୍କୁ ସେମାନେ ହତ୍ୟା କଲେ । ମାଜିଷ୍ଟ୍ରେଟ୍ ଇମ୍ପି ସାହେବ ଖୋରଧା ଓ ପିପିଲିକୁ ସୈନ୍ୟ ପ୍ରେରଣ କରି ବିଦ୍ରୋହ ଦମନ କରିବାକୁ ଉଦ୍ୟମ କଲେ । ସେ ନିଜେ ମଧ୍ୟ ଷାଠିଏ ଜଣ ସୈନ୍ୟ ନେଇ ଖୋରଧା ଅଭିଯାନରେ ଗଲେ । କିନ୍ତୁ, ସବୁଚେଷ୍ଟା ବିଫଳ ହେଲା ଓ ସେ ଖୋରଧାରୁ ପଳାଇ ଆସି ବାଲକାଟିଠାରେ ଆଶ୍ରୟ ନେଲେ । ସେତେବେଳକୁ ପାଇକମାନଙ୍କ ସଂଖ୍ୟା ତିନିହଜାରରୁ ଅଧିକ ହୋଇଥିଲା । ଇମ୍ପି ସାହେବ ବାଲକାଟିରୁ ରାତାରାତି ପଳାଇ ଆସିଲା ବେଳେ ପାଇକମାନେ ଆକ୍ରମଣ କଲେ ଏବଂ ଇଂରେଜ ସୈନ୍ୟମାନେ ଯୁଦ୍ଧ ଉପକରଣ ଓ ହାତୀ ତମ୍ବୁ ଆଦି ହରାଇ କଟକକୁ ପଳାଇ ଗଲେ । ମାଜିଷ୍ଟ୍ରେଟ୍ ସରକାରଙ୍କୁ 'ପାଇକ ବିଦ୍ରୋହ'ରେ ଖୋରଧା ଜଳୁଛି ବୋଲି ଚିଠିଦେଲେ ।

୧୮୧୭ ମସିହା ମାର୍ଚ୍ଚ ୧୨ ତାରିଖରେ ପାଇକମାନେ ଲୋକନାଥ ଘାଟ ବାଟେ ପୁରୀରେ ପ୍ରବେଶ କରି ସରକାରୀ କଚେରୀ ଓ ଘରମାନ ପୋଡ଼ି ଦେଲେ । ୧୩ ତାରିଖରେ ସେମାନେ ପୂର୍ବ ଦିଗସ୍ଥ ଜଙ୍ଗଲରୁ ଆସି ଇଂରେଜ ସୈନ୍ୟମାନଙ୍କୁ ଆକ୍ରମଣ କଲେ । ଦୁଇ ଘଣ୍ଟା ଯୁଦ୍ଧ ପରେ ପାଇକମାନଙ୍କୁ ଇଂରେଜ ସୈନ୍ୟ ପୁରୀ ସହର ମଧ୍ୟରୁ ତଡ଼ି ଦେଲେ । ମାତ୍ର ପରେ ମନ୍ଦିରର କର୍ମଚାରୀ ଓ ସହରବାସୀମାନେ ପାଇକମାନଙ୍କ ସହିତ ମିଶିବାରୁ ଏପ୍ରିଲ ୧୮ ତାରିଖରେ ଇଂରେଜ ସୈନ୍ୟମାନେ କଟକ ପଳାୟନ କଲେ । ମାତ୍ର ଇଂରେଜ ସୈନ୍ୟଙ୍କ ଆକସ୍ମିକ ଗୋଳାବର୍ଷଣରେ ପାଇକମାନେ ଛତ୍ରଭଙ୍ଗ ଦେଲେ ଏବଂ ରାଜା ମୁକୁନ୍ଦଦେବଙ୍କୁ ଇଂରେଜ ସେନାପତି କବଳଗତ କଲେ । ଫଳରେ 'ପାଇକ ବିଦ୍ରୋହ'ର ଅବସାନ ଘଟିଲା ।

ପାଇକମାନେ ସାରଙ୍ଗଗଡଠାରେ ଖାଦ୍ୟ ଓ ଯୁଦ୍ଧ ସାମଗ୍ରୀମାନ ରଖିଥିଲେ । ହାମିଲଟନ୍ ସାହେବ ସୈନ୍ୟନେଇ ଆକ୍ରମଣ କରି ସେ ଦୁର୍ଗ ଅଧିକାର କଲେ । ସେପ୍ଟେମ୍ବର ମାସରେ ପାରାଦ୍ୱୀପ ଓ ନୂଆଗଡ଼ ଇଂରେଜମାନଙ୍କ ଅଧିକାରକୁ ଆସିଲା । ନାରାୟଣ ପରମଗୁରୁ (କୁଜଙ୍ଗ) ଏବଂ ବାମଦେବ ପାଟ୍ଟଜୋଷୀ (କନିକା) ଦୀପାନ୍ତର ଦଣ୍ଡ ପାଇଲେ । କୁଜଙ୍ଗ ରାଜା ଆତ୍ମସମର୍ପଣ କରି ବାରବାଟୀରେ ବନ୍ଦୀ ହେଲେ । ୧୮୨୫ ମସିହାରେ ବକ୍ସି ଜଗବନ୍ଧୁ ବିଦ୍ୟାଧର ଇଂରେଜମାନଙ୍କ ପାଖରେ ଆତ୍ମସମର୍ପଣ କରିବାକୁ ବାଧ୍ୟ ହେଲେ । ପରିଣାମରେ 'ପାଇକ ବିଦ୍ରୋହ'ର ପୂର୍ଣ୍ଣଚ୍ଛେଦ ଘଟିଲା ।

୧୮୩୫ ମସିହାରେ ସିଂହଭୂମି, ଧଳଭୂମି ଓ ବରାହଭୂମିର ମଧ୍ୟଭାଗରେ ଥିବା କୋହ୍ଲମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସିଂହଭୂମିର ରାଜାଙ୍କ ପ୍ରରୋଚନାରେ

ବିଦ୍ରୋହ ଆରମ୍ଭ କରିଥିଲେ । କାରଣ, ଇଂରେଜ ସରକାର ନରବଳି ପ୍ରଥାର ବନ୍ଦ କରିବା ନାମରେ କନ୍ଧମାନଙ୍କ ଉପରେ ଘୋର ଅତ୍ୟାଚାର କରୁଥିଲେ । କନ୍ଧମାନଙ୍କର ନେତୃତ୍ବ ନେଉଥିଲେ — ଚକ୍ର ବିଶୋଇ । ତାଙ୍କୁ ଅନୁଗୋଳର ରାଜା ସାହାଯ୍ୟ କରୁଥିଲେ ବୋଲି ଇଂରେଜ ସରକାର ସନ୍ଦେହ କରିବାରୁ ୧୮୪୭ ମସିହାରେ ରାଜାଙ୍କୁ ହଜାରିବାଗ ଜେଲରେ ବନ୍ଦୀକରି ରଖିଥିଲେ । ଚକ୍ରବିଶୋଇଙ୍କୁ ଧରାଯାଇ ପାରିନଥିଲେ ମଧ୍ୟ ସାମରିକ ଶକ୍ତିଦ୍ୱାରା ସେ କନ୍ଧ ବିଦ୍ରୋହକୁ ଦମନ କରି ଦେଲେ । ମାତ୍ର, ସେ ବିଦ୍ରୋହର ନିଆଁ କିଅଣ ଲିଭିଲା ?

୧୮୫୭ ମସିହାରେ ଭାରତର ଉତ୍ତରାଞ୍ଚଳରେ 'ସିପାହୀ ବିଦ୍ରୋହ' ଦେଖାଗଲା । କନ୍ଧନେତା ଚକ୍ର ବିଶୋଇ ଏହି ମୁକ୍ତି ସଂଗ୍ରାମରେ ଝାସ ଦେଲେ । ପୁରୀର ହରଚଣ୍ଡୀ ସାହିର ବିଶିଷ୍ଟ ପଣ୍ଡା ଗୃହୀ ଖୁଣ୍ଟିଆ ( ଚନ୍ଦନ ହଜୁରୀ )ଙ୍କ ଅବଦାନ ଏହି ପ୍ରସଙ୍ଗରେ ଅବଶ୍ୟ ସ୍ମରଣୀୟ । ଉତ୍ତର ଭାରତର ସୈନ୍ୟମାନଙ୍କ ସହିତ ଯୋଗଦେବା ପଥରେ ସେ ବିହାରରେ ଗିରଫ ହୋଇଗଲେ ।

୧୮୫୭ର ଗଣବିପ୍ଳବରେ ସମ୍ବଲପୁରର ବିପ୍ଳବୀ ସୁରେନ୍ଦ୍ର ସାଏଙ୍କ ଯୋଗଦାନ ସ୍ୱାଧୀନତା ସଂଗ୍ରାମକୁ ଅଧିକ ଉଜ୍ଜିବିତ କଲା । ସେ ସମ୍ବଲପୁରର ରାଜ ସିଂହାସନରେ ବସିବା ପାଇଁ ଆଇନତଃ ହକ୍‌ଦାର ହେଲେ ମଧ୍ୟ ଇଂରେଜ ସରକାର କୌଶଳ କରି ତାଙ୍କୁ ବିଫଳ କଲେ । ସେ ବିଦ୍ରୋହ କରିବାରୁ ତାଙ୍କୁ ବନ୍ଦୀ କରାଯାଇ ଭାଗଲପୁର ଜେଲରେ ରଖିଲେ । ୧୮୫୮ ମସିହାରେ ଇଂରେଜ ସରକାର ସ୍ୱାଧୀନତା ସଂଗ୍ରାମକୁ ଦମନ କଲେ ମଧ୍ୟ ସୁରେନ୍ଦ୍ର ସାଏ ଆହୁରି ପାଞ୍ଚ ବର୍ଷ ପର୍ଯ୍ୟନ୍ତ ସଂଗ୍ରାମ ଚଳାଇଲେ ।

ଏହି ବିଦ୍ରୋହ ପରେପରେ ଇଂରେଜ ଶାସନର ଭିତ୍ତି ଦୋହଲିଗଲା । ତେଣୁ, ଶାସନନୀତିର ପରିବର୍ତ୍ତନ କରିବାକୁ ପଡ଼ିଲା । କୌଣସି ଶ୍ରେଣୀ ବା ସଂପ୍ରଦାୟ ଯେପରି ଶକ୍ତିଶାଳୀ ହୋଇ ନ ଉଠିବ, ସେଥିପ୍ରତି ଯତ୍ନ ନିଆଗଲା । ଶାସକମାନଙ୍କୁ ସମର୍ଥନ କରିବାପାଇଁ ରାଜା ଜମିଦାର, ଆଦି ସୃଷ୍ଟି କରାଗଲା । ମଧ୍ୟବିତ୍ତ ଶ୍ରେଣୀର ଲୋକମାନଙ୍କୁ ସରକାରୀ ଚାକିରୀରେ ନିଯୁକ୍ତ ଦିଆଗଲା । ଭାରତୀୟ ସୈନ୍ୟବାହିନୀର ନୀତି ପରିବର୍ତ୍ତନ କରାଗଲା । ପ୍ରାଦେଶିକ ସଂକୀର୍ଣ୍ଣତା ତଥା ଗୋଷ୍ଠୀ ଚେତନାକୁ ପ୍ରଶ୍ରୟ ଦିଆଗଲା । ଏଣୁ ଲୋକମାନଙ୍କ ମଧ୍ୟରେ ଏକତା ରହିଲା ନାହିଁ, ଏବଂ ଇଂରେଜ ସରକାରଙ୍କ ଆଧିପତ୍ୟ ବିସ୍ତାରଲାଭ କଲା ।

XoX

## ॥ ତିନି ॥

୧୮୬୬ ମସିହାରେ ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ଅର୍ଥନୈତିକ ମାନଦଣ୍ଡକୁ ଦୋହଲାଇ ଦେଲା । ୧୮୬୮ ମସିହାରେ 'ସେକ୍ରେଟେରି ଅଫ୍ ଷ୍ଟେଟ୍ ଫର ଇଣ୍ଡିଆ'ରେ ସାର୍ ଷ୍ଟାଫୋର୍ଡ ନର୍ଥକୋଟ୍ ଇଂରେଜ ସରକାରଙ୍କୁ ନଅଙ୍କ ଦୁର୍ଭିକ୍ଷର କାରଣ ଦର୍ଶାଇବାକୁ ଯାଇ ଲେଖିଥିଲେ ଯେ ଏଥିପାଇଁ ଦାୟୀ ଓଡ଼ିଶାର ଶାସନ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧିନ କରି ନଥିବା ଯୋଗୁଁ ଏପରି ପରିସ୍ଥିତି ସୃଷ୍ଟି ହେଲା । ମାତ୍ର ଏହା ଅରଣ୍ୟରୋଦନରେ ପରିଣତ ହେଲା ।

ଓଡ଼ିଆ ଭାଷାର ବିଲୋପ ସାଧନପାଇଁ କେତେଜଣ ବଙ୍ଗୀୟ ଭଦ୍ରବ୍ୟକ୍ତି 'ଓଡ଼ିଆ ଏକ ଭାଷା ନୁହଁ, ବଂଗଳାର୍ ଏକ୍ ବିକୃତ ମାତ୍ର'— ବୋଲି କହି ଓଡ଼ିଶାରେ ଓଡ଼ିଆ ଭାଷାକୁ ଶିକ୍ଷାକ୍ଷେତ୍ରରୁ ଉଠାଇବାକୁ ଉଦ୍ୟମ କଲେ । କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଥିଲେ ଏହାର ପ୍ରଧାନ ପ୍ରଚାରକ । ମାତ୍ର ବାଲେଶ୍ୱର କଲେକ୍ଟର ବିମ୍ ସାହେବ ଓ ଗ୍ରିୟର୍ସନଙ୍କ ଭାଷାତାତ୍ତ୍ୱିକ ଅଧ୍ୟୟନ ମଧ୍ୟରେ ଏହି ଭାଷା ଆନ୍ଦୋଳନ ଫସର ଫାଟିଲା । 'ଉତ୍କଳଦୀପିକା' ର ସମ୍ପାଦକ ଗୌରୀଶଙ୍କର ରାୟଙ୍କ ଭୂମିକା ଏହି ପ୍ରସଙ୍ଗରେ ଅବଶ୍ୟ ସ୍ମରଣୀୟ ।

୧୮୮୨ ମସିହା ଅଗଷ୍ଟ ୧୬ ତାରିଖରେ କଟକ ପ୍ରିଣ୍ଟିଂ କମ୍ପାନୀ ଘରେ ଏକ 'ସଭା' କୁଳବୃଦ୍ଧ ମଧୁସୂଦନ ଦାସ ଏବଂ ଗୌରୀଶଙ୍କର ରାୟଙ୍କ ଉଦ୍ୟମରେ ଅନୁଷ୍ଠିତ ହୋଇଥିଲା । ବହୁ ବିଶିଷ୍ଟ ବ୍ୟକ୍ତି ଏଥିରେ ଉପସ୍ଥିତ ଥିଲେ ! ଏହି 'ସଭା' ହେଉଛି 'ଉତ୍କଳସଭା' ବା Utkal Association ର ସୃଷ୍ଟି । ଏହା ଓଡ଼ିଶାର ସର୍ବ ପ୍ରଥମ ବିଧିବଦ୍ଧ 'ରାଜନୈତିକ ଅନୁଷ୍ଠାନ' ବୋଲି କେତେକ ସମୀକ୍ଷକ ମତ ଦିଅନ୍ତି । ଓଡ଼ିଶା ଶାସନ କ୍ଷେତ୍ରରେ ଏହି 'ସଭା' ର ସାହାଯ୍ୟ ଲୋଡ଼ା ପଡୁଥିଲା । ମଧୁସୂଦନ ଥିଲେ ଏହାର ସଭାପତି । ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ନକଲେ ଏହାର ଉନ୍ନତି ଅସମ୍ଭବ ବୋଲି ମଧୁସୂଦନ ଜାଣିଥିଲେ । ତେଣୁ, ଏହି 'ସଭା' ମାଧ୍ୟମରେ ଓଡ଼ିଆମାନଙ୍କୁ ଏକତ୍ର କରିବା ପାଇଁ ସେ ଗୁରୁତ୍ୱ ଦେଲେ । ଏହା ବ୍ୟତୀତ ବାଲେଶ୍ୱର ଠାରେ National Association ନାମରେ ଏକ ରାଜନୈତିକ ଅନୁଷ୍ଠାନ ଗଠିତ ହୋଇଥିଲା ।

୧୮୮୪ ମସିହାରେ 'ଉତ୍କଳସଭା' ର ଏକ ଅଧିବେଶନରେ, କୃଷି ଓ କେନାଲ ବ୍ୟବସ୍ଥା ଆଦି ସମ୍ପର୍କରେ ଏକ ଆଲୋଚନା ସଭା ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ଶିଳ୍ପର ପୁନରଭ୍ୟୁତ୍ଥାନ ପାଇଁ ଉଦ୍ୟମ କରାଗଲା ।

୧୮୮୫ ନଭେମ୍ବର ମାସରେ ଯେତେବେଳେ ବଂଗଳାର ଲେଫ୍‌ଟେନାଣ୍ଟ୍ ଗଭର୍ଣ୍ଣର୍ ସାର୍ ରିଭର୍ସ ଥମ୍ପସନ୍ କଟକ ଆସିଥିଲେ, ସେତେବେଳେ ଉତ୍କଳବାସୀଙ୍କ ପକ୍ଷରୁ ରେଳପଥ, ଶିଳ୍ପ ଏବଂ କୃଷିର ବିକାଶ ପାଇଁ ଅନୁରୋଧ କରିବା ସଙ୍ଗେସଙ୍ଗେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ମିଶାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାକୁ ମଧୁସୂଦନ ଦାବୀ କରିଥିଲେ । ମାତ୍ର କିଛି ଫଳ ହେଲନାହିଁ ।

XOX

## ॥ ଗୃର ॥

— ନଅଙ୍କ ଦୁର୍ଭିକ୍ଷ, ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନ, ଉତ୍କଳସଭାର ଗଠନ, ସ୍ୱତନ୍ତ୍ର ପ୍ରଦେଶ ପାଇଁ ଉଦ୍ୟମ, ମାତ୍ର ସବୁଆଡେ ବ୍ୟର୍ଥତା ! ଏହିପରି ଏକ ଅସନ୍ତୋଷ ଏବଂ ଦୁର୍ଦ୍ଦଶାଗ୍ରସ୍ତ ଉତ୍କଳୀୟ ଜୀବନ ଏକ ଅଭିଶପ୍ତ ଜୀବନରେ ପରିଣତ ହୋଇଥିଲା । ୧୮୮୫ ମସିହାରେ 'ଭାରତୀୟ ଜାତୀୟ କଂଗ୍ରେସ'ର ପ୍ରତିଷ୍ଠା ସମଗ୍ର ଭାରତରେ ଏକ ଜାତୀୟ ଉଦ୍ଦୀପନା ସୃଷ୍ଟି କଲା । ୧୮୮୫ ମସିହା ଡିସେମ୍ବର ୨୫ ତାରିଖରେ ବମ୍ବେଠାରେ ଜାତୀୟ କଂଗ୍ରେସ୍‌ର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । କଲିକତାରେ 'Indian Association' ତରଫରୁ National Conference ର ଦ୍ୱିତୀୟ ଅଧିବେଶନ ଏହି ସମୟରେ ଅନୁଷ୍ଠିତ ହେଉଥାଏ । ଓଡ଼ିଶା ସେତେବେଳେ ବଙ୍ଗଳା ଡିଭିଜନ୍ ସହିତ ମିଶିକରି ରହିଥିଲା । ତେଣୁ ଓଡ଼ିଶାରୁ 'ଉତ୍କଳସଭା' ପକ୍ଷରୁ ମଧୁସୂଦନଙ୍କ ସହିତ କେତେଜଣ ପ୍ରତିନିଧି କଲିକତା କନ୍‌ଫରେନସ୍‌ରେ ଯୋଗଦେଲେ । ୧୮୮୬ ମସିହା ମାର୍ଚ୍ଚମାସ ୩ ତାରିଖ ଦିନ କଟକ ପ୍ରିଣ୍ଟିଂ କମ୍ପାନୀ ହତା'ରେ ଏକ ସଭାରେ ପ୍ରଥମ କଂଗ୍ରେସ ଅଧିବେଶନରେ ବିଭିନ୍ନ ପ୍ରସ୍ତାବ ଉପରେ ଆଲୋଚନା ହେଲା । ଏଥିରେ ମଧୁସୂଦନ ସଭାପତିତ୍ୱ କରିଥିଲେ । ଏହାଦ୍ୱାରା ସମଗ୍ର ଓଡ଼ିଶାରେ ଏକ ରାଜନୈତିକ ନବଜାଗରଣ ସୃଷ୍ଟିହେଲା । ଏହି ଉଦ୍ଦୀପନାକୁ ସର୍ବସାଧାରଣରେ ପ୍ରକାଶ ପାଇଁ ୧୮୮୮ ମସିହା ଫେବୃଆରୀ ମାସ ୧୬ ତାରିଖରେ ଏକ ସାଧାରଣ ସଭା କଟକ ମ୍ୟୁନିସିପାଲିଟି ମାର୍କେଟ ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ସେହିବର୍ଷ ଅକ୍ଟୋବର ୬ ତାରିଖରେ ଏହି 'ଉତ୍କଳସଭା'ର ଏକ ଅଧିବେଶନରେ ଏହା

'ନିଖିଳ ଭାରତ ଜାତୀୟ କଂଗ୍ରେସ୍'ର ଏକ ଶାଖା ବୋଲି ସର୍ବସମ୍ମତ କ୍ରମେ ସିଦ୍ଧାନ୍ତ ହେଲା । ପରେ ଏହା ଓଡ଼ିଶାର ସର୍ବ ପ୍ରଥମ ପ୍ରାଦେଶିକ କଂଗ୍ରେସ କମିଟିରେ ପରିଣତ ହେଲା ।

୧୮୯୫ ମସିହା ଜାନୁଆରୀ ୨୫ ତାରିଖରେ ମଧ୍ୟପ୍ରଦେଶର ସରକାରୀ ଗେଜେଟ୍‌ରେ ଘୋଷଣା କରାଗଲା ଯେ ୧୮୯୭ ମସିହାଠାରୁ ସମ୍ବଲପୁର କୋର୍ଟ ଓ ଅଫିସ୍‌ରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ପ୍ରଚଳନ ହେବ । ମାତ୍ର ଓଡ଼ିଆମାନେ ସେତେବେଳେ ସମ୍ବଲପୁର ଓଡ଼ିଶାରେ ମିଶୁବୋଲି ଦାବୀ କରୁଥିଲେ ।

୧୮୯୬ ମସିହାରେ ଓଡ଼ିଶା ଓ ଛୋଟନାଗପୁର ମ୍ୟୁନିସିପାଲିଟି ନିର୍ବାଚନ ମଣ୍ଡଳୀରୁ ମଧୁସୂଦନ ବଂଗଳା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌କୁ ସଦସ୍ୟ ରୂପେ ନିର୍ବାଚିତ ହେଲେ । ଏ ଦିଗରେ ସେ ପ୍ରଥମେ ଓଡ଼ିଆ ପ୍ରତିନିଧି । ସେହିବର୍ଷ ବଂଗଳା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ମଧୁସୂଦନ ଯେଉଁ ଭାଷଣ ଦେଇଥିଲେ, ତାହାର ପରିଣାମ ସ୍ୱରୂପ ଓଡ଼ିଶାର ନିମକ ମାହାଲରୁ ମାନ୍ଦ୍ରାଜ ସରକାରଠାରୁ ଆସି ବଂଗଳା ଅଧିନରେ ରଖାଗଲା । ଏହି ଲବଣଶିଳ୍ପ ଓ ତା ଉପରେ ଧାର୍ଯ୍ୟ ସରକାରୀ ଟିକସର ହ୍ରାସ ଓଡ଼ିଶାରେ ମଧୁସୂଦନଙ୍କ ନେତୃତ୍ୱକୁ ଅଧିକ ବଳିଷ୍ଠ କରି ତୋଳିଲା ।

୧୮୯୭ ମସିହାରେ ମଧୁସୂଦନ ବଂଗଳା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ସଦସ୍ୟ ଭାବରେ ଲଣ୍ଡନ ଯାତ୍ରାକଲେ । ତାଙ୍କ ଉଦ୍ଦେଶ୍ୟ ଥିଲା–ଇଂଲଣ୍ଡର ରାଜନୈତିକ ନେତୃ ମହଲ ତଥା ଶାସନ କର୍ତ୍ତୃପକ୍ଷଙ୍କଠାରେ ଉତ୍କଳର ଦୁଃଖ ଦୁର୍ଦ୍ଦଶା ବିଷୟରେ ଅବଗତ କରି ତା'ର ପ୍ରତିକାର କରିବା ।

ଓଡ଼ିଶାରେ ଏହିପରି ଏକ ଦୁଃସ୍ଥ ଓ ନିର୍ଯ୍ୟାତିତ ଅବସ୍ଥା ମଧ୍ୟରେ ଯେତେବେଳେ ଜାତୀୟ ଉଦ୍ଦୀପନା କ୍ରମେ ଦାନାବାନ୍ଧି ଆସୁଥିଲା, ସେତେବେଳେ ଜାତୀୟ କବି କାନ୍ତକବି ମହାନ୍ତି ୧୮୯୭ ମସିହା ଏପ୍ରିଲ୍ ମାସ ୨୦ ତାରିଖରେ ବାଲେଶ୍ୱର ଜିଲ୍ଲାର ବାସୁଦେବପୁର ଥାନା ଅନ୍ତର୍ଗତ ଇରମ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ ।

XOX

# ॥ ଏକ ॥

## ପୂର୍ବବଂଶ :

ଜିଲ୍ଲାଟିର ନାମ ବାଲେଶ୍ୱର । ଥାନାର ନାମ ବାସୁଦେବପୁର । ଗ୍ରାମର ନାମ 'ଈରମ' [ଇରମ] । ଏହି ଗ୍ରାମଟି ବଙ୍ଗୋପସାଗର କୂଳରେ ଅବସ୍ଥିତ । 'ଈରମ'ର ଅର୍ଥ ହେଲା—'ଈ' ଅର୍ଥାତ 'ଲକ୍ଷ୍ମୀ' ଏବଂ 'ରମ'ର ଅର୍ଥ—'ରମଣ ସ୍ଥଳ' ବା 'କୁଟୀର' । ତେଣୁ 'ଈରମ'ର ଅର୍ଥ 'ଲକ୍ଷ୍ମୀଙ୍କ କୁଟୀର । ବଙ୍ଗୋପସାଗର ଏହି ଗ୍ରାମର ପୂର୍ବ ଦିଗରେ ପ୍ରାୟ ଗୁଣ ପାଞ୍ଚ କିଲୋମିଟର ଦୂରରେ ଅବସ୍ଥିତ । ଏହାର ପୂର୍ବ ଦିଗକୁ ଆଉ ଭାରତର ଜନବସତି ନାହିଁ । ବେଳାଭୂମିର ଏହି ମନୋରମ ପରିବେଶ ମଧ୍ୟରେ ଓଡ଼ିଶାର ଜାତୀୟ କବି ସ୍ୱର୍ଗତ ବାଞ୍ଛାନିଧି ମହାନ୍ତିଙ୍କର ଜନ୍ମ ।

କବି ବାଞ୍ଛାନିଧିଙ୍କ ପୂର୍ବ ବଂଶ ପ୍ରସଙ୍ଗରେ ଏ ପର୍ଯ୍ୟନ୍ତ ବିଶେଷ କିଛି ତଥ୍ୟ ମିଳି ନାହିଁ । ତଥାପି, ତାଙ୍କର ପାଞ୍ଚପୁରୁଷ ପୂର୍ବରୁ ଯେଉଁମାନେ ଜନ୍ମ ହୋଇ-ଥିଲେ, ସେମାନଙ୍କର କେବଳ ନାମ ମାତ୍ର ମିଳୁଛି । ଶ୍ରୀ କୃଷ୍ଣ ଚରଣ ମହାନ୍ତି ନାମକ ବ୍ୟକ୍ତିଙ୍କଠାରୁ ଏହି ବଂଶର ସ୍ରୋତ ଛୁଟିଛି । ତାଙ୍କର ଦୁଇଗୋଟି ପୁତ୍ର ଥିଲେ—ଗୋପୀନାଥ ମହାନ୍ତି ଓ ଗଦାଧର ମହାନ୍ତି । ଏହି ପ୍ରଥମ ପୁତ୍ର ଗୋପୀନାଥଙ୍କର ଦୁଇ ପୁତ୍ର ଥିଲେ—ସପନ ମହାନ୍ତି ଓ ଦଶମନ୍ତ ( ଯଶୋବନ୍ତ ) । ପୁନଶ୍ଚ, ସପନଙ୍କର ତିନି ଗୋଟି ପୁତ୍ର ଜନ୍ମ ହେଲେ — ରାମଚନ୍ଦ୍ର, ଗୋବିନ୍ଦଚନ୍ଦ୍ର ଓ ପଦ୍ମଚରଣ । ରାମଚନ୍ଦ୍ର ଅପୁତ୍ରିକ ଥିଲେ । ତେଣୁ ସେ ଚନ୍ଦ୍ରାମଣି ଓ ମାଗୁଣି ନାମରେ ଦୁଇଜଣ ସ୍ନେହପୁତ୍ର ପାଳନ କରିଥିଲେ । ଦ୍ୱିତୀୟ ପୁତ୍ର ଗୋବିନ୍ଦଙ୍କର କାଳନ୍ଦୀ ଚରଣ ନାମରେ ଗୋଟିଏ ପୁଅ ଥିଲା । ମାତ୍ର ତୃତୀୟ ପୁତ୍ର ପଦ୍ମଚରଣଙ୍କର ଥିଲେ ଦୁଇ ପୁତ୍ର — ସନାତନ ଓ ଚନ୍ଦ୍ରାମଣି । ପ୍ରଥମ ପୁତ୍ର ସନାତନ ଥିଲେ ନିଃସନ୍ତାନ । କିନ୍ତୁ, ଚନ୍ଦ୍ରାମଣିଙ୍କର

ଚାରିପୁତ୍ର ଥିଲେ — ବାଞ୍ଛାନିଧି, ପ୍ରେମାନନ୍ଦ, ବିବେକାନନ୍ଦ, ଓ ଶ୍ରଦ୍ଧାନନ୍ଦ । ସ୍ଥୂଳତଃ ଏହାହିଁ ଜାତୀୟ କବି ବାଞ୍ଛାନିଧିଙ୍କର ପୂର୍ବ ପାଞ୍ଚ ପୁରୁଷର ବଂଶଲତା । ଏଥିରେ ଏକ ସ୍ପଷ୍ଟ ଧାରଣା ପାଇଁ ନିମ୍ନରେ ଏକ ସୂଚୀ ପ୍ରଦାନ କରାଗଲା ।

ବଂଶଲତା--୧




## ଜନ୍ମ ଓ ଶୈଶବାବସ୍ଥା :

ଜାତୀୟ କବି ବାଞ୍ଛାନିଧି ମହାନ୍ତି ୧୮୯୭ ମସିହା ଏପ୍ରିଲ ମାସ ୨୦ ତାରିଖ ଶୁକ୍ରବାର ଦିନ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ଚନ୍ଦ୍ରାମଣି ମହାନ୍ତି ଓ ମାତାଙ୍କ ନାମ ଶ୍ରୀମତୀ ପଦ୍ମା ଦେଈ । ତାଙ୍କ ଜନ୍ମ ପତ୍ରିକାରୁ ସମସ୍ତ କଥା ଜଣାଯାଏ । ତାହାର ଅବିକଳ ନକଲ ତଳେ ଦିଆଗଲା ।

"ଶ୍ରୀ ଶୁଭମସ୍ତୁ ଶ୍ରୀ ବାଲମୁକୁନ୍ଦଦେବ ସମସ୍ତ ଅ୨୮ଙ୍କ ସନ ୧୩୦୩ ସାଲ ଗ୍ରାହ୍ୟ ମେଷମାସ ଦି୧୫ନେ ବୈଶାଖର ଶୁକ୍ଳ ଦ୍ୱାଦଶୀ ଶୁକ୍ରବାର ଭୃଗୁ ବାସରେ ଅନ୍ୟ

---

(୧) ବାଞ୍ଛାନିଧିଙ୍କ ବଂଶଧର ଇରମସ୍ଥ ସ୍ୱର୍ଗତ ବିପଦ ଭଞ୍ଜନ ମହାନ୍ତିଙ୍କଠାରୁ ଏହି ବଂଶଲତା ତାଳକାଟି ପ୍ରାପ୍ତ ।

ଦିବସ ଦଂଶ୍ରେକୁ [ସକାଳ ୮ / ଲ୯ଗ୍ନେ ଇରମ ଗ୍ରାମବାସ୍ତବ୍ୟ ଶ୍ରୀମାନ ଶ୍ରୀ କରଣ ଶ୍ରୀ ଚନ୍ଦ୍ରାମଣି ମହାନ୍ତ୍ରଙ୍କର ସ୍ୱପତ୍ନ୍ୟୋଦରେ ଗର୍ଭେ ଶୁଭକୁମାର ଜନ୍ମ ।" [୨]

| | | | | | |
|---|---|---|---|---|---|
| ୧୨୧୦ | ୭ | ୬ | ଚ | ୪ | ରା |
| ୧୩୫ | ବୁ | | ରା ୧ / ୧ ଶି | | ୨ |
| ୧୬୦ | କେ | ୧୦ | ଶୁ ଶ | ର ମ ବୃ | ଲ |

| | |
|---|---|
| ୧୮୪୪ | ୧ । ୧୮ । ୮ |
| ୨୧୦ | ୩ । ୧୬ । ୮ |
| ୧୪୭ | ୪ । ୧୭ । ୮ |
| ଧ ୧୫ | ୫ । ୯ । ୪ |
| | ୬ । ୧୫ । ୭ |
| | ୭ । ୧୫ । ୭ |
| | ୮ । ୨୪ । ୧୧ |
| | ୯ । ୧୧ । ୫୦ |

## ପିତା-ଚିନ୍ତାମଣି ·

ଚନ୍ଦ୍ରାମଣି ମହାନ୍ତ ଥିଲେ ଜଣେ ଦରିଦ୍ର କରଣ । ଇରମର ତତ୍କାଳୀନ ଜମିଦାର ନୀଳମାଧବ ପାଢ଼ୀଙ୍କ ଜମିଦାରୀ ଅଫିସରେ ସ୍ୱଳ୍ପ ବେତନ ଭୋଗୀ ସାମାନ୍ୟ ଜଣେ ଗୁମାସ୍ତା ଥିଲେ । ଏହି ଅଳ୍ପ ରୋଜଗାରରେ ସେ ବହୁ କଷ୍ଟରେ ନିଜ ପରିବାରର ଭରଣ ପୋଷଣ କରୁଥିଲେ । ଦାରିଦ୍ର୍ୟର କଷାଘାତରେ ତାଙ୍କର ଜୀବନ ମଉଳି ପଡୁଥିଲେ ମଧ୍ୟ ତାଙ୍କଠାରେ ଉଚ୍ଚମାନବିକତାର ଆଦର୍ଶ ଥିଲା । ଖୁବ୍ ସମ୍ଭବ ତାହାରି ଦ୍ୱାରା ପୁତ୍ର ବାଞ୍ଛାନିଧି ପ୍ରଭାବିତ ହୋଇଥିଲେ । ସେ ଥିଲେ ଯେପରି ଧର୍ମାତ୍ମା, ସେହିପରି ନ୍ୟାୟବନ୍ତ ପୁରୁଷ । ତେଣୁ ଦାରିଦ୍ର୍ୟର ପୁଷ୍କରିଣୀରେ ତାଙ୍କର ବଳିଷ୍ଠ ଉଜ୍ଜ୍ୱଳ ପୌରୁଷର କମଳ ଢଳଢଳ ହୋଇ ସମସ୍ତଙ୍କ ଦୃଷ୍ଟିକୁ ଆକର୍ଷଣ କରି ପାରିଥିଲା । ତେଣୁ, ଗ୍ରାମର ବିଭିନ୍ନ କାର୍ଯ୍ୟାନୁଷ୍ଠାନ ମଧ୍ୟରେ ତାଙ୍କର ଉପସ୍ଥିତିକୁ ସ୍ମରଣ କରାଯାଇଥାଏ ।

ଏକଦା ପ୍ରଜାଙ୍କ ଉପରେ ଅନ୍ୟାୟ କାର୍ଯ୍ୟ କରିବାକୁ ଜମିଦାରଙ୍କ ତରଫରୁ ତାଙ୍କୁ ବାଧ୍ୟ କରାଗଲା । କିନ୍ତୁ ଏଥିରେ ତାଙ୍କ ବିବେକ ବିଦ୍ରୋହ କରି ଉଠିଲା । ସେ ଜମିଦାରଙ୍କ ଆଦେଶ ପାଳନ କରିପାରିଲେ ନାହିଁ । ଫଳରେ ଜମିଦାର ଶ୍ରୀ ନୀଳମାଧବ ପାଢ଼ୀଙ୍କ ସହିତ ତାଙ୍କର ମତାନ୍ତର ଓ ପରେ ମନାନ୍ତର ହେଲା । ଏହିପରି

(୨) ଇରମସ୍ଥ ଶ୍ରୀ ଶଙ୍କର୍ଷଣ ନାୟକଙ୍କଠାରୁ ପ୍ରାପ୍ତ ।

ଏକ ଅଶାନ୍ତ ଏବଂ ଅତୃପ୍ତିକର ପରିବେଶ ମଧ୍ୟରେ ନ ରହି ସେ ନିଜେ ଗୁମାସ୍ତା ଗୃହକାମରୁ ଇସ୍ତଫା ଦେଲେ ।

ବିପଦ ଯେତେବେଳେ ଆସେ ଏକାକୀ ଆସେ ନାହିଁ । ତାହାର ସାଙ୍ଗସାଥୀ, ବନ୍ଧୁବର୍ଗଙ୍କୁ ନେଇ କରି ଆସେ । ଚନ୍ଦ୍ରମଣି ଗୃହକାମ ଛାଡ଼ି ଦେବାପରେ ପରିବାରର ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ସେହି ସମୟରେ ତାଙ୍କ ସ୍ତ୍ରୀ ପବିତ୍ରା ଦେବୀଙ୍କର ମୃତ୍ୟୁ ଘଟିଲା । ପରିବାରର ଆର୍ଥିକ ଅସ୍ୱଚ୍ଛଳତା ସାଙ୍ଗକୁ ଦୁଇପୁଅ ବାଞ୍ଛାନିଧି ଓ ପ୍ରେମାନନ୍ଦଙ୍କର ଲାଳନ ପାଳନର ଦାୟିତ୍ୱ ତାଙ୍କୁ ବିବ୍ରତ କରି ପକାଇଥିଲା । ସେତେ-ବେଳକୁ ବାଞ୍ଛାନିଧିଙ୍କର ବୟସ ଆଠ/ନଅ ବର୍ଷ ଏବଂ ପ୍ରେମାନନ୍ଦଙ୍କ ବୟସ ଛଅ ସାତ ବର୍ଷ ହେବ । ଶ୍ୱଶୁର ଏବଂ ବନ୍ଧୁବର୍ଗଙ୍କ ପରାମର୍ଶ କ୍ରମେ ସେ ମୃତା ସ୍ତ୍ରୀ ପବିତ୍ରା ଦେବୀଙ୍କ କନିଷ୍ଠା ଭଗ୍ନୀ କୁନ୍ଦଲତା ଦେବୀଙ୍କୁ ପିଲାମାନଙ୍କ ଲାଳନପାଇଁ ବିବାହ କଲେ । ଇରମ ଗ୍ରାମର ଦକ୍ଷିଣ ଦିଗସ୍ଥ ମହାନ୍ତି ସାହିରେ ତାଙ୍କଘର । ଶୁଣାଯାଏ, ନିଜ ମା'ଠାରୁ ଅଧିକରି କୁନ୍ଦଲତା ତାଙ୍କୁ ସ୍ନେହ କରୁଥିଲେ । ବାଞ୍ଛାନିଧି ଆସି ଘରେ ପହଞ୍ଚିଲେ ତାଙ୍କ ଡ଼ାକରେ ଘର କମ୍ପି ଉଠେ — "ଆଲୋ ମୋ କୁଆଲେ, କେତେ କଷ୍ଟ କରି ଧାଇଁ ଧାଇଁ ଆସିଛୁ ଲୋ । ଲୋ ଚମ୍ପା, ପାଣି ଆଣ ଲୋ — ଗାମୁଛା ଆଣ ଲୋ —" [୩] ପୁଅକୁ କୋଳରେ ବସାଇ ପଣତ କାନରେ ସର୍ବାଙ୍ଗରୁ ଧୂଳି ଝାଡ଼ି ପକାନ୍ତି କୁନ୍ଦଦେବୀ । ଆଖିରୁ ତାଙ୍କର ଧାରଧାର ଲୁହ ଗଡ଼ି ଯାଉଥାଏ । ଗୋଡ ଲମ୍ବେଇ ଦେଲାପରେ ବାଞ୍ଛାନିଧି ପିଲାଙ୍କ ପରି କୋଳରେ ବସିଯାଆନ୍ତି ।

ଚାଟଶାଳୀ :-

କବି ବାଞ୍ଛାନିଧି କିଶୋର ଅବସ୍ଥାରେ ଚାଟଶାଳୀରେ ଅଧ୍ୟୟନ କରୁଥିବା ସମୟରେ ବହୁଥର ପାଠ ନ ପଢ଼ି ଘରକୁ ପଳେଇ ଆସୁଥିଲେ, ନଇବା ଗାଁରେ ଅନ୍ୟତ୍ର ଖେଳୁଥିଲେ କିନ୍ତୁ, ଛୁଟି ବେଳେ ଘରେ ହାଜର ହୋଇ ଯାଉଥିଲେ । ବାଲ୍ୟାବସ୍ଥାରେ ପାଠ ପଢ଼ିବାକୁ ସେ ଭାରି ଅନିଚ୍ଛୁକ ଥିଲେ । ତେଣୁ ଚାଟଶାଳୀକୁ ଯିବା ପାଇଁ ସେ ସମ୍ମତ ହେଉ ନ ଥିଲେ । ସେଥିପାଇଁ ତାଙ୍କର ପିଉସୀ ପୁଅ ଭାଇ ଗଣେଶ ପ୍ରସାଦ ମହାନ୍ତି ଅନେକ ଥର ଗୋଟେ ହାତରେ ବାଞ୍ଛାନିଧି ଓ ଅନ୍ୟହାତରେ ବେତ ଧରି ଚାଟଶାଳୀରେ ଛାଡ଼ିଦେଇ ଆସନ୍ତି । ଅନେକଥର ମଧ୍ୟ ତାଙ୍କଠାରୁ ବେତ୍ରାଘାତ ସହ୍ୟ କରିବାକୁ ପଡ଼ିଛି । ଏହି ଚାଟଶାଳୀରେ ତାଙ୍କ ଅବଧାନ ଥିଲେ ଶ୍ରୀ ଜଗବନ୍ଧୁ ପାଣି । ତାଙ୍କ ଘର ନୂଆଗାଁ । ସେତେବେଳେ ଚାଟଶାଳୀରେ "ଚାଟ-ଶାଳୀ ପାଠ" ଚନ୍ଦ୍ରମଣି ମହାରଣାଙ୍କର 'ଜଥାବଳୀ' ଏବଂ ଓଡାଙ୍କ, ଫେଡାଙ୍କ,

(୩) ସ୍ୱର୍ଗୀୟ ବାଞ୍ଛାନିଧି ବାବୁ ଓ ମୁଁ — ଶ୍ରୀ ଗୌରାଙ୍ଗ ଚନ୍ଦ୍ର ଦାସ ।

ନଳ, କଡ଼ା ଗଣ୍ଡା, ଭିଆଣ ଓ କର ବିକଯ୍ୟ ଆଦି ଦୁଇ ଓଳିରେ ପଢ଼ା ଯାଉଥିଲା । ଏହି ଗୁରୁଶାଳୀରେ ଚାରିବର୍ଷ ପଢ଼ିବାକୁ ପଡ଼ୁଥିଲା । ବାଞ୍ଛାନିଧି ଏ ସମସ୍ତ ଗୁରୁଶାଳୀରେ ଅଧ୍ୟୟନ କଲେ । ଶୁଣାଯାଏ, ଏହି ଅବସ୍ଥାରେ ସେ ଅନେକଥର କୃଷ୍ଣ ବେଶରେ ନିଜକୁ ସଜ୍ଜିତ କରୁଥିଲେ । ନିଜକୁ କୃଷ୍ଣରୂପେ ପରିଚିତ କରିବାକୁ ସୁଖ ପାଉଥିଲେ ।

କବି ପିତା ଚନ୍ଦ୍ରାମଣିଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭହୁଏ — ଭଦ୍ରକସ୍ଥ କଚେରୀରେ ମୋହରିର ରୂପେ । ସେ ଭଦ୍ରକର ପୁରୁଣା ବଜାରରେ ଥିବା ମୀନମାଧବ ପାଡ଼ୀଙ୍କ କଚେରୀ ବଙ୍ଗଳାରେ ରହୁଥିଲେ ଏବଂ ପ୍ରତିଦିନ ସାଳନ୍ଦୀ ନଦୀ ଡଙ୍ଗାରେ ପାରିହୋଇ ଆସି କଚେରୀରେ ମୋହରିର କାର୍ଯ୍ୟ କରି ଜୀବିକା ନିର୍ବାହ କରିବାକୁ ଲାଗିଲେ । ଇତମଧ୍ୟରେ ବାଞ୍ଛାନିଧି ଉଚ୍ଚ ପ୍ରାଥମିକ ପର୍ଯ୍ୟନ୍ତ ପଢ଼ିଥିଲେ । ପରେ ଚନ୍ଦ୍ରାମଣି ତାଙ୍କୁ ଭଦ୍ରକ ଆଣି ନିଜ ପାଖରେ ରଖି ଭଦ୍ରକ ହାଇସ୍କୁଲରେ ପଢ଼ାଇଲେ । ପ୍ରତ୍ୟହ ଚନ୍ଦ୍ରାମଣି ଦଶଟା ବେଳେ ଖିଆଇ ପିଆଇ ସାଙ୍ଗରେ ବାଞ୍ଛାନିଧିଙ୍କୁ ଆଣି ଭଦ୍ରକ ହାଇସ୍କୁଲରେ ଛାଡ଼ିଦେଇ ଆସି ସେ କଚେରୀ ଚାଲି ଯାଆନ୍ତି । ଭଦ୍ରକ ହାଇସ୍କୁଲ ନିକଟରେ କଚେରୀ ହେତୁ ବିଶେଷ କିଛି ଅସୁବିଧା ହେଉ ନ ଥିଲା । ସେ କଚେରୀରୁ ଚାରିଟା ବେଳେ ଫେରିଲା ବେଳେ ବାଞ୍ଛାନିଧିଙ୍କୁ ନେଇ ଆସୁଥିଲେ । ଫଳରେ ଇତମଧ୍ୟ ଅପେକ୍ଷା ଭଦ୍ରକରେ ପିତାଙ୍କ ସଂସ୍ପର୍ଶରେ ବାଞ୍ଛାନିଧି ଅଧିକ ଆସିଥିଲେ । ତାଙ୍କର ସ୍ୱଚ୍ଛ ବୋଧ, ଦୃଷ୍ଟିକୋଣ ବାଞ୍ଛାନିଧିଙ୍କ ଉପରେ ପଡ଼ିବାର ବହୁ ସୁବିଧା ମିଳିଲା ।

## ସ୍କୁଲ ଶିକ୍ଷା :

ଭଦ୍ରକ ହାଇସ୍କୁଲରେ ମେଟ୍ରିକ୍ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କର ଘନିଷ୍ଠତମ ବନ୍ଧୁ ଥିଲେ ବୈଷ୍ଣବ ଚରଣ ଦାସ । କାରଣ ସେ ଥିଲେ ଜଣେ ସଙ୍ଗୀତ ପ୍ରେମୀ ଛାତ୍ର । **ବାଞ୍ଛାନିଧି** ବାଲ୍ୟାବସ୍ଥାରୁ ଏହି ସଙ୍ଗୀତ ଗାନ ପ୍ରତି ପ୍ରବଳ ଅନୁରକ୍ତ ଥିଲେ । ପରେ **'ସଙ୍ଗୀତ** ଶିଳ୍ପୀ ବାଞ୍ଛାନିଧି' ଶୀର୍ଷକରେ ତାଙ୍କର ଅପୂର୍ବ ସଙ୍ଗୀତକଳା ବିଷୟରେ ବିଶଦ ଭାବରେ ବର୍ଣ୍ଣନା କରାଯିବ । ଭଦ୍ରକ ହାଇସ୍କୁଲର ତତ୍କାଳୀନ ସହକାରୀ ଶିକ୍ଷକ ପୁରୀ ଜିଲ୍ଲାର ନିମାପଡ଼ା ନିବାସୀ ଶ୍ରୀ ଜଗତ ବଲ୍ଲଭ ଦାସ ତାଙ୍କର ଏହି ସଙ୍ଗୀତ ଚର୍ଚ୍ଚାରେ ବିରକ୍ତ ହେଉଥିଲେ । ଏହାଦ୍ୱାରା ପାଠପଢ଼ା କ୍ଷତି **ହେଉଛି** ବୋଲି ବାରମ୍ବାର **ଚେତାବନୀ** ଶୁଣାଉଥିଲେ । ଘରେ ମଧ୍ୟ ଚନ୍ଦ୍ରାମଣି ଏଥିରେ ବିରକ୍ତି ପ୍ରକାଶ କରୁଥିଲେ । **ତେଣୁ** ବୈଷ୍ଣବଚରଣ ଓ ବାଞ୍ଛାନିଧି ଦୁହେଁ ଗୋପନରେ ସଙ୍ଗୀତ ଗାନ ଅଭ୍ୟାସ ଅବ୍ୟାହତ ରଖିଥିଲେ । ଏହି ବୈଷ୍ଣବ ଚରଣ

ଦାସଙ୍କ ଘର ଭଦ୍ରକ ହାଇସ୍କୁଲର ଉତ୍ତର ଦିଗରେ ଅବସ୍ଥିତ ବଙ୍କସାହିରେ । ବାଞ୍ଛାନିଧିଙ୍କୁ ନେଇ ସେତେବେଳକୁ ଚନ୍ଦ୍ରାମଣି ଭଦ୍ରକ ହାଇସ୍କୁଲର ଉତ୍ତର ଦିଗସ୍ଥ ବଙ୍କ ସାହିରେ ରହିବା ଆରମ୍ଭ କରି ସାରିଥିଲେ । ଏଣୁ, ଦୁହିଁଙ୍କର ସଙ୍ଗୀତ ସାଧନା କରିବା ପାଇଁ ଅପୂର୍ବ ସୁଯୋଗ ମିଳିଗଲା ।

ଗୁଆମାଳର ଗୋଲକ ବାବୁ, ରାଧାକାନ୍ତ ବାବୁ, ଇରମର ମୁକ୍ତିକାନ୍ତ ପାଢ଼ୀ ଏବଂ ମନାବାବୁ ଯିଏକି ପରବର୍ତ୍ତୀ କାଳରେ କଲେକ୍ଟର ହୋଇଥିଲେ, ସେତେବେଳେ ଭଦ୍ରକ ହାଇସ୍କୁଲରେ ଛାତ୍ରଥିଲେ । ଶ୍ରୀ ବୈଷ୍ଣବ ଚରଣ ଦାସ ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟରେ ବିଶେଷତଃ ଉପନ୍ୟାସ - ସାହିତ୍ୟରେ ମନସ୍ତାତ୍ତ୍ୱିକ ଉପନ୍ୟାସ କ୍ଷେତ୍ରରେ ସ୍ମରଣୀୟ ହୋଇ ରହିଛନ୍ତି । ତାଙ୍କର 'ମନେମନେ' ଉପନ୍ୟାସ ଓଡ଼ିଆ ମନସ୍ତାତ୍ତ୍ୱିକ ଉପନ୍ୟାସ ରାଜ୍ୟରେ ଏକ ଉଜ୍ଜ୍ୱଳ ଆଲୋକ ସ୍ତମ୍ଭ ।

ଭଦ୍ରକ ହାଇସ୍କୁଲରେ ଛାତ୍ରାବସ୍ଥାରେ ଏକ ବିଶେଷ ଘଟଣା — ତୁଳସୀ ଦୁଇ ପତ୍ରରୁ ବାସିଲା ପରି ଜଣାଯାଏ । ଘଟଣାଟି ଏହିପରି — ସେତେବେଳେ ପୋଷ୍ଟ ଅଫିସ ଅଧିକ ଦୂରଥିଲା । ତେଣୁ ବାଞ୍ଛାନିଧି ନିଜ ଘର ଆଗ ଆମ୍ବଗଛରେ ଗୋଟିଏ ଟିଣା କାଟି 'ଚିଠିବାକ୍ସ' ଲେଖି ଝୁଲାଇ ଦେଲେ । ଗାଁ ଲୋକମାନେ ଏଥିରେ ଚିଠି ପକାନ୍ତି ଓ ସେ ସ୍କୁଲରୁ ଫେରିଲା ପରେ ସେ ସବୁ ନେଇ ପୋଷ୍ଟ ଅଫିସକୁ ଧାଆନ୍ତି । ଯେଉଁ ଦିନ ସେ ବେଶୀ ଚିଠି ବାକ୍ସରେ ଦେଖୁଥିଲେ, ସେତେବେଳେ ତାଙ୍କର ଆନନ୍ଦ ବା ଆଉ ଦେଖେ କିଏ ?

ସେତେବେଳେ ଭଦ୍ରକ ହାଇସ୍କୁଲରେ ପରୀକ୍ଷା ଦେବା ପାଇଁ କେନ୍ଦ୍ର ନଥିଲା । ଛାତ୍ରମାନେ ଜିଲ୍ଲାର ସଦର ମହକୁମା ହାଇସ୍କୁଲରେ ମେଟ୍ରିକ ପରୀକ୍ଷା ଦେଉଥିଲେ । ସେହିପରି କବି ବାଞ୍ଛାନିଧି ବାଲେଶ୍ୱରର ମିଶନ ଉଚ୍ଚବିଦ୍ୟାଳୟରେ ପରୀକ୍ଷା ଦେଲେ ଏବଂ ଦ୍ୱିତୀୟ ଶ୍ରେଣୀରେ ମେଟ୍ରିକ ପାଶ କଲେ । ସେତେବେଳକୁ ତାଙ୍କର ବୟସ ଚଉଦ ବର୍ଷ ହେବ ।

XOX

# ॥ ଦୁଇ ॥

## କଲେଜ ଶିକ୍ଷା

ଗଣକବି ବାଞ୍ଛାନିଧି ଖ୍ରୀ.ଅ. ୧୯୧୧ରେ ମେଟ୍ରିକ ପାଶ୍ କଲାପରେ ଉଚ୍ଚଶିକ୍ଷା ପାଇଁ ତତ୍କାଳୀନ ଏକମାତ୍ର କଲେଜ 'ରେଭେନ୍ସା କଲେଜ'ରେ ଅଧ୍ୟୟନ କଲେ । ସେତେବେଳେ ଆଜିର ରେଭେନ୍ସା କଲିଜିଏଟ୍ ହାଇସ୍କୁଲରେ ରେଭେନ୍ସା କଲେଜ ହେଉଥିଲା । ବାଞ୍ଛାନିଧି ରେଭେନ୍ସା କଲେଜ ହଷ୍ଟେଲରେ ରହି କଲେଜ୍ ଜୀବନ ଆରମ୍ଭ କଲେ । ତାଙ୍କର ଅତି ଘନିଷ୍ଠ ବନ୍ଧୁ ଏହି ସମୟରେ ଥିଲେ — କବି ମନ୍ମଥ କୃଷ୍ଣପ୍ରସାଦ ବସୁ । କୃଷ୍ଣପ୍ରସାଦ ଜଣେ ସୁଦକ୍ଷ ସଙ୍ଗୀତଜ୍ଞ ଥିଲେ । ତେଣୁ ପ୍ରତ୍ୟହ ସଂଧ୍ୟାରେ କାଠଯୋଡ଼ିର ବାଲୁକା ଶଯ୍ୟାରେ ବସି ସଙ୍ଗୀତ ଚର୍ଚ୍ଚା କରୁଥିଲେ । ଏପରିକି ଦୁହେଁ ଗଣିତ ଶ୍ରେଣୀରେ ମଧ୍ୟ ଡେକ୍ସ ଉପରେ ହାତରେ ଆଘାତ କରି ଗୀତର ସ୍ୱର ଧରନ୍ତି । ଏ କଥା ନିଜେ କବି କୃଷ୍ଣପ୍ରସାଦଙ୍କଠାରୁ ଶୁଣାଯାଇଛି । ପରବର୍ତ୍ତୀ କାଳରେ ସେ ଓଡ଼ିଶାର ନାଟ୍ୟ ଜଗତରେ ସୁ ପ୍ରସିଦ୍ଧ ନାଟ୍ୟକାର, ନିର୍ଦ୍ଦେଶକ ଓ ସଙ୍ଗୀତଜ୍ଞରୂପେ ପରିଚିତ ହୋଇଛନ୍ତି । ପ୍ରଖ୍ୟାତ ପାଲାକାର ଓ କାବ୍ୟକାର ଭାବରେ ମଧ୍ୟ ସେ ସୁପରିଚିତ । ସେ 'ମୁଁ କାହିଁକି ଲେଖେ ?' — ଶୀର୍ଷକରେ ଏକ ଲେଖାରେ 'ଡ଼ଗର' ପତ୍ରିକାରେ ପ୍ରକାଶ କରିଥିଲେ । ସେଥିରେ ବାଞ୍ଛାନିଧିଙ୍କ ସହିତ ତାଙ୍କର ସମ୍ପର୍କ କିପରି ଥିଲା, ତାହାର ସୂଚନା ଦେଇଥିଲେ । ଗୋଟିଏ ସ୍ଥାନରେ ସେ ଲେଖିଥିଲେ — "ଅନ୍ତରଙ୍ଗ ବନ୍ଧୁ ଗୋଟିଏ ମାତ୍ର ସେ କାଳରେ ଥିଲେ ସ୍ୱର୍ଗୀୟ ବାବୁ ବାଞ୍ଛାନିଧି ମହାନ୍ତି—ଭଦ୍ରକର ଯାହାଙ୍କର **"ଆଚ୍ଛା ଗୋଲଟେବୁଲ ପାଲି"** — ଓ ସ୍ୱଦେଶୀଗୀତ ଗୁଡ଼ିକ ଅକ୍ଷୁଣ୍ଣ ଅମର ହୋଇ ରହିଛି ଉତ୍କଳ ସାହିତ୍ୟରେ । ସେହି ଜାଣିଥିଲେ ପ୍ରାଣର କଥା, ସେହି ଏକା ଦେଇଥିଲେ ସାହସ, ଯଦି ମୁଁ ଜେଲ ଯାଏ, ଠିକ କରି ଯାତ୍ରାଦଳର ନାଁ ଟିକୁ ବଦଳାଇ ଦେଇ

ସେ ହେବେ ମ୍ୟାନେଜର । ଏହି ପରି ପର୍ଯ୍ୟାୟ କ୍ରମେ କେଲ୍ ଯାଇ ମଧ ଦଳଟିଏ ଚଳାଇବା ଏହାହିଁ ହେଲା ଆମ ଦୁହିଁଙ୍କ ମଧ୍ୟରେ ଗୋଟାଏ ପରାମର୍ଶ ।''(୪)

ସେ ପୁଣି କାନ୍ତକବିଙ୍କ ସ୍ମୃତି ଉଦ୍ଦେଶ୍ୟରେ ଲିଖିତ 'ସବୁଥିରୁ ବଞ୍ଚିତ କରି' ଶୀର୍ଷକ ରଚନାରେ ବାଞ୍ଛାନିଧି ଓ ସୁରଦେଓ କାନ୍ତକବିଙ୍କ ସହିତ ତାଙ୍କର କିପରି ସମ୍ପର୍କ ଥିଲା ତାହା 'ଡଗର'ରେ ଉଲ୍ଲେଖ କରିଛନ୍ତି । ''ଲକ୍ଷ୍ମୀଭାଇ, ସୁରଦେଓ, ବାଞ୍ଛାନିଧି ଓ ମୁଁ × × ଆମ ଗୁରିଙ୍କ ମଧ୍ୟରେ ବନ୍ଧନ ଥିଲା କେତେ ମଧୁମୟ । ସେହି ସଙ୍ଗୀତ ସାହିତ୍ୟମୟ ଆକାଶରେ ରଚନା କରିଥିଲୁ ଆମର ଗୋଟାଏ ସ୍ୱତନ୍ତ୍ର ଗୋଷ୍ଠୀ । ଲକ୍ଷ୍ମୀଭାଇ ଥିଲେ ଶ୍ୟାମ, ସୁରଦେଓ ରାଧା, ବାଞ୍ଛାନିଧି ସୁବଳ ଓ ମୁଁ ମଧୁ ମଙ୍ଗଳ, କେବଳ ଚମ୍ପକେ ଏତିକି କହିଲେ ଚଳିବ '' (୫) । ସେହି ରଚନାର ଅନ୍ୟ ଏକ ସ୍ଥଳରେ ଲେଖିଥିଲେ – ''ମୁଁ ବାଞ୍ଛାନିଧି ଓ ଲକ୍ଷ୍ମୀଭାଇଙ୍କ ମଧ୍ୟରେ କଲେଜ ଜୀବନରୁ ଜାତ ହୋଇଥିଲା ଯେଉଁ ସଦ୍‌ଭାବ ତାହା ପରବର୍ତ୍ତୀ ଯୁଗରେ ଘନକୁଘନ ବଢିଲା ସିନା × × କେହି କାହାର ଜୀବଦଶାରେ କ୍ଷୁନ୍ନ କରି ନଥିଲୁଁ । ପରସ୍ପର ଅନ୍ତରରେ ଥିଲା – ତ୍ରିବେଣୀର ଧାରା ।'' (୬)

ଆଇ. ଏ. ପରୀକ୍ଷାରେ ବାଞ୍ଛାନିଧି ପ୍ରଥମ ଶ୍ରେଣୀରେ କୃତକାର୍ଯ୍ୟ ହୋଇଥିଲେ ।

ସେ ଯେତେବେଳେ ବି. ଏ.ର ଶେଷବର୍ଷର ଛାତ୍ର, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଗହଣରେ ଓଡ଼ିଆ ସାହିତ୍ୟର ପ୍ରଥମ ନାଟକ ରାମଶଙ୍କର ରାୟଙ୍କର 'କାଞ୍ଚିକାବେରୀ' ନାଟକରେ ଅଭିନୟ କରିଥିଲେ । କାନ୍ତ କବି ମଧ ସେତେବେଳେ ରେଭେନ୍‌ସା କଲେଜରେ ଛାତ୍ରଥିଲେ । ସେ ଥିଲେ ଏକାଧାରରେ କବି, ଗାଳ୍ପିକ, ଓ ସୁଗାୟକ । ତେଣୁ, ତାଙ୍କ ସହିତ ତାଙ୍କର ଆତ୍ମୀୟତା ବୃଦ୍ଧି ହେବା ଖୁବ୍-ସ୍ୱାଭାବିକ । ପୁଣି, କାନ୍ତକବିଙ୍କ ଘର ଭଦ୍ରକ ନିକଟସ୍ଥ ତାଲପଦା ଗ୍ରାମରେ । ସୁତରାଂ ସେ ଦୁହିଁଙ୍କ ମଧ୍ୟରେ ଗଭୀର ସମ୍ପର୍କ ସ୍ଥାପନ ହେବାକୁ ଲାଗିଲା । ନାଟକ ଓ ସଙ୍ଗୀତ କାର୍ଯ୍ୟକ୍ରମରେ ସର୍ବଦା ବ୍ୟସ୍ତ ଥିବାରୁ ବି. ଏ. ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ । ଏହି ସମୟରେ ସେ ନୀଳଗିରିଠାରେ କିଛିକାଳ ପାଇଁ ସ୍କୁଲ ସବ୍‌ଇନ୍‌ସପେକ୍‌ଟର ଚାକିରି କଲେ । ପରେ ସେ ବି. ଏ. ପରୀକ୍ଷା ଦେଲେ ଓ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହେଲେ ।

---

(୪) ଡଗର—୧୪ଶ ବର୍ଷ – ୨୦ଶ ସଂଖ୍ୟା—ତା ୧୬ । ୧ । ୫୧ରିଖ—ପୃ. ୭, ପରେ ଏହା କାନ୍ତ କବି ଲକ୍ଷ୍ମୀକାନ୍ତ ସ୍ମରଣିକା (୧୯୭୧) ରେ ପ୍ରକାଶିତ ।

(୫) ଡଗର—୧୯ଶ ବର୍ଷ—୯ ଓ ୧୦ମ ସଂଖ୍ୟା – ୧୯୫୬—ମାର୍ଚ୍ଚ-ଏପ୍ରିଲ ସଂଖ୍ୟା ପୃ-୯୧ ।

(୬) ତଦୈବ—ପୃ-୯୬ ।

ସେତେବେଳେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ରେଭେନ୍‌ସା କଲେଜରେ ସଭାସମିତିମାନ ଅନୁଷ୍ଠିତ କରି 'ସତ୍ୟବାଦୀ ବନବିଦ୍ୟାଳୟ' ପାଇଁ ତଥା ସ୍ୱାଧୀନତା ଆନ୍ଦୋଳନ ପାଇଁ ସେବକ ଅନ୍ୱେଷଣରେ ବ୍ୟସ୍ତ ଥିଲେ । କ୍ରମଶଃ, ବାଞ୍ଛାନିଧି ଓ ଗୋପବନ୍ଧୁଙ୍କ ସମ୍ପର୍କ ଘନିଷ୍ଠ ହୋଇ ଆସିଲା । ସେ ରେଭେନ୍‌ସା କଲେଜରେ ଛାତ୍ରାବସ୍ଥାରେ ଏକ ଦେଶାତ୍ମବୋଧ ମୂଳକ ସଙ୍ଗୀତ ଗାନ କରି ସମସ୍ତଙ୍କୁ ମୁଗ୍ଧ କରିଥିଲେ । ଏଥିରୁ କେତୋଟି ପଦ ହେଲା—

"ପଡ଼ୁ ନାହିଁ କି ତଲେ, ମନେ ସୋଦର ହେ
ପୂରବ ମହିମା ପୂରବ ଗରିମା ଉତ୍କଳ ଅତୀତ କାହାଣୀ ଶ୍ରବଣେ ।
କବି ଉପେନ୍ଦ୍ର ଭଞ୍ଜ କବିତା-କାସାର-କଞ୍ଜ
ଦୀନକୃଷ୍ଣ, ବଳରାମ, ଜଗନ୍ନାଥ
ସାମନ୍ତ ସାହିତ୍ୟକ ଲୀଳାବତୀ ଗାଣିତିକ
ଜ୍ୟୋତିଷ ପ୍ରବର ଶ୍ରୀ ଚନ୍ଦ୍ରଶେଖର
ଉଇଁଥିଲେ ତବ ଭାଗ୍ୟେ ଏହୁ ତପନେ । ୧ ।

\+ + + +

ମହାତ୍ମା ଶ୍ରୀ ଚୈତନ୍ୟ ନରି ଶରୀରୀ ପ୍ରେମ
କୃପାକରି ଯାର ଭାଗ୍ୟେ ଜନମିଲେ
ସେ ଜାତି ଜନମ ସ୍ଥାନ ଭାରତେ ପବିତ୍ର ଧାମ
ଯହିଁ ଜଗନ୍ନାଥ ବିଜେ, ଜଗତ ତାତ
ତା ସନ୍ତାନ କିପାଁ ଆଜି ଅଧୋବଦନେ । ୪ ।"

\+ + + +

(ବା. ପ./ପୃ ୧୦୩-୧୦୪)

ଗୋପବନ୍ଧୁ ବାଞ୍ଛାନିଧିଙ୍କ ସରଳ ହୃଦୟର ପରିଚୟ ପାଇ ତାଙ୍କୁ 'ଦକ୍ଷିଣହସ୍ତ' ରୂପେ ପରବର୍ତ୍ତୀ କାଳରେ ବ୍ୟବହାର କଲେ । ପରେ ଏହା ବର୍ଣ୍ଣନା କରାଯାଉଛି । ସ୍ଥୂଳତଃ, ଏତିକି କହିଲେ ଯଥେଷ୍ଟ ହେବ ଯେ, ରେଭେନ୍‌ସା କଲେଜରେ ଅଧ୍ୟୟନ କଲାବେଳେ ବାଞ୍ଛାନିଧିଙ୍କର ଜୀବନ ପ୍ରତି ଦୃଷ୍ଟିକୋଣ ଏକ ମହତ ଓ ପବିତ୍ରରୂପ ନେଇ ଆସିଲା । ଏ ସମସ୍ତ ସମ୍ଭବ ହେଲା ଉତ୍କଳମଣି ଗୋପବନ୍ଧୁ, କାନ୍ତକବି ଲକ୍ଷ୍ମୀକାନ୍ତ, କବିମଞ୍ଜୁଳ କୃଷ୍ଣପ୍ରସାଦ ବସୁ ପ୍ରଭୃତିଙ୍କ ସହିତ ତାଙ୍କ ସଂସ୍ପର୍ଶ ହେତୁ ।

×o×

# ॥ ତିନି ॥

## ପାରିବାରିକ ଜୀବନ :

ବିଦ୍ରୋହୀ କବି ବାଞ୍ଛାନିଧି ୧୯୧୭ ମସିହା ଜୁଲାଇ ମାସ ଶେଷ ଭାଗରେ ସୋର ନିକଟବର୍ତ୍ତୀ ଅନନ୍ତପୁର ଗ୍ରାମସ୍ଥ ଜମିଦାର ଶ୍ରୀ ରାଧାକାନ୍ତ ଦାସ ପଟ୍ଟନାୟକଙ୍କ ଜ୍ୟେଷ୍ଠା କନ୍ୟା ହେମଲତା ଦେବୀଙ୍କୁ ବିବାହ କରିଥିଲେ । ସେ କିନ୍ତୁ ବିବାହ କରିବାର ସପକ୍ଷରେ ନଥିଲେ । କାରଣ ସେ ସ୍ୱାଧୀନ ଭାବରେ କାର୍ଯ୍ୟରୁ ତାଙ୍କୁ କାଳେ ବ୍ୟାହତ ହେବାକୁ ପଡ଼ିପାରେ । ତେଣୁ ସେ ମନସ୍ଥ କରିଥିଲେ ଚିରକୁମାର ରହିବାକୁ । ପିତା ଚିନ୍ତାମଣିଙ୍କୁ ଏକଥା ମଧ୍ୟ ଜଣାଇ ଦେଇଥିଲେ । କିନ୍ତୁ, ସେ ଜ୍ୟେଷ୍ଠପୁତ୍ର ହେତୁ ଚିନ୍ତାମଣି ତାଙ୍କୁ ବାରମ୍ବାର ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ବିବାହ କରିବାକୁ ପ୍ରବର୍ତ୍ତାଇଥିଲେ । କାରଣ ତାଙ୍କ ଇଚ୍ଛାଥିଲା—ପାରିବାରିକ ବନ୍ଧନରେ ବାନ୍ଧି ପକାଇଲେ ସେ ଆଉ ବିଭିନ୍ନ ସଭାସମିତିରେ ମାତିବେ ନାହିଁ, ଏବଂ ପରିବାରର ଭରଣପୋଷଣ ଦିଗରେ ମନ ବଳାଇବେ ଯାହାକି, ଶେଷ ଜୀବନ ପର୍ଯ୍ୟନ୍ତ ଅପୂର୍ଣ୍ଣ ରହିଥିଲା । ବାଞ୍ଛାନିଧିଙ୍କର ଅନେକ ବନ୍ଧୁଙ୍କ ବହୁ ପରାମର୍ଶ କ୍ରମେ ସେ ବିବାହ କରିବାକୁ ସ୍ୱୀକୃତି ପ୍ରଦାନ କରିବାକୁ ବାଧ୍ୟ ହେଲେ ।

ଜମିଦାର ଶ୍ରୀ ରାଧାକାନ୍ତ ଦାସ ପଟ୍ଟନାୟକ ବାଞ୍ଛାନିଧିଙ୍କର ସୁନାମ ଶୁଣି ତାଙ୍କୁ ଜ୍ୱାଇଁ କରିବାକୁ ମନ ବଳାଇଥିଲେ । ପିତା ଚିନ୍ତାମଣିଙ୍କର ଏଥିରେ ଅସମ୍ମତ ହେବାର କିଛି ନଥିଲା । କେବଳ ବାଞ୍ଛାନିଧିଙ୍କ ସିଦ୍ଧାନ୍ତ ଉପରେ ସବୁ ନିର୍ଭର କରୁଥିଲା । ବହୁ ଚାପ ପରେ ସେ ଶେଷକୁ ବିବାହ କରିବାକୁ ସମ୍ମତ ହୋଇଥିଲେ ।

କବି ବାଞ୍ଛାନିଧି ଯୌତୁକ ବିରୁଦ୍ଧରେ ଥିଲେ । କାରଣ, ସେତେବେଳେ

ସତ୍ୟବାଦୀ ଗୋଷ୍ଠୀଙ୍କ ପ୍ରଭାବ ତାଙ୍କ ଉପରେ ପ୍ରଭାବ ବିସ୍ତାର କରି ସାରିଥିଲା । ସେ ଇତିମଧ୍ୟ 'ରାଧାମୋହନ ଥିଏଟର ପାର୍ଟି'କୁ ଏକ ଅଭିନବ ରୂପ ଦେବା ଏବଂ ସର୍ବୋପରି ଏହି ରଙ୍ଗମଞ୍ଚ ମାଧ୍ୟମରେ ଦେଶର ଅଗଣିତ ଜନତା ମଧ୍ୟରେ ସ୍ୱାଧୀନତା ବହ୍ନିର ଉତ୍ତାପ ସଞ୍ଚାର କରିବାର ଯେଉଁ ପବିତ୍ର କାର୍ଯ୍ୟ, ସେଥିରେ ସେ ହାତଦେଲେ ଏବଂ ସଫଳତା ଲାଭକଲେ ମଧ୍ୟ । ସେହି ଥିଏଟର ପାର୍ଟିର ବିକାଶ ପାଇଁ ଯଥା ସ୍କ୍ରୀନ୍, ସିନ୍, ବେଶ ପୋଷାକ ଆଦି ପାଇଁ ଦୁଇହଜାର ଟଙ୍କା ଦାବୀ କରି ସେ ବାପାଙ୍କ ପାଖକୁ ଚିଠି ଲେଖିଲେ । ଏଥିରେ ଜମିଦାର ଶ୍ରୀଯୁକ୍ତ ଦାସ ପଟ୍ଟନାୟକ ଅବିଳମ୍ବେ ସମ୍ମତି ପ୍ରକାଶ କଲେ ଓ ବିବାହ ଉତ୍ସବର ଆୟୋଜନ ଚାଲିଲା । ତାଙ୍କର ଚତୁର୍ଥୀ ଦିବସରେ ନାଟକାଭିନୟ ମଧ୍ୟ ହୋଇଥିଲା । ଏଥିପାଇଁ ଏକ ସ୍ଥାୟୀ ରଙ୍ଗମଞ୍ଚ ତାଙ୍କ ଘରଠାରୁ କିଛି ଦୂରରେ 'ଗଣିଆଁ ଡିହ' ବା 'ଗଡିବାଡ଼ି'ରେ ଆରମ୍ଭ ହେଲା । ଏଥିରେ, ଏକ ସମୟରେ ପ୍ରାୟ ପାଞ୍ଚଶହ ଲୋକ ବସିବାର ସୁବିଧା ଥିଲା । ଉପରେ କୁଟା ଛୁଆଣି ଛପର କରାଯାଇଥିଲା ।

ଅର୍ଥାଭାବରୁ ପରିବାରିକ ଅଶାନ୍ତି କ୍ରମଶଃ ବଢିଲା । ପିତା ତାଙ୍କୁ ବାରମ୍ବାର ଚାକିରି କରିବାକୁ ପ୍ରବର୍ତ୍ତାଇ ଘରର ଦାୟିତ୍ୱ ନେବାକୁ କହୁଥାନ୍ତି । କିନ୍ତୁ, ସେ ଅନ୍ୟ ଅଧୀନରେ ଚାକିରି କରିବେ ନାହିଁ ବୋଲି ସ୍ପଷ୍ଟ ଭାବରେ ଘୋଷଣା କରିଦେଲେ । ତେଣୁ ବହୁ ସମୟରେ ଆଦର୍ଶଗତ ତାରତମ୍ୟହେତୁ ମତାନ୍ତର ସୃଷ୍ଟି ହେବାର କଥା ଶୁଣାଯାଏ । ଚିନ୍ତାମଣି ମନକଷ୍ଟ କରି କହନ୍ତି —"ପୁଅଟାକୁ ସବୁ ରୋଜଗାର ଖରଚ କରି ଓକିଲ ହେଲେ ମୁଁ ନିଶ୍ଚିନ୍ତରେ ନିଶ୍ୱାସ ଛାଡ଼ିବି । କୋଉଁ ଏ ଦୁର୍ଗତି ମାଡ଼ି ଆସିଲା । ମହାତ୍ମାଗାନ୍ଧୀ ଆଗ ମୋର ପୁଅ ମୁଣ୍ଡରେ ଶିରପା ବାନ୍ଧିଲେ । ମାନଗଲା, ଇଜ୍ଜତ ଗଲା । ଶେଷରେ ଜାଅଲ ଖଟିଲା । ସବୁ ସୁଖ ମୋର ଧୋଇରେ ଗଲା । ଆଉ ତିନିଟି ପୁଅ ଅଛନ୍ତି । ସେ ଗୁଡ଼ାକୁ ଆଉ କିଏ ପଚାରୁଛି ? ଯାହା-ପାଇଁ ନିଜସୁଖ ଛାଡ଼ି ଘରଦ୍ୱାର ତ୍ୟାଗକରି ଏଠି କଚେରୀରେ ଖଟିଖଟି ମାଟିହେଲି, ସେ ତ ଭେଣ୍ଡି ପାଲଟିଗଲା । ଆଉ ମୋର ଗତି କଅଣ ? ଏପରି କୁଳାଙ୍ଗାର ପୁଅ ମୁଁ କଅଣ ଆଶା କରିଥିଲି ? ହଉ, ବିଧାତାଙ୍କ ଇଚ୍ଛା ।"(୭) କବିବନ୍ଧୁ ଗୌରାଙ୍ଗ ଚନ୍ଦ୍ର ଦାସ ଓକିଲାତ ପଢି ପରିବାରର ଭରଣପୋଷଣ କରି ପିତାଙ୍କ ଇଚ୍ଛାକୁ ପୂର୍ଣ୍ଣ-କରିବାକୁ କହିବାରୁ ବାଞ୍ଛାନିଧି ତାହାର ଉତ୍ତରରେ କହିଥିଲେ — "ଗୌରାଙ୍ଗ ! ମୁଁ ତୁମ୍ଭମାନଙ୍କ ମନର ଭାବ ବୁଝୁଛି । ମାତ୍ର, ମୋ ଜିଲ୍ଲାର, ମୋ ଦେଶର କୋଟି-କୋଟି ବାପ ମା ଗଣ୍ଡିଏ ସୁଖରେ ଖାଇବାକୁ ଖଣ୍ଡେ ଭଲଲୁଗା ପିନ୍ଧିବାକୁ ପାଉ ନଥିବା ବେଳେ ମୁଁ କିପରି ମୋ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ କେବଳ ମୋର ବାପ ମା'ଙ୍କୁ

(୭) ସ୍ୱର୍ଗତ ବାଞ୍ଛାନିଧି ବାବୁ ଓ ମୁଁ — ଶ୍ରୀ ଗୌରାଙ୍ଗ ଚନ୍ଦ୍ର ଦାସ—ପୃ. ୧୭

ସୂର୍ଚ୍ଚା କରିବାକୁ ରେଜଟାର କରିବ ? ଏପରି ସ୍ୱାର୍ଥପର ଲୋକ ଦୁନିଆଁରେ ବହୁତ ଅଛନ୍ତି । ଆଜି ଯଦି ଶିକ୍ଷିତ ଲୋକମାନେ ଟିକିଏ ଏ କଥା ଭାବନ୍ତି, ତେବେ ମହାତ୍ମାଙ୍କ ବଚନ ଏକାବେଳକେ ସାର୍ଥକ ହୋଇ ରାମରାଜ୍ୟ ପ୍ରତିଷ୍ଠିତ ହୁଅନ୍ତା । ମାତ୍ର, ତାହା ହେଉଛି କାହିଁ ? ସ୍ୱାର୍ଥଶୁଣ୍ଡ ନିଃସ୍ୱାର୍ଥ ସେବା କେତେଜଣ କରି ପାରୁଛନ୍ତି ?'' (୮) । ବାଞ୍ଛାନିଧିଙ୍କର ଉପାର୍ଜନର କୌଣସି ପନ୍ଥା ନ ଥିଲେ ମଧ୍ୟ ତାଙ୍କର କେତେ-ବେଳେ ପଇସାର ଅଭାବ ନଥିଲା । କାରଣ ସେ ଜାଣିଥିଲେ, ବିପ୍ଳବର ପଥ ସର୍ବଦା ବିପଦସଙ୍କୁଳ । ତେଣୁ ଜଣେ ବିପ୍ଳବୀ ପକ୍ଷରେ ଏ ସମସ୍ତକଥା ଖୁବ୍ କ୍ଷୁଦ୍ର ଓ ନଗଣ୍ୟ । ସେଥିପାଇଁ, ସେ ପରିବାରର ଭରଣ ପୋଷଣ ଓ ପରିଚାଳନା କ୍ଷେତ୍ରରେ ଉଦାସୀନ ରହୁଥିଲେ । ତାଙ୍କର କନିଷ୍ଠଭ୍ରାତା ପ୍ରେମାନନ୍ଦଙ୍କ ଉପରେ ଚିନ୍ତାମଣି ପରିବାରର ସମସ୍ତ ଦାୟିତ୍ୱଦେଲେ । ସେହି ଦିନଠାରୁ ମୃତ୍ୟୁପର୍ଯ୍ୟନ୍ତ ଭଦ୍ରକ କଚେରୀରେ ସେ ମୋହରିର କାର୍ଯ୍ୟ କରୁଥିଲେ ।

ବାଞ୍ଛାନିଧିଙ୍କର ଗୋଟିଏ କନ୍ୟା ଓ ଗୋଟିଏ ପୁତ୍ର ସନ୍ତାନ ଅଛନ୍ତି ।

ଶିକ୍ଷକତା

କଲେଜ ଶିକ୍ଷାପରେ କବି ବାଞ୍ଛାନିଧି କିଛିକାଳ ( ପ୍ରାୟ ଛଅମାସ ) ପାଇଁ ଭଦ୍ରକ ହାଇସ୍କୁଲ୍‌ରେ ଶିକ୍ଷକତା କରିଥିଲେ । ସେହି ସମୟରେ ଏନେର ଡାକ୍ତର ହରେକୃଷ୍ଣ ମହତାବ ତାଙ୍କର ଛାତ୍ରଥିଲେ । ବହୁ ଦରିଦ୍ର ଛାତ୍ରଙ୍କୁ ସେ ଆର୍ଥିକ ସାହାଯ୍ୟ ଦେଉଥିଲେ । ସେହି ସମୟରେ ସଇଝାସ୍ତୀବନ୍ଧୁ ବାସୁଦେବ ମି: ଇ: ସ୍କୁଲର ହେଡ୍‌ମାଷ୍ଟର ଶ୍ରୀ ବରଦା ପ୍ରସାଦ ଦାସଙ୍କ ଅନୁରୋଧ କ୍ରମେ ବାଞ୍ଛାନିଧି ଏକ ପୁରସ୍କାର ବିତରଣୀ ଉତ୍ସବର ପାରମ୍ଭିକ ସଂଗୀତ ଶିକ୍ଷା ଦେବାପାଇଁ ବାସୁଦେବ ଯାଇଥିଲେ । ସେତେବେଳେ ଗୌରାଙ୍ଗ ଚନ୍ଦ୍ର ଦାସ ଛାତ୍ରଥିଲେ । ତାଙ୍କ ସହିତ ଏଠାରେ ପ୍ରଥମେ ପରିଚୟ ହେଲା । ସେ ଗୌରାଙ୍ଗ ଓ ଶ୍ୟାମନନ୍ଦ ଦାସଙ୍କୁ ସଙ୍ଗୀତ ଶିକ୍ଷା ଦେଲେ । ସେହି ଗୀତର ପ୍ରଥମ ପଦଥିଲା —

''ସାଦର ସୁମନହାର ଗୁନ୍ଥି ଦିଅଗୋ,
ବଳବା ଯାବତ ଗୁରୁଜନଙ୍କ ଏଠାଇଁ —''

ପୁନଶ୍ଚ, ଭଦ୍ରକସ୍ଥ ଚରମ୍ପା ସର୍ଭେ ଟ୍ରେନିଂ ସ୍କୁଲରେ ( ବରଜା ଅମିନସ୍କୁଲ୍ ) ମଧ୍ୟ କିଛିକାଳ ସେ ଶିକ୍ଷକତା କରିଥିଲେ । ସେଠାରେ ତାଙ୍କବନ୍ଧୁ ଚକ୍ରଧର ପଟ୍ଟନାୟକ ( ବରିନବାସୀ ) ମଧ୍ୟ ଥିଲେ । ଏହାପରେ ପରେ ତାଙ୍କର ବୈପ୍ଳବିକ ଜୀବନ ଆରମ୍ଭ ହୋଇଗଲା ।

---

(୮) ସ୍ୱର୍ଗତ ବାଞ୍ଛାନିଧି ବାବୁ ଓ ମୁଁ—ଶ୍ରୀ ଗୌରାଙ୍ଗ ଚନ୍ଦ୍ର ଦାସ ପୃ: ୨୫-୨୬

XOX

## ॥ ଏକ ॥

୧୮୯୯ ମସିହାରେ ଲର୍ଡ କର୍ଜନ ଭାରତର ଭାଇସ୍‌ରୟ୍ ଓଡ଼ିଶାର ଗଭର୍ଣ୍ଣର ଜେନେରାଲ ହେଲେ ଏବଂ ୧୯୦୦ ମସିହାରେ ସେ ଓଡ଼ିଶା ପରିଦର୍ଶନରେ ଆସିଲେ । ଏହା ପୂର୍ବରୁ କୌଣସି ଭାଇସ୍‌ରୟ୍ ଓଡ଼ିଶାକୁ ଆସି ନଥିଲେ । ସେତେବେଳେ ବଂଗଳା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌କୁ କୁଳବୃଦ୍ଧ ମଧୁସୂଦନ ଦ୍ୱିତୀୟଥରପାଇଁ ନିର୍ବାଚିତ ହୋଇଥିଲେ । ତେଣୁ, ଲୋକପ୍ରତିନିଧି ଭାବରେ ସେ ଓଡ଼ିଶାର ବିଭିନ୍ନ ସମସ୍ୟା, ଯଥା — ସମ୍ବଲପୁରରେ ଓଡ଼ିଆ ଭାଷାର ଉଚ୍ଛେଦ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ସୂଚନା ଦେଇଥିଲେ । ପରେ ତାଙ୍କ ଅଫିସ୍‌କୁ ଟେଲିଗ୍ରାମ୍ ଓ ରିମାଇଣ୍ଡରମାନ ପଠାଇଥିଲେ ଏବଂ ସିମଲାଯାଇ ଲର୍ଡକର୍ଜନଙ୍କୁ ସାକ୍ଷାତ କରିଥିଲେ । ସେ ହସ୍ତକ୍ଷେପ କରିବାରୁ ସମ୍ବଲପୁରର କୋର୍ଟ କଚେରୀରେ ଓଡ଼ିଆ ଭାଷା ପୁଣି ପ୍ରଚଳିତ ହେଲା । ଏହା ଓଡ଼ିଶାବାସୀଙ୍କ ମନରେ ଗଭୀର ଆଶାର ସଞ୍ଚାର କଲା ।

ଏହା ପରେ ପରେ ଭାରତର ବିଭିନ୍ନ ପ୍ରଦେଶର ସୀମା ନିର୍ଦ୍ଧାରଣ ସମ୍ପର୍କରେ ଏକ ସରକାରୀ ନୀତି ସ୍ଥିର କରାଗଲା । ଏହି ସୀମା ନିର୍ଦ୍ଧାରଣରେ 'ଭାଷା'କୁ ଭିତ୍ତିକରି ସ୍ଥିରହେଲା । ତେଣୁ ଭାରତ ସରକାରଙ୍କ ସେକ୍ରେଟେରୀ ଏଚ୍‌: ଏଚ୍‌: ରିସ୍‌ଲେ ଏକ ରିପୋର୍ଟରେ ଓଡ଼ିଶା ସହିତ ଗଞ୍ଜାମ, ସମ୍ବଲପୁର ଓ ଭିଜାଗାପଟ୍ଟମ୍ ଏଜେନ୍‌ସୀ ଅଞ୍ଚଳ ମିଶିଲା ବୋଲି ଘୋଷଣା କଲେ । ତଥାପି ଓଡ଼ିଆ ଭାଷା ଭାଷୀ ଲୋକ ବଙ୍ଗଳା, ବିହାର ଓ ଆନ୍ଧ୍ରରେ ରହିଗଲେ ।

ଓଡ଼ିଶାର ଲୋକଙ୍କୁ ଏକଜୁଟ କରିବାପାଇଁ ଏକ ଶକ୍ତିଶାଳୀ ଅନୁଷ୍ଠାନର ଆବଶ୍ୟକତା ପଡ଼ିଲା । ପରିଣାମରେ ରମ୍ଭାଠାରେ ମଧୁସୂଦନଙ୍କ ପୌରୋହିତ୍ୟରେ ଏକ ସଭା ଅନୁଷ୍ଠିତ ହୋଇ 'Utkal Union Conference' ବା 'ଉତ୍କଳ ସମ୍ମିଳନୀ' ଜନ୍ମ ହେଲା, ଏବଂ ୧୯୦୩ ମସିହା ଡିସେମ୍ବର ମାସ ୩୦ ତାରିଖ

ଓ ୧୯୦୪ ମସିହା ଜାନୁଆରୀ ୧ ଓ ୨ ତାରିଖ ଦୁଇଦିନ ବ୍ୟାପି କଟକଠାରେ 'ଉତ୍କଳ ସମ୍ମିଳନୀ' ର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ଗୋପବନ୍ଧୁ ଏବଂ ତାଙ୍କ ସହପାଠୀମାନେ ମଧ୍ୟ ଯୋଗ ଦେଇଥିଲେ । ଗୋପବନ୍ଧୁ ସେତେବେଳେ ବି: ଏ: ଶ୍ରେଣୀରେ ଛାତ୍ର । ତାଙ୍କ ସହିତ ବ୍ରଜସୁନ୍ଦର ଦାସ ମଧ୍ୟ ଏହି ସଭାରେ ଉପସ୍ଥିତ ଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସହିତ, କୃଷି କୁଟୀର ଶିଳ୍ପ, ଶିକ୍ଷା, ଅସ୍ପୃଶ୍ୟତା ଓ ସଂସ୍କୃତି ପ୍ରଭୃତିର ବିକାଶ କରିବା ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ରହିଲା । ଏହାର ୩୧୮ ଟି ଶାଖା ଓଡ଼ିଶା ବାହାରେ ଓ ଭିତରେ ଉନ୍ମୋଚନ କରାଗଲା ।

୧୯୦୫ ମସିହାରେ ବଙ୍ଗଳା ଦୁଇଭାଗରେ ବିଭକ୍ତ ହେଲାପରେ ସମ୍ବଲପୁର, ସୋନପୁର, ବାମଣ୍ଡା, ପାଟଣା, କଳାହାଣ୍ଡି ଓ ଗୁଇରାଖୋଲ ଆଦି କରଦ ରାଜ୍ୟସବୁ ଓଡ଼ିଶା ଡିଭିଜନ୍ ସହିତ ମିଶିଗଲା । କିନ୍ତୁ ୧୯୦୫ ମସିହା ଜୁଲାଇ ୧୯ ତାରିଖରେ ୨୪୯୧ ନମ୍ବର ରିଜୋଲ୍ୟୁସନ ଦ୍ୱାରା ଲର୍ଡ଼ ଆମ୍ପଥିଲ୍ ପୂର୍ବରୁ ସ୍ଥିର ହୋଇଥିବା ଗଞ୍ଜାମ ଓ ଭିଜାଗାପଟମ୍ ଏଜେନ୍ସିକୁ ଓଡ଼ିଶା ସହିତ ମିଶି ପାରିବନାହିଁ ବୋଲି ଘୋଷଣା କଲେ । ଏହା 'ଉତ୍କଳ ସମ୍ମିଳନୀ' ରେ ନିନ୍ଦା କରାଗଲା । ତେଣୁ ମଧୁସୂଦନ ଇଂଲଣ୍ଡକୁ ଯାଇ ବ୍ରିଟିଶ୍ ସରକାର ଓ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଫର୍ ଇଣ୍ଡିଆ ମିଷ୍ଟର୍ ମିର୍ଲେଙ୍କୁ ସାକ୍ଷାତକରି ଏ ସମ୍ପର୍କରେ ଆନ୍ଦୋଳନ କରିବାକୁ ଯାହାକଲେ । ଲଣ୍ଡନ୍‌ର 'ଟ୍ରିବୁନ' ପତ୍ରିକାରେ ୧୯୦୭ ମସିହା ସେପ୍ଟେମ୍ବର୍ ୨୭ ତାରିଖରେ ଏ ସମ୍ପର୍କରେ ଯେଉଁ ସମ୍ବାଦ ପ୍ରକାଶ ପାଇଥିଲା, ସେଥିରେ ଉଲ୍ଲେଖ ଥିଲା ଯେ ମି: ମିର୍ଲେଙ୍କର ସଦୟ ଦୃଷ୍ଟି ଆକର୍ଷଣ କରିଛନ୍ତି । ଲଣ୍ଡନର 'ଷ୍ଟ୍ରାଣ୍ଡ୍ ନିଉଜ୍' ପତ୍ରିକାରେ ୧୯୦୭ ମସିହା ଅକ୍ଟୋବର ୧୧ ତାରିଖ ସମ୍ବାଦରେ ମଧୁସୂଦନ ମି. ମିର୍ଲେଙ୍କୁ ସାକ୍ଷାତ କରିବାର ସଫଳତା ଲାଭ କରିବେ ବୋଲି ଆଶା କରିଥିଲେ । ତା'ପରେ ୧୯୧୨ ମସିହା ଏପ୍ରିଲ ୧ ତାରିଖରେ ଓଡ଼ିଶା ବଙ୍ଗଳା ପ୍ରଦେଶରୁ ବାହାରି ଆସି ବିହାର ସହିତ ମିଶିଲା ।

ଲର୍ଡ଼ କର୍ଜନଙ୍କ ପରେ ଲର୍ଡ଼ ହାର୍ଡିଞ୍ଜ ଭାରତର ଭାଇସ୍‌ରାୟ ହେଲେ । ସେ ଦୁହିଁଙ୍କ ମଧ୍ୟରେ ବିଦ୍ୱେଷଭାବ ଥିବାରୁ କର୍ଜନଙ୍କର ଅଧିକାଂଶ ସିଦ୍ଧାନ୍ତକୁ ସେ ଭୁଲଭାବରେ ଗ୍ରହଣ କରି ତାକୁ ସଂଶୋଧନ କରିବାକୁ କହିଲେ । ତେଣୁ ଲର୍ଡ଼ କର୍ଜନ ଯେତେବେଳେ ଓଡ଼ିଆ ଭାଷା ଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବାକୁ ମତ ଦେଇଥିଲେ, ସେତେବେଳେ ଲର୍ଡ଼ ହାର୍ଡିଞ୍ଜ୍ ଏହାର ବିରୋଧ କରି ୧୯୧୧ ମସିହା ଅଗଷ୍ଟ ୨୫ ତାରିଖରେ ଲଣ୍ଡନରେ ଥିବା ଭାରତ-ବିଭାଗର ସେକ୍ରେଟେରୀଙ୍କ ପାଖକୁ ରିପୋର୍ଟରେ ଛୋଟନାଗପୁରକୁ ମିଶାଇ ବିହାର-ଓଡ଼ିଶା ପ୍ରଦେଶ ଗଠନ କରିବାକୁ ପ୍ରସ୍ତାବ

ଦେଇଥିଲେ । ୧୯୧୨ ମସିହା ଫେବୃଅରୀ ୨୨ ତାରିଖରେ ଲଣ୍ଡନ୍‌ର 'ଲର୍ଡସ' ସଭାରେ ଲର୍ଡ କର୍ଜନ କିନ୍ତୁ ଏହା ବିରୁଦ୍ଧରେ ନିଜମତ ଦେଇ 'ହାଉସ୍ ଅଫ୍ ଲର୍ଡସ' ଦୃଷ୍ଟି ଆକର୍ଷଣ କରି କହିଥିଲେ —"X X ମୁଁ ଜାଣେ ଯେ ଏ ଦୁଇ ପ୍ରଦେଶରେ (ଓଡ଼ିଶା ଓ ବିହାର) ଯେଉଁ ଜାତିର ଲୋକେ ରହନ୍ତି, ସେମାନଙ୍କ ମଧ୍ୟରେ କାହାରି ସହିତ କାହାରି ମେଳନାହିଁ । ପୁଣି ସେମାନଙ୍କ ଭାଷାମଧ୍ୟ ପରସ୍ପରଠାରୁ ପୃଥକ । ପ୍ରକୃତି ମଧ୍ୟ ବିହାର ଓ ଓଡ଼ିଶା ମଧ୍ୟରେ ବନ୍ଧୁର ପର୍ବତ ଓ ନଦୀର ସୃଷ୍ଟି କରି ପ୍ରଦେଶ ଦୁଇଟିକୁ ପରସ୍ପରଠାରୁ ଅଲଗା କରି ଦେଇ ଅଛି । X X ତେଣୁ ସରକାର ଓଡ଼ିଶାକୁ ଜେଉଁ ବଗୃଗରେ ବିହାର ସହିତ ଯୋଡ଼ି ଦେଇ ଅଛନ୍ତି, ସେଇଟା ହେଉଛି ସବୁଠାରୁ ବିସ୍ମୟକର ବିଷୟ ।" [୧] ତଥାପି, ଓଡ଼ିଶା ବିହାର ସହିତ ମିଶି କରି ରହିଲା । ୧୯୧୩ ମସିହାରେ ବିହାର-ଓଡ଼ିଶା ନୂତନ ପ୍ରଦେଶରେ ମଧୁସୂଦନ ଲେଜିସ ଲେଟିଭ୍ କାଉନସିଲ୍‌ର ସଦସ୍ୟ ରୂପେ ମନୋନୀତ ହେଲେ ଓ ୧୯୧୩ ମସିହା ଜାନୁଆରୀ ୨୭ ତାରିଖରେ ସେ 'ଇମ୍ପେରିଆଲ୍ କାଉନସିଲ୍' ବା 'ଇଣ୍ଡିଆନ ଲେଜିସ୍ ଲେଟିଭ୍ କାଉନ୍‌ସିଲ'ର ସଦସ୍ୟ ଭାବରେ ନିର୍ବାଚିତ ହେଲେ । ଏପରି ପଦବୀରେ ଅଭିଷିକ୍ତ ହେବାରେ ସେ ଥିଲେ ପ୍ରଥମ ଓଡ଼ିଆ । ଏହି ସବୁ ଘଟଣା ମଧ୍ୟରେ ଓଡ଼ିଶାରେ ଜାତୀୟ ଚେତନା କ୍ରମେ ବିକଶିତ ରୂପ ନେବାକୁ ବସିଲା । 'ଓଡ଼ିଆ' କ୍ରମେ ଭାରତ ବର୍ଷରେ ଚହ୍ନିତ ହେବାକୁ ଲଗିଲା ।

XoX

## ॥ ଦୁଇ ॥

୧୯୧୪ ମସିହାରେ ପ୍ରଥମ ମହାଯୁଦ୍ଧ ସମୟରେ ଭାରତରୁ ସୈନ୍ୟ ଓ ଅର୍ଥ ବ୍ରିଟିଶ ସରକାର ସଂଗ୍ରହ କଲା । ଯୁଦ୍ଧ ହେତୁ ଇଂଲଣ୍ଡର ଜିନିଷ ସବୁ ଭାରତକୁ ଆସି ପାରିଲା ନାହିଁ । କାରଣ ଭୂମଧ୍ୟସାଗର ଓ ଆଟଲାଣ୍ଟିକ ମହାସାଗରରେ ଜର୍ମାନୀ ବୁଡ଼ାଜାହାଜ ସବୁ ଏ ଜାହାଜ ବୁଡ଼ାଇ ଦେଉଥିଲା । ତେଣୁ ଭାରତରେ ଶିଳ୍ପର ବିକାଶ ପାଇଁ ଇଂରେଜ ସରକାର ବ୍ୟବସ୍ଥା କଲେ । ଯୁଦ୍ଧହେତୁ ଜିନିଷପତ୍ରର ଦର-

(୧) Parliamentary Debets —House of Lords—Vol—VI No. 4, Feb-21-1912.

ଦାମ ବୃଦ୍ଧି ହେବା ସ୍ୱାଭାବିକ । ଯୁଦ୍ଧପରେ ବଜାର ପୁଣି ମାନ୍ଦା ପଡ଼ିଲା । କୃଷିଜାତ ଦ୍ରବ୍ୟର ଦାମ କମିଯିବାରୁ ଶ୍ରମିକମାନଙ୍କ ଅବସ୍ଥା ଖରାପ ଆଡ଼କୁ ଗଡ଼ିଲା । ଭାରତରୁ ସୈନ୍ୟ ଓ ଅର୍ଥ ଯାଇଥିବାରୁ ଭାରତୀୟ ମାନେ ଶାସନ କ୍ଷମତା କିଛି ଅଧିକ ପାଇବାକୁ ଆଶା କରିଥିଲେ । କିନ୍ତୁ, ସେ ଆଶା କେବଳ ଆଶାରେ ହିଁ ରହିଗଲା ।

ବଙ୍ଗଳା ଓ ମହାରାଷ୍ଟ୍ରରେ ଜାତୀୟ ଉଦ୍ଦୀପନା ସୃଷ୍ଟି ହେବାରୁ ଇଂରେଜ ସରକାର 'ରାଓଲଟ୍' ଆଇନ ନାମରେ ଏକ କଠୋର ଆଇନ୍ ପ୍ରଣୟନ କଲେ । ଏଥିରେ ପୋଲିସକୁ ଅଧିକ କ୍ଷମତା ଦିଆଗଲା । ପୋଲିସ ଅପରାଧୀ ବୋଲି ମନେ କଲେ ତାକୁ ସେ ଗିରଫ କରି ଅଟକାଇ ଦେଇ ପାରିବେ । ଭାରତୀୟମାନେ ଏହାର ନିନ୍ଦା କଲେ । ତେଣୁ, ଏହାକୁ 'କଳାଆଇନ୍' ବୋଲି ନାମ ଦେଲେ । ଚାରିଆଡ଼େ ଏହି ଆଇନ ବିରୁଦ୍ଧରେ ଗଣ ଆନ୍ଦୋଳନ ବ୍ୟାପିଗଲା ।

ଏହିପରି ଏକ ଦୁର୍ଦ୍ଦିନରେ ଭାରତର ରାଜନୈତିକ ଆକାଶରେ ମହାତ୍ମା-ଗାନ୍ଧୀଙ୍କର ସୂର୍ଯ୍ୟପରି ଉଦୟ ଘଟିଲା । ଦକ୍ଷିଣ ଆଫ୍ରିକାରେ ସତ୍ୟାଗ୍ରହର ନେତୃତ୍ୱ ନେଇ ଭାରତକୁ ଫେରି 'ନୀଳକର' ବିରୁଦ୍ଧରେ ଆନ୍ଦୋଳନ ଚଳାଇଥିଲେ । ମହାତ୍ମା-ଗାନ୍ଧୀ ଅହିଂସାର ଅସ୍ତ୍ର ଯେଉଁ ବ୍ୟବହାର ଦକ୍ଷିଣ ଆଫ୍ରିକା ଓ ଚମ୍ପାରନ୍‌ରେ କରିଥିଲେ ରାଓଲଟ୍ ଆଇନ ବିରୁଦ୍ଧରେ ସେହିପରି ଏହାକୁ ପ୍ରୟୋଗ କଲେ । ଏହି ଆଇନ୍ ବିରୁଦ୍ଧରେ ମହାତ୍ମାଗାନ୍ଧୀ ହରତାଳ କରିବାକୁ ରାଜଗୋପାଳାଚାରୀଙ୍କୁ ଡାକି ତାଙ୍କୁ କହିଲେ "ମତେ ରାତିରେ ସ୍ୱପ୍ନରେ ଏ ବିଚାର ସୁଝିଛି ଯେ, ଏ ଆଇନ୍ ପ୍ରତିବାଦରେ ଆମେ ଦେଶକୁ ଗୋଟିଏ ହରତାଳ ପାଳିବାକୁ ନିବେଦନ କରିବା । ସତ୍ୟାଗ୍ରହ ଆତ୍ମଶୁଦ୍ଧିର ଯୁଦ୍ଧ । ଏହା ଧର୍ମ ଯୁଦ୍ଧ । ଧର୍ମ କାର୍ଯ୍ୟ ଶୁଦ୍ଧିରୁ ଆରମ୍ଭ କରିବା ଠିକ୍ ହେବ ବୋଲି ଜଣାପଡ଼ୁଛି । ସେଦିନ ସମସ୍ତେ କାମଧନ୍ଦା ବନ୍ଦ କରିବେ ଏବଂ ଉପବାସ ଓ ପ୍ରାର୍ଥନା କରିବେ । X X ସବୁ ପ୍ରଦେଶ ଆମର ଏ ନିବେଦନ ଶୁଣିବେ କି ନାହିଁ, କହିବା କଠିନ । କିନ୍ତୁ ବମ୍ବେ, ମାନ୍ଦ୍ରାଜ, ବିହାର ଓ ସିନ୍ଧ୍ ଏ ଗୁଡ଼ିକଠାରେ ମୋର ନିଶ୍ଚୟ ପୂର୍ଣ୍ଣ ଆଶା ରହିଛି । ଏହି କେତେ ଜାଗାରେ ଯଦି ହରତାଳ ଠିକ୍ ରୂପେ ପାଳିତ ହୁଏ, ତେବେ ଆମର ସନ୍ତୁଷ୍ଟ ହେବା ଉଚିତ୍ ।"[୨] ଏହି ଧର୍ମଘଟ ପ୍ରଥମେ ୧୯୧୯ ମସିହା ମାର୍ଚ୍ଚ ମାସ ୩୦ ତାରିଖକୁ ରଖା ଯାଇଥିଲା । ମାତ୍ର ପରେ ଏପ୍ରିଲ ୬ ତାରିଖକୁ ଘୁଞ୍ଚିଗଲା । ଭାରତର ସର୍ବତ୍ର ଏହି ଧର୍ମଘଟ ପାଳନ କରାଗଲା ।

---

(୨) 'ଆତ୍ମକଥା' ଅଥବା ସତ୍ୟର ପ୍ରୟୋଗ—ମୋହନଦାସ କରମଚାନ୍ଦ ଗାନ୍ଧୀ—ଅନୁ-ବାଦକ – ଗୋପବନ୍ଧୁ ଚୌଧୁରୀ—ଉତ୍କଳ ଗାନ୍ଧୀ ସ୍ମାରକ ନିଧି କଟକ-୨-ଚତୁର୍ଥ ସଂସ୍କରଣ—୧୯୭୭—ପୃ. ୩୯୭ ।

୧୯୧୯ ମସିହା ଏପ୍ରିଲ ମାସ ୧୦ ତାରିଖରେ ପଞ୍ଜାବର ନେତା ଡକ୍‌ଟର କିଚ୍‌ଲୁ ଓ ଡକ୍‌ଟର ସତ୍ୟପାଲଙ୍କ ଗିରଫର ପ୍ରତିବାଦ କରି ଅମୃତସରରେ ଶୋଭା ଯାତ୍ରା ହେଲା। କିନ୍ତୁ ଇଂରେଜ ସୈନ୍ୟମାନେ ଗୁଳି ଚଳାଇ ବହୁ ଲୋକଙ୍କୁ ହତ୍ୟା କଲେ। ଉତ୍ତ୍ୟକ୍ତ ଜନତା ପ୍ରତିଶୋଧ ନେବା ପାଇଁ ପାଞ୍ଚ, ଛଅ ଜଣ ଇଂରେଜଙ୍କୁ ହତ୍ୟାକଲେ ଓ ଘର ପୋଡ଼ି ଦେଲେ। ତେର ତାରିଖରେ ଅମୃତସରର ଜାଲିଆନା-ଓାଲବାଗ୍ ଠାରେ ଏକ ଧର୍ମ ଉତ୍ସବରେ ହଜାର ହଜାର ଲୋକ ଏକତ୍ର ହୋଇଥିଲା ବେଳେ ଏକମାତ୍ର ପଥକୁ ଅବରୁଦ୍ଧ କରି ଜେନେରାଲ ଡାୟାର ଏକ ଉଚ୍ଚସ୍ଥାନରେ ଠିଆ ହୋଇ ଗୁଳି ଚଳାଇଲେ। ତେଣେ ସୈନ୍ୟମାନଙ୍କ ଗୁଳି ବର୍ଷଣରେ ଶହଶହ ନରନାରୀ ଜୀବନ ହରାଇଲେ। ଇଂରେଜ ସରକାର ଜେନେରାଲ ଡାୟାରଙ୍କୁ ସମର୍ଥନ କଲେ ଫଳରେ ବିପ୍ଳବର ଲେଲିହାନ ଶିଖା ଜଳି ଉଠିଲା। ସେତେବେଳେ ବିପ୍ଳବର ବାର୍ତ୍ତାବହ କବି ବାଞ୍ଛାନିଧି ଗାନ କରିଥିଲେ —

"ଆଜି ବହୁଛି ଧାରିରେ, ପଞ୍ଜାବର ଅତ୍ୟାଚାରେ,
ନାରକୀ ନର ହତ୍ୟାରେ
ଭାଇଙ୍କର ବଳିଦାନେ, ଡାୟାରର କ୍ରୁର କର୍ମେ ପାପୀ
ଡାୟାରର କ୍ରୁର କର୍ମେ
ସେହି ରାକ୍ଷସ କଂସରେ, କେତେ ପଞ୍ଜାବୀ ଭାଇଙ୍କି କରିଛି
ଧ୍ୱଂସରେ ତାର ସୀମା ନାହିଁ, ସୀମା ନାହିଁ।"

( ବାଞ୍ଛାନିଧି ପଦ୍ୟାବଳୀ, ପୃ. ୧୪ )

ପୁନଶ୍ଚ ଅନ୍ୟ ଏକ ଗୀତରେ ଲେଖିଛନ୍ତି —

"ଯେଉଁ ପଞ୍ଜାବର ଆର୍ଯ୍ୟ ତପୋଧନ
ଅହିଂସା ଧରମ କରନ୍ତି ପାଳନ
ସେହି ପଞ୍ଜାବର ଆର୍ଯ୍ୟ ତପୋଧନ
ଅହିଂସା ଧରମ କରନ୍ତି ପାଳନ
ସେହି ପଞ୍ଜାବର ପୁଣ୍ୟ ପଞ୍ଚନଦ ନର ରକ୍ତେ ପ୍ଳାବନଂ।"

[ବାଞ୍ଛାନିଧି ପଦ୍ୟାବଳୀ, ପୃଷ୍ଠା: ୪]

୧୯୨୧ ମସିହାରେ ମହାତ୍ମାଗାନ୍ଧୀଙ୍କର 'ଅସହଯୋଗ ଆନ୍ଦୋଳନ'ର ଆହ୍ୱାନରେ ସମଗ୍ର ଭାରତବର୍ଷ ଚେଇଁ ଉଠିଲା। ଭାରତର ବିଭିନ୍ନ ପ୍ରାନ୍ତରେ ମହାତ୍ମାଗାନ୍ଧୀଙ୍କର ସ୍ୱାଧୀନତା ବାର୍ତ୍ତା ପ୍ରତିଧ୍ୱନିତ ହେବାକୁ ଲାଗିଲା। ଉତ୍କଳ ଖଣ୍ଡରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନକୁ ଫଳବତୀ କରିବା ପାଇଁ ଶପଥ ନେଇ ନେତୃତ୍ୱ ନେଲେ ମହାମାନ୍ୟ

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ । ଏଥିପାଇଁ ସେ ସତ୍ୟବାଦୀଠାରେ 'ସତ୍ୟବାଦୀ ବନ ବିଦ୍ୟାଳୟ' ୧୯୦୯ ମସିହା ଅଗଷ୍ଟ ୧୨ ତାରିଖରେ ଉନ୍ମୋଚନ କରି ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ର, ଆଚାର୍ଯ୍ୟ ହରିହର ଦାସ ପ୍ରଭୃତିଙ୍କୁ ନେଇ ସ୍ୱାଧୀନତା ଆନ୍ଦୋଳନ ପାଇଁ ମୁକ୍ତ ସୈନିକ ପ୍ରସ୍ତୁତ କରୁଥିଲେ । ୧୯୧୭ ମସିହାରେ ସେ ଓଡ଼ିଶା-ବିହାର ବିଧାନ ସଭାରେ ସଦସ୍ୟ ରୂପେ ଯୋଗ ଦେଲେ । ୧୯୧୮ ମସିହାରେ କଟକର 'ଉତ୍କଳ ସମ୍ମିଳନୀ' ଅଧିବେଶନରେ ସଭାପତି ରୂପେ ନିର୍ବାଚିତ ହୋଇ ଓଡ଼ିଶାର ରାଜନୀତି କ୍ଷେତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କଲେ । ୧୯୧୯ ମସିହାରେ ପୁରୀ ଦୁର୍ଭିକ୍ଷ ପ୍ରଶ୍ନ ନେଇ ବିଧାନସଭାରେ ସେ ଆଲୋଡ଼ନ ସୃଷ୍ଟି କରିଥିଲେ । ୧୯୨୦ ମସିହା ଏପ୍ରିଲ ୭ ତାରିଖରେ ଗେଇଟ୍ ସାହେବଙ୍କ ସହିତ ଯେତେବେଳେ ଓଡ଼ିଶାର ପୀଡ଼ିତ ଜନତାଙ୍କୁ ଭେଟିଲେ, ତାହା ତାଙ୍କୁ ଓଡ଼ିଶାର ଅଭିଭାବକ ଭାବରେ ପରିଚିତ କରାଇଥିଲା । ପୁଣି ସେହି ବର୍ଷ ସେପ୍ଟେମ୍ବର ମାସରେ କଲିକତାରେ ଅନୁଷ୍ଠିତ ସ୍ୱତନ୍ତ୍ର ଭାରତୀୟ କଂଗ୍ରେସ, ଡିସେମ୍ବରରେ ନାଗପୁର କଂଗ୍ରେସ ଅଧିବେଶନ ଏବଂ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀ ପ୍ରଭୃତିରେ ଯୋଗଦେଇ ଗୋପବନ୍ଧୁ ସେତେବେଳେ ଓଡ଼ିଶା ଏବଂ ଭାରତୀୟ ମୁକ୍ତି ସଂଗ୍ରାମରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ । ୧୯୨୧ ମସିହାରେ ଓଡ଼ିଶା-ବିହାର ବିଧାନସଭା ସଦସ୍ୟ ପଦରୁ ଇସ୍ତଫା ଦେଇ ସେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ସେତେବେଳେ ଏ ଜାତିର କବି ଗୋପବନ୍ଧୁ ଓ ମଧୁସୂଦନଙ୍କ ନେତୃତ୍ୱକୁ ସ୍ୱୀକାର କରି ଓଡ଼ିଶାର ଜାତୀୟ ଆନ୍ଦୋଳନର ସ୍ରୋତ ବୁହାଇଦେବା ପାଇଁ ଲେଖିଥିଲେ —

"ଏ ଯୁଗ ଯୋଗୀ ଗୋପବନ୍ଧୁ
ଉତ୍କଳ ଦୀନଜନ ବନ୍ଧୁ,
ବିଦ୍ୱାନବୀର ମଧୁସୂଦନ ବଦାନ୍ୟ ସାହସେ ସ୍ୱାଧୀନ,
ଜାଗିଛି ପଞ୍ଜାବ, ଅଙ୍ଗ
ଜାଗିଛି ବଙ୍ଗ, ତୈଲଙ୍ଗ
ଜାଗିବ ନାହିଁକି ମୋ ଦେଶ ହୋଇଥିବ କି ଉଦାସୀନ !"
( ବାଞ୍ଛାନିଧି ପଦ୍ୟାବଳୀ ପୃ: ୭୭ )

ଗୋପବନ୍ଧୁଙ୍କ ନେତୃତ୍ୱକୁ ବଳିଷ୍ଠରୂପ ଦେବାପାଇଁ ଯେଉଁ କେତେଜଣ ଓଡ଼ିଶାର ସ୍ୱାଧୀନତା ପିପାସୁ କର୍ମବୀର, ସ୍ୱଦେଶବତ୍ସଳ ସ୍ୱାଧୀନତା ପ୍ରାପ୍ତିର ଆଗ୍ରହୀ ଶପଥ ନେଇ ନିଜର ସମସ୍ତ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସେହି ଅସହଯୋଗ ଆନ୍ଦୋଳନର ସ୍ରୋତରେ ଲମ୍ଫ ପ୍ରଦାନ କରିଥିଲେ, ସେଥିମଧ୍ୟରୁ ଜାତୀୟକବି ବାଞ୍ଛାନିଧି ମହାନ୍ତି ଅନ୍ୟତମ ।

XOX

## ॥ ତିନି ॥

୧୯୨୦ ମସିହା ସେପ୍‌ଟେମ୍ବର ମାସରୁ ଭାରତ ସ୍ତରରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଥିଲେ ମଧ୍ୟ କଟକରେ ୧୯୨୧ ମସିହା ଜାନୁଆରୀ ମାସ ପର୍ଯ୍ୟନ୍ତ କୌଣସି ସଭା ଅନୁଷ୍ଠିତ ହୋଇନଥିଲା । ଜାନୁଆରୀ ୧୧ ତାରିଖ ଅପରାହ୍ନରେ କଟକର ବକ୍‌ସି-ବଜାରସ୍ଥ ତିନିକୋଣିଆ ବଗିଚା ନିକଟରେ ଗୋପବନ୍ଧୁ ଦାସ ଏକ ସାଧାରଣ ସଭାରେ ଏକ ଘଣ୍ଟାରୁ ଅଧିକ ସମୟଧରି ଅସହଯୋଗ ନୀତି ସମ୍ପର୍କରେ ବୁଝାଇଥିଲେ । ତା' ପରେ ପରେ ଗ୍ରାମ, ଓଡ଼ିଶା ଓ ସାଧାରଣ ଜନତାଙ୍କ ମଧ୍ୟରେ ଅସହଯୋଗର ବାର୍ତ୍ତା ଖେଳିଗଲା ଏବଂ ପ୍ରବଳ ଉତ୍ତେଜନା ସୃଷ୍ଟି ହେଲା । ବହୁ ବ୍ୟକ୍ତି ସ୍ୱେଚ୍ଛାସେବକ ହେଲେ । ଓଡ଼ିଶା ସାରା ଏହି ଉତ୍ତେଜନା ଖେଳିଗଲା । ବାଞ୍ଛାନିଧି ଏହି ଅସହଯୋଗ ଆନ୍ଦୋଳନରେ ମାର୍ଚ୍ଚ ମାସରେ ଯୋଗଦେଲେ ।

୧୯୨୧ ମସିହା ମାର୍ଚ୍ଚ ମାସ ୩ତାରିଖଟି ତାଙ୍କ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ସେହି ଦିନଠାରୁ ବାଞ୍ଛାନିଧି ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣତଃ ସମର୍ପିତ ହେଲେ । ତାହାର ତିନିଦିନ ପରେ, ଅର୍ଥାତ୍ ମାର୍ଚ୍ଚ ଛଅ ତାରିଖରେ ଈରମସ୍ଥ ମେଳଣ ପଡ଼ିଆରେ ସେ ଏକ ସାଧାରଣ ସଭାର ଆୟୋଜନ କରିଥିଲେ । ଏଥିରେ ସ୍ଥାନୀୟ ବହୁ ବ୍ୟକ୍ତି ଉଦ୍‌ଯୋକ୍ତା ରୂପେ କାର୍ଯ୍ୟ କରିଥିଲେ । ସେମାନେ ହେଲେ — ବଇଞ୍ଚା ଗ୍ରାମର ସୁଦର୍ଶନ ପଣ୍ଡା, ବରି ଗ୍ରାମର ଚକ୍ରଧର ପଟ୍ଟନାୟକ ଓ ଘନଶ୍ୟାମ ସାହୁ, ଈରମର ସୁଧାକର ପାଢ଼ୀ, ପର୍ଶୁରାମ ମହାପାତ୍ର, ଲୋକନାଥ ପାଢ଼ୀ, ଲକ୍ଷ୍ମୀନାରାୟଣ ପାଢ଼ୀ, ଉପେନ୍ଦ୍ରନାଥ ମହାପାତ୍ର ଏବଂ ଜମିଦାର ମୁକୁନ୍ଦକାନ୍ତ ପାଢ଼ୀ ପ୍ରଭୃତି । ବହୁବ୍ୟକ୍ତି ଏହି ବିରାଟ ସାଧାରଣ ସଭାରେ ଦେଶର ଅଗଣିତ ଅଶିକ୍ଷିତ ଜନତା ମଧ୍ୟରେ ଇଂରେଜ ସରକାରଙ୍କ ଦାସତ୍ୱ ଓ ତାଙ୍କର ଅନ୍ୟାୟ ଅତ୍ୟାଚାର ସର୍ବୋପରି ପରାଧୀନତାର ଅମା ଅନ୍ଧକାର ମଧ୍ୟରେ ସ୍ୱାଧୀନତାର ଆଲୋକ-ବର୍ତ୍ତିକା ଜଳାଇଦେବା ଥିଲା ବାଞ୍ଛାନିଧିଙ୍କର ମୂଳଲକ୍ଷ୍ୟ ।

ଏହାପରେ ଉତ୍କଳମଣି ଗୋପବନ୍ଧୁ, ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ ପ୍ରମୁଖଙ୍କୁ ନେଇ ଈରମସ୍ଥିତ ସିଦ୍ଧହାଟ ଠାରେ

ବିରାଟ ସାଧାରଣ ସଭା ସେ ଅନୁଷ୍ଠିତ କରାଇ ଜନତା ମଧ୍ୟରେ ସ୍ୱାଧୀନତା ଚେତନା ପ୍ରବେଶ କରାଇ ଥିଲେ । ଗୋପବନ୍ଧୁ ଇରମରେ ରଜସଂକ୍ରାନ୍ତ ଦିନ ମେଳଣ ପଡ଼ିଆରେ ଏକ ସାଧାରଣ ସଭାରେ ବକ୍ତୃତା ପ୍ରଦାନ କରିଥିଲେ । ତତ୍କାଳୀନ ଜମିଦାର ଶ୍ରୀ ରାଧାକାନ୍ତ ପାଢ଼ୀ ଏଥିରେ ସଭାପତିତ୍ୱ କରିଥିଲେ । ଇରମ ଅଞ୍ଚଳରେ ଜନଜାଗରଣ ଦେଖି ସେହି ସଭା ମଣ୍ଡପରେ ଭାଷଣ ମଧ୍ୟରେ ଗୋପବନ୍ଧୁ ଗାଇ ଉଠିଥିଲେ —

"ଦେଶବାସୀ ପ୍ରୀତି ସରସ୍ୱତୀ ନଦୀ,
ବହୁଛି ଇରମେ ଶତ ମାର୍ଗ ଭେଦି ।
ଏ ଅନ୍ତଃ ସଲିଳା ଏ ସାରା ଭାରତେ,
ଜାତୀୟତା ଧାରେ ବହିବ କରତେ ।
ଦେଶାତ୍ମବୋଧର ଗୁରୁ ଗନ୍ତାଘର,
ଇରମ ସୁରମା ଜାତୀୟ ନଗର ।" (୩)

ପରେ ପରେ ବିଭିନ୍ନ ସ୍ଥାନରେ ଏହି ସଭାମାନ ଅନୁଷ୍ଠିତ କରିବାରେ ଲଗିଲେ ବାଞ୍ଛାନିଧି । ଭଦ୍ରକ ଓ ଅନନ୍ତପୁରରେ ଏହି ମର୍ମରେ ସଭାମାନ ଅନୁଷ୍ଠିତ ହେଲା । ଅନନ୍ତପୁର ଓ ସୋର ସଭାରେ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ ସଭାପତିତ୍ୱ କରିଥିଲେ । ସୋରରେ ରଜାଙ୍କ ହାଟରେ ସଭାହେଲା । କଂଗ୍ରେସ କର୍ମୀମାନେ ରାଜାଙ୍କ କଚେରି ଘରେ ଅବସ୍ଥାନ କରିଥିଲେ । ବାଞ୍ଛାନିଧି ସେତେବେଳେ ଗୀତ ବୋଲିଥିଲେ —

"ଆଉ କେତେ ଦିନେ ହୋଇବୁ ଉଦାସୀ ଭାଇରୁ !
ଦିନୁଁ ଦିନୁଁ ଦୁଃଖ ରାଶି,
ବଢ଼ିଲା ଦେଶରେ ଆସି
ସୁଖଶାନ୍ତି ଗଲା ସବୁ ଭାସି (୧)

\+ \+ \+

କର ବଢ଼ୁଛି ଯେପରି
ଦର ବଢ଼ୁଛି ସେପରି
(ଏ) ଶାସନ ହେଲାଣି ଗଳା ଫାଶି" (୨)

(ବା: ପ: । ପୃ: ୧୦୦-୧୦୧)

ଏହାର ତିନି ବର୍ଷପରେ ଭଦ୍ରକସ୍ଥ ଗାନ୍ଧି ପଡ଼ିଆରେ ବିରାଟ ଜନ ସାଧାରଣ ସଭା ଅନୁଷ୍ଠିତ ହେଲା । ପଣ୍ଡିତ ଗୋପବନ୍ଧୁ ଦାସ ଏଥିରେ ସଭାପତିତ୍ୱ କରିଥିଲେ ।

---

(୩) ସ୍ୱାଧୀନତାର ସଂଗ୍ରାମ ଭୂମି — ଇରମ — ଶ୍ରୀ ସୁଧାକର ଦାଶ — ୧୯୭୭ ଗୋପବନ୍ଧୁ ଜନ୍ମ ଶତବାର୍ଷିକୀ ଜୟନ୍ତୀ — ପୃ: ୫

## ॥ ୬୨ ॥

### ମହାତ୍ମାଗାନ୍ଧୀ ଓ ବାଂଛାନିଧି .

୧୯୨୦ ମସିହାରେ ଓଡ଼ିଶାରେ ଯେଉଁ ଦୁର୍ଭିକ୍ଷ ଦେଖା ଯାଇଥିଲା, ତାହା ଗାନ୍ଧିଜୀଙ୍କ ଦୃଷ୍ଟିକୁ ଆକର୍ଷଣ କରିଥିଲା । ସେ ଶ୍ରୀଅମୃତ ଲାଲ୍ ଠକ୍‌କରଙ୍କୁ ଏଥିପାଇଁ ଓଡ଼ିଶାକୁ ପ୍ରେରଣ କରିଥିଲେ । ସେ ଓଡ଼ିଶା ଓ ଓଡ଼ିଶାର ଦୁର୍ଭିକ୍ଷ ପ୍ରସଙ୍ଗରେ 'ନବଜୀବନ' ଓ '**Young India**' ପତ୍ରିକାର ବିଭିନ୍ନ ସଂଖ୍ୟାରେ ଲେଖାଲେଖି କରୁଥିଲେ । ୧୯୨୧ ମସିହା ମାର୍ଚ୍ଚ ମାସ ୨୨ ତାରିଖରେ ମହାତ୍ମାଗାନ୍ଧି ଓଡ଼ିଶା ଗସ୍ତରେ ଆସି ପୁରୀ ଏକ୍‌ସପ୍ରେସରେ କଟକରେ ପହଞ୍ଚିଲେ । ୨୧ ତାରିଖ ଦିନ ଅର୍ଦ୍ଧରାତ୍ରିରେ ଭଦ୍ରକ ଷ୍ଟେସନ ବାଟେ ଆସିବାରୁ ବହୁଲୋକ ତାଙ୍କୁ ଭଦ୍ରକ ଆସିବାକୁ ଅନୁରୋଧ କଲେ । ସେମାନଙ୍କୁ ସେ ଭଦ୍ରକ ଆସିବାକୁ କହି କଟକ ଅଭିମୁଖେ ଯାତ୍ରାକଲେ ଏବଂ ସେ କଟକରୁ ୨୪ ତାରିଖ ରାତି ପାସେଞ୍ଜର ଗାଡ଼ିରେ ଆସି ୨୫ ତାରିଖ ସକାଳେ ଭଦ୍ରକରେ ପହଞ୍ଚିଲେ । ବହୁନେତା, କଂଗ୍ରେସ କର୍ମୀଙ୍କ ସହିତ ବିଶାଳ ଜନତା ଗାନ୍ଧିଙ୍କୁ ସ୍ୱାଗତ ଜଣାଇଲେ । ତାଙ୍କ ସହିତ କସ୍ତୁରବା, ଦେବଦାସ ଗାନ୍ଧି, ପଣ୍ଡିତ ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ ପ୍ରଭୃତି ଆସିଥାନ୍ତି । ଭଦ୍ରକର କଂଗ୍ରେସ କର୍ମୀ ବିଶେଷତଃ ବାଞ୍ଛାନିଧି ମହାନ୍ତି, ହରେକୃଷ୍ଣ ମହତାବ ଆଦି ଗାନ୍ଧିଜୀଙ୍କ ଗସ୍ତ କାର୍ଯ୍ୟକ୍ରମର ଆୟୋଜନ କରିଥିଲେ । ଭଦ୍ରକ ଷ୍ଟେସନରୁ (ଚରମ୍ପା) ଭଦ୍ରକ ସହର ପ୍ରାୟ ତିନିମାଇଲ ପଥ । ଗାନ୍ଧିଜୀ ଚାଲିଚାଲି ଶୋଭାଯାତ୍ରାରେ ଏହି ପଥ ଅତିକ୍ରମ କରିଥିଲେ । ଭଦ୍ରକରେ ସକାଳେ ବ୍ୟବସାୟୀମାନଙ୍କ ସହିତ, ଅପରାହ୍ଣବେଳା ଓକିଲମାନଙ୍କ ସହିତ ଏବଂ ସନ୍ଧ୍ୟାବେଳେ ଏକ ବିରାଟ ସାଧାରଣ ସଭାରେ [ଏବର ଗାନ୍ଧି ପଡ଼ିଆ] ଗାନ୍ଧିଜୀ ଭାଷଣ ଦେଇଥିଲେ । ଏହି ସଭାରେ ଗୋପବନ୍ଧୁ ଦାସ ସ୍ୱାଗତ ଭାଷଣ ଦେଇ କହିଥିଲେ — "ପାଣ୍ଡବମାନେ ଯେଉଁ ସ୍ଥାନକୁ ନ ଯାଇଛନ୍ତି ତାକୁ

ଅପାଣ୍ଠୁଆ ରାଜ୍ୟ କୁହାଯାଏ । ସେହିପରି ଯଦି ମହାତ୍ମାଗାନ୍ଧୀ ଦୟାକରି ଏହି ଉତ୍କଳରେ ପଦାର୍ପଣ କରି ନ ଆନ୍ତେ, ତେବେ ଏହା ସେହିପରି ଅପାଣ୍ଠୁଆ ରାଜ୍ୟ ହୋଇ ରହି-ଆନ୍ତା । ବିଶେଷତଃ ଭଦ୍ରକ ପରି ପବିତ୍ର ସ୍ଥଳୀରେ ପଦାର୍ପଣ କରିଥିବାରୁ ଆମେ ଖୁବ୍ ଆନନ୍ଦିତ । ଅଗାଧ ଉତ୍କଳ ବଦନାମରୁ ଆମେ ବଞ୍ଚିତ ହେଲୁଁ । ଭଗୀରଥସମ ସ୍ୱର୍ଗରୁ ସେ ଗଙ୍ଗାଙ୍କୁ ନେଇ ଉତ୍କଳକୁ ଉଦ୍ଧାର ଆସିଲେ ।''

ଏହି ସଭାରେ ବାଞ୍ଛାନିଧି ମହାତ୍ମାଗାନ୍ଧୀଙ୍କୁ କେତୋଟି ପ୍ରଶ୍ନ କରିଥିଲେ । ସେଥି ମଧ୍ୟରୁ ଗୋଟିଏ ହେଲା—''ଯଦି ଅସ୍ପୃଶ୍ୟତା ଉଠିଯିବ, ତେବେ 'ବର୍ଣ୍ଣାଶ୍ରମ ଧର୍ମ'ରେ ବାଧା ପଡ଼ିବ କି ନା ? ଗାନ୍ଧିଜୀ ସ୍ମିତହାସ୍ୟ ଏହାର ଉତ୍ତରରେ କହିଥିଲେ-- ''ବର୍ଣ୍ଣାଶ୍ରମ ଧର୍ମରେ କୌଣସି ଅସୁବିଧା ହେବନାହିଁ । କର୍ମଗୁଡ଼ିକ ସୁଚାରୁରୂପେ ପରିଚାଳିତ ହେବାପାଇଁ 'ବର୍ଣ୍ଣାଶ୍ରମ ଧର୍ମ'ର ସୃଷ୍ଟି । କିନ୍ତୁ ଜାତି-ଜାତି ମଧ୍ୟରେ ପ୍ରଭେଦକୁ ନେଇ ଗଢ଼ାଯାଇ ନଥିଲା ।'' ଗାନ୍ଧିଜୀ ତାଙ୍କ ଭାଷଣ ପ୍ରସଙ୍ଗରେ କହିଲେ— ''ଇସ୍ ସଲତ୍ନତ୍ ମେଁ ସୈତାନସ୍ୱତ୍ ଆ ଗେ ।'' ଅର୍ଥାତ୍, ଏହି ଶାସନରେ ସୈତାନପଣିଆଁ ଆସି ଗଲାଣି । ବିଶାଳ ଜନତାଙ୍କ ଆନନ୍ଦ-ଧ୍ୱନିରେ ସଭାଟି ହସି ଉଠିଲା ।

ଗଣକବି ବାଞ୍ଛାନିଧି ମହାତ୍ମାଗାନ୍ଧିଙ୍କୁ ଶ୍ରୀକୃଷ୍ଣ ରୂପରେ ତାଙ୍କ ଗୀତରେ ବର୍ଣ୍ଣନା କରିଛନ୍ତି । ଭାରତବାସୀଙ୍କ ଦୁଃଖ ଲାଘବ କରିବା ପାଇଁ ସେ ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇଛନ୍ତି—

''ମହାତ୍ମା ମୋହନ ଦାସ ଦ୍ୱାରକା ପୁରରେ ବାସ
ଦ୍ୱାପର ଦ୍ୱାରକା ଦ୍ୱୀପ କୃଷ୍ଣ ଲୀଳାମୟରେ,
ଅଧମ ତାରଣ ହରି ଗାନ୍ଧିରୂପେ ଅବତରି
ବିନାଶିବା ପାଇଁ ବିଜେ ଦୁଃଖୀ ଦୁଃଖ ଚୟ ହେ ।''

( ବା. ପ., ପୃ. ୧୨ )

ଅହିଂସାକୁ ସେ ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ର ସହିତ ତୁଳନା କରିଛନ୍ତି—

''ଅହିଂସା ଅସ୍ତ୍ର ବଳେ ସ୍ୱରାଜ୍ୟ ଲଭିବା ହେଲେ
ସେ ତ ସୁଦର୍ଶନ ଚକ୍ର କରିଦେବ ପାପ କ୍ଷୟ ହେ ।''

( ବା. ପ., ପୃ. ୧୨ )

ଗାନ୍ଧିଜୀ କାରାବାସରେ ଥିଲାବେଳେ ବାଞ୍ଛାନିଧି ବଡ ବ୍ୟଥିତ ସ୍ୱରରେ ( ବସ୍ତା ଠାରେ ବାଲେଶ୍ୱର ଜିଲ୍ଲା ସମ୍ମିଳନୀର ୨ୟ ଅଧିବେଶନ ) ଗାଇ ଉଠିଛନ୍ତି—

''କେଉଁଠି ରହିଲ ଯାଇ ହୃଦୟ ସାଇଁ ହେ ଗାନ୍ଧି ଗୋସାଇଁ,
ରହିଲ କେଉଁ ଗୋପନେ ପଶୁ ବନ୍ଧନେ, ଶ୍ରୀଅଙ୍ଗ ମୁଖକୁ ଦେହ ଲୁଚାଇ ।

× × ×

ଓପୀବର ଉପର ବଳି ଭାଙ୍ଗିଦେବ ଲୁହା ଶିକୁଳି,
ଫିଟିଯିବ ବନ୍ଦୀଘର ଦ୍ୱାର ଖସିବ ପଥର କାନ୍ଥ ପାଚେରି
ସତେକି ଆସିବ ଫେରି ମୋ ହୃଦ ବିହାରୀ
ରାଜସିଂହାସନେ ବସିବା ପାଇଁ ହେ ।"

( ବା. ପ./ପୃ. ୧୨୯-୧୩୦ )

ଉତ୍କଳମଣି ଗୋପବନ୍ଧୁ ଓ ବାଞ୍ଛାନିଧି

ବାଞ୍ଛାନିଧି ଯେତେବେଳେ ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିଲେ, ସେତେବେଳେ ଗୋପବନ୍ଧୁଙ୍କ ସହିତ ତାଙ୍କର ପରିଚୟ ହୁଏ । ଏହି ପରିଚୟ କ୍ରମଶଃ ଘନିଷ୍ଟ ହୁଏ । ଗୋପବନ୍ଧୁ ତାଙ୍କର ସତ୍ୟବାଦୀ ବନବିଦ୍ୟାଳୟ ପାଇଁ ବିଶେଷତଃ ସ୍ୱାଧୀନତା ଆନ୍ଦୋଳନରେ ନେତୃତ୍ୱ ନେବାପାଇଁ ସୈନିକ ସଂଗ୍ରହ କରୁଥାନ୍ତି, ବିଭିନ୍ନ ସଭା ସମିତି ମାଧ୍ୟମରେ । ବାଞ୍ଛାନିଧିଙ୍କ ନିଷ୍କପଟ ହୃଦୟ, ସରଳ ସ୍ୱଭାବ ସଙ୍ଗୀତ ରଚନା ତଥା ଗାନ କୁଶଳତା, ସର୍ବୋପରି ସ୍ୱଦେଶ ଚିନ୍ତା ଉତ୍କଳମଣିଙ୍କୁ ମୁଗ୍‌ଧ କରି ଦେଇଥିଲା । ସେ ତାଙ୍କର ଅଧିକ ଘନିଷ୍ଟ ହୋଇ ଉଠିଲେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ ସମୟରେ । 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ' ଗଠନ ସମୟରେ ସେ ଗୋପବନ୍ଧୁଙ୍କର ଖୁବ୍‌ ପ୍ରିୟପାତ୍ର ହୋଇ ପାରିଥିଲେ । ଓଡ଼ିଶାର ବିଚ୍ଛିନ୍ନାଞ୍ଚଳକୁ ଏକତ୍ର କରିବା ପାଇଁ ସତ୍ୟବାଦୀ ଗୋଷ୍ଠୀର କବି ଗୋଦାବରୀଶ ମିଶ୍ର, ମାୟାଧର ମାନସିଂହ ଓ ଯଦୁମଣି ମଙ୍ଗରାଜ ପ୍ରଭୃତିଙ୍କ ଚହଣରେ ମେଦିନୀପୁର, ଫୁଲଝର, ସିଂହଭୂମି ଆଦି ଅଞ୍ଚଳରେ ବହୁ ବିଧାବିଘ୍ନ ମଧ୍ୟରେ ସଭାମାନ ଅନୁଷ୍ଠିତ କରାଇ ସୁପ୍ତ ଓଡ଼ିଆତ୍ମାକୁ ଜାଗ୍ରତ କରାଇଥିଲେ । ଏପରିକି ତାଙ୍କୁ କେତେଥର ଟେକା ପଥର ମାଡ ମଧ୍ୟ ସହ୍ୟ କରିବାକୁ ପଡ଼ିଥିଲା । ସେତେବେଳେ ତାଙ୍କ ଲେଖନୀ ବିଦ୍ରୋହ କରି ଉଠିଥିଲା—

"କି ହେବ ଏ ମୁଣ୍ଡକଟା ଦେଶକୁ ଘେନି
ମୁଣ୍ଡକଟା, ଗୋଡ଼ କଟା ପଙ୍ଗୁକୁ ଘେନି
ମୋ ଜନନୀ କି ସୁନ୍ଦର—ସିଂହଭୂମି ତାର ଶିର
ମେଦିନୀପୁର, ମଞ୍ଜୁଷା ପୟର ବେନି ।୧।

ଟିକାଲି ତା ଅଙ୍ଗ ଟୀକା
ସମ୍ବର ଗୁରୁ ଛୁଟିକା
ଫୁଲଝର ଫୁଲଝରୀ ସୁଷମା ବେଣୀ ।୨।

(ବା. ପ: / ପୃ. ୨୬ )

ଅସହଯୋଗ ଆନ୍ଦୋଳନ ସମୟରେ ବାଞ୍ଛାନିଧି ଗୋପବନ୍ଧୁଙ୍କର ଦକ୍ଷିଣହସ୍ତ ସ୍ୱରୂପ । ନିଜେ ବାଞ୍ଛାନିଧି ତାଙ୍କ ରଚିତ ଜାତୀୟ ସଂଗୀତ ଗୁଚ୍ଛ 'ଉତ୍କଳ ବୀଣା'ର 'ପ୍ରଥମ-ଝଙ୍କର'ର 'ଉତ୍ସର୍ଗ ପତ୍ର'ରେ ଉଲ୍ଲେଖ କରିଛନ୍ତି—"ଯେଉଁ ଉତ୍କଳ ମଣି ପଣ୍ଡିତ ଗୋପବନ୍ଧୁ ଦାସ ଉତ୍କଳର ପୁରପଲ୍ଲୀରେ ଜାତୀୟ ଭାବ ଜାଗ୍ରତ କରିବା ପାଇଁ ଆଜୀବନ ବହୁତ୍ୟାଗ ଓ ବହୁକଷ୍ଟ ସ୍ୱୀକାର କରି ଶେଷରେ ଜୀବନ ଦେଲେ, ଯାହାଙ୍କୁ ଆଖି ଆଗରେ ଆଦର୍ଶ ରଖି ମୁଁ ୭ ବର୍ଷ କାଳ ଉତ୍କଳ କଂଗ୍ରେସ କର୍ମୀ ଭାବରେ ଦେଶରେ କାର୍ଯ୍ୟ କରିବାକୁ ସୁବିଧା ପାଇଁ ନିଜର ଜୀବନକୁ ଧନ୍ୟ ମଣିଛୁ, ସେହି ସ୍ୱର୍ଗତ ଉତ୍କଳ ମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସ୍ମୃତି ସ୍ୱରୂପ ମୋର ଏହି 'ଉତ୍କଳ ବୀଣା' ନାମକ କ୍ଷୁଦ୍ର ଜାତୀୟ ସଙ୍ଗୀତ ପୁସ୍ତିକାର ୧ମ ଭାଗଟି ପ୍ରକାଶ କଲି ।"

କଟକର ନିଖିଳ ଉତ୍କଳ ସମାଜ ସଂସ୍କାର ସମ୍ମିଳନୀ, କଟକ ଜିଲ୍ଲାର କେନ୍ଦ୍ରାପଡ଼ା ସମ୍ମିଳନୀ, ନିଖିଳ ଉତ୍କଳ ନେତା ସମ୍ମିଳନୀ, ବାଲେଶ୍ୱର ଜିଲ୍ଲା ସମ୍ମିଳନୀ ଏବଂ ଢେଙ୍କାନାଳ, ତାଳଚେର, ପୁରୀ ଆଦି ସ୍ଥାନରେ ବିଭିନ୍ନ ସାଧାରଣ ସଭାରେ ଗୋପବନ୍ଧୁଙ୍କ ସହିତ ତାଙ୍କର ସଂପର୍କ ଅଧିକ ଘନିଷ୍ଠ ହୋଇ ଉଠିଲା ।

ଗୋପବନ୍ଧୁ ମଧ୍ୟ ବାଞ୍ଛାନିଧିଙ୍କ ବିଷୟରେ ତାଙ୍କ କବିତା ପୁସ୍ତକ 'ବନ୍ଦୀର ସ୍ୱଦେଶ ଚିନ୍ତା'ରେ ଉଲ୍ଲେଖ କରିଛନ୍ତି—

"ଭଦ୍ରକ କର୍ମୀ ଧନ୍ୟ ତୁମ୍ଭ ବଳ,
ଏପରି ସାଧକ ଲୋଡ଼ଇ ଉତ୍କଳ ।
ତେଜି ସବୁ ମାୟା ପରିବାର ଭୋଗ,
ସାଳନ୍ଦୀ କୂଳରେ ଆରମ୍ଭିଛ ଯୋଗ ।
ମନ୍ତ୍ରସିଦ୍ଧି କିମ୍ବା ଶରୀର ପତନ,
ଜାଣେ ମୁଁ, କରିଛ ଏହି ମହାପଣ ।
ଏହି ପଣ ଏହା ଭଦ୍ରଖ ଉଚିତ,
ସାଧୁ ସମାଗମେ ଯା ରେଣୁ ପବିତ ।"

ଭଦ୍ରକର ସାଳନ୍ଦୀ ନଦୀର କୂଳଦେଶରେ କୁଆଁର ଗ୍ରାମରେ କଂଗ୍ରେସ ଆଶ୍ରମ ବାଞ୍ଛାନିଧିଙ୍କ ନେତୃତ୍ୱରେ ପ୍ରତିଷ୍ଠିତ ହୋଇଥିଲା । ଏହା ପୂର୍ବରୁ ଭଦ୍ରକର ବଂକସାହିରେ ତାଙ୍କ ନିଜର ବାସ ଭବନରେ ୧୯୨୧ ମସିହାଠାରୁ ୧୯୨୨ ମସିହା ପର୍ଯ୍ୟନ୍ତ ଭଦ୍ରକ ସବ୍‌ଡିଭିଜନ୍‌ର କଂଗ୍ରେସ୍ କର୍ମୀ ଆଶ୍ରମ ପ୍ରତିଷ୍ଠିତ ହୋଇଥିଲା । କୁଆଁର ଗ୍ରାମରେ ଆଶ୍ରମ ପ୍ରତିଷ୍ଠା ପାଇଁ ବାଞ୍ଛାନିଧିଙ୍କୁ ଜମି ଦାନ କରିଥିଲେ ସହୃଦୟ ଓ ସ୍ୱାଧୀନତା ପିପାସୁ ବ୍ୟକ୍ତି ଶ୍ରୀ ଗୌର ମୋହନ ମହାପାତ୍ର । ଏହାଥିଲା ସ୍ୱାଧୀନତା

ଆନ୍ଦୋଳନ ସମୟରେ ଉତ୍ତର ସବ୍ଡିଭିଜନର କେନ୍ଦ୍ରସ୍ଥଳ । ଏଠାରେ ସମସ୍ତ ମନ୍ତ୍ରଣା, ପରାମର୍ଶ ଚାଲୁଥିଲା ଓ ପରେ ତାହା କର୍ମୀ ମାନେ କାର୍ଯ୍ୟରେ ପରିଣତ କରୁଥିଲେ । ଏହି କୁଆଁସ ସ୍ଥିତ ଆଶ୍ରମରେ ସର୍ବଶ୍ରୀ ଜଗନ୍ନାଥ ଦାସ, ରାଧାଶ୍ୟାମ ନାୟକ, ସୁଦର୍ଶନ ପଣ୍ଡା, ଓ୍ୱାରିସ୍ ମିଆଁ ପ୍ରଭୃତି ରହୁଥିଲେ । ବାଞ୍ଛାନିଧିଙ୍କ ନିର୍ଦ୍ଦେଶ ଅନୁଯାୟୀ ସେମାନେ ମୁଷ୍ଟିଭିକ୍ଷା, ଚାନ୍ଦା ଆଦାୟ ଓ ସଭା-ସମିତିମାନ ଆୟୋଜନ କରିବାରେ ବ୍ୟସ୍ତ ରହୁଥିଲେ ।

ଏହି କଂଗ୍ରେସ୍ ଆଶ୍ରମ ସେତେବେଳେ ଏ ଅଞ୍ଚଳରେ ଏପରି ପ୍ରଭାବ ପକାଇ-ଥିଲା ଯେ ତାହା ସର୍କାର ଦୃଷ୍ଟିରେ ପରିଣତ ହୋଇଥିଲା । "ଭଦ୍ରଖ ସବ୍ଡିଭିଜନ୍‌ରେ ଅନେକ ଜମିଦାର ସେମାନେ ପ୍ରଜାମାନଙ୍କ ବିରୁଦ୍ଧରେ ଖଜଣା ଆଦାୟ ପାଇଁ ସରକାରୀ କୋର୍ଟରେ ନାଲିସ୍ କରିବା ପରିବର୍ତ୍ତେ କଂଗ୍ରେସ୍ ଅଫିସ୍‌ର ଆଶ୍ରୟ ନେଉଥିଲେ" (୪) । ଏହା ସମ୍ଭବ ହୋଇଥିଲା ବାଞ୍ଛାନିଧିଙ୍କ ଉଦ୍ୟମ ଫଳରେ ।

ପଣ୍ଡିତ ଗୋପବନ୍ଧୁ ଓ ଭାଗୀରଥି ମହାପାତ୍ର ୧୯୨୪ ମସିହା ଜୁନ୍ ମାସ ୨୭ ତାରିଖ ସକାଳ ୮ଟାରେ ହଜାରିବାଗ ଜେଲ୍‌ରୁ ମୁକ୍ତି ପାଇଲେ । ଆଚାର୍ଯ୍ୟ ହରିହର ଓ ପ୍ରଚାରକ ଅନନ୍ତ ମିଶ୍ର ଜେଲ୍ ଫାଟକ ପାଖରୁ ପାଛୋଟି ଆଣିଥିଲେ । ସେଦିନ ସନ୍ଧ୍ୟାରେ ଖଡ଼ଗପୁର ଠାରେ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ରେଲଗାଡ଼ିରେ ଓଡ଼ିଶାକୁ ଆସି ୨୭ ତାରିଖ ସକାଳେ କଟକରେ ପହଞ୍ଚିଲେ । ତାଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ ବାଞ୍ଛାନିଧିଙ୍କ ସମେତ ଗୋପବନ୍ଧୁ ଚୌଧୁରୀ, ଭଗବାନ ଚରଣ ପଟ୍ଟନାୟକ, ଗୋପାଳ ଚନ୍ଦ୍ର ପ୍ରହରାଜ, ସତ୍ୟନାରାୟଣ ସେନ୍, ଡାକ୍ତର ଏକରାମ ରସୁଲ୍, ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, ପଣ୍ଡିତ ନୀଳକଣ୍ଠ ଦାସ, କୃପାସିନ୍ଧୁ ମିଶ୍ର, ଲିଙ୍ଗରାଜ ପାଣିଗ୍ରାହୀ, ତରଙ୍ଗିତ ପଟ୍ଟନାୟକ, ନନ୍ଦକିଶୋର ଦାସ ପ୍ରଭୃତି କଟକ ଷ୍ଟେସନରେ ପହଞ୍ଚିଲେ, ତା' ପରଦିନ ଅପରାହ୍ଣ ଚାରିଟାରେ କଟକ ମ୍ୟୁନିସି-ପାଲିଟି ହତାର ଏକ ସୁସଜ୍ଜିତ ମଣ୍ଡପରେ ଉତ୍କଳ ପ୍ରଦେଶ କଂଗ୍ରେସ୍ ସମ୍ମିଳନୀର ଅଧିବେଶନ ହେଲା । ଏହି ଅଧିବେଶନରେ ଭାରତ ବିଖ୍ୟାତ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ସଭାପତି ଆସନ ଅଳଂକୃତ କରିଥାନ୍ତି । ବାଞ୍ଛାନିଧି ତାଙ୍କର ଅଭ୍ୟର୍ଥନା ଉପଲକ୍ଷେ ଗୀତରେ ଗାଇଥିଲେ—

"ଦେଖ ଆସିଛନ୍ତି ଆମ୍ଭ ଦେଶକୁ
ବିଜ୍ଞାନବୀର—ଜ୍ଞାନ ସାଗର ତ୍ୟାଗୀ ପ୍ରବର

---

(୪) ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ— ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ୧୯୭୨-ଗ୍ରନ୍ଥ ମନ୍ଦିର-ପୃ: ୫୦-୫୧ ।

ଯୁଝିଛୁ ଆମ୍ଭ କରମକୁ
ସରକାରର ସେ ଅବତାର ଧୀର ସୁନ୍ଦର ।

\+ \+ \+ \+

ଜୀବନେ ଯା ଥିଲେ ଅରଜ ଦେଶ ଲାଗି ଦେଲେ ବରଜ
ପରଦ୍ୱନ୍ଦେ ରହିଲେ ମଜି
କଣ ପ୍ରଗ୍ରୁର ଚରଖା ତା'ର ମୂଳ ମନ୍ତର । ।୨।

(ବା: ପ:, ପୃ: ୧୪୦)

—

ଏହି ଅଧିବେଶନରେ "ଦଶ ହଜାରରୁ ଊର୍ଦ୍ଧ୍ୱ ଲୋକ ଯୋଗ ଦେଇଥିଲେ । ଏହା ପୂର୍ବରୁ କଟକରେ ଏତେ ବଡ ସଭା କେବେ ହୋଇ ନଥିଲା" (୫) । ଏହାର ଖୋଲା ଅଧିବେଶନ ପ୍ରାରମ୍ଭରେ ସଭାମଣ୍ଡପରେ ଜନନେତା ବାଞ୍ଛାନିଧି କନକା ଅତ୍ୟାଗ୍ରର ସଂପର୍କରେ ଏକ ମର୍ମସ୍ପର୍ଶୀ ସଙ୍ଗୀତ ଗାନ କରିଥିଲେ । ବର୍ତ୍ତମାନ ଏହି 'କନକା ଅତ୍ୟାଗ୍ରର' ସଂପର୍କରେ ସୂଚନା ଦେବା ଆବଶ୍ୟକ ।

ସେତେବେଳେ କନକାରେ ରାଜା ସାହେବଙ୍କ ଅତ୍ୟାଗ୍ରର ଓଡ଼ିଶାରେ ଏକ ବିଶେଷ ଘଟଣା । ସେଠାକାର ରାଜା ସାହେବ ପ୍ରଜା ମାନଙ୍କ ଉପରେ ଅତ୍ୟାଗ୍ରର କରିବାରୁ ପ୍ରଜାମାନେ ମେଳ ବାନ୍ଧିଲେ ଏବଂ ଆନ୍ଦୋଳନ ଗ୍ରଲିଲା । ଏହି ଆନ୍ଦୋଳନ ପଛରେ ବହୁଦିନର ଅସନ୍ତୋଷର ଅଗ୍ନିସ୍ଫୁଲିଙ୍ଗ ରହିଥିଲା । ୧୯୨୦ ମସିହାରେ କନକା ରାଜା ଇଂରେଜ ସରକାରଙ୍କ ତତ୍କାଳୀନ ଜିଲ୍ଲା କଲେକ୍ଟରଙ୍କ ନିକଟରେ ଲେଖି ଦୁର୍ଭିକ୍ଷ ସମୟରେ ତାଙ୍କ ରାଜ୍ୟ ସୀମା ମଧ୍ୟରେ ଥିବା ଲୋକମାନଙ୍କର ସାହାଯ୍ୟର ବନ୍ଦୋବସ୍ତ କରିବେ ବୋଲି ଇଂରେଜ ସରକାରଙ୍କ ଠାରୁ ଆଦେଶ ପାଇଥିଲେ । ତେଣୁ କନକା ରାଜା ନିଜ ରାଜ୍ୟର ମହାଜନମାନଙ୍କ ଠାରୁ ଧାନ ସବୁ ସଂଗ୍ରହ କରି ନେଇ, ପରେ ଏହାକୁ ଅଧିକ ଦରରେ ବିକ୍ରୟ କରିଗଲା । ତେଣୁ ଧାନ ମହାଜନମାନେ କ୍ଷତିଗ୍ରସ୍ତ ହେଲେ । ପୁଣି, ଧାନର ଦାମ ଅଧିକ ହେବାରୁ ଦୁର୍ଭିକ୍ଷ ଗ୍ରସ୍ତ ଲୋକମାନେ ସାହାଯ୍ୟ ପାଇ ପାରିଲେ ନାହିଁ । ଫଳରେ ଅସନ୍ତୋଷର ବାତାବରଣ ରାଜ୍ୟରେ ବ୍ୟାପିଗଲା । ଏହାପରେ ଏକ ଦୁର୍ଦ୍ଦିନରେ ୧୯୨୨ ମସିହାରେ ସରକାରୀ ବନ୍ଦୋବସ୍ତ ନ ହୋଇ ରାଜସରକାର ନିଜେ ବନ୍ଦୋବସ୍ତ କାମ କଲେ । ଫଳରେ ଏହା ସରକାରୀ ଆଇନ୍‌ର ବିରୁଦ୍ଧ ଆଚରଣ କରୁଥାଏ । ତତ୍ପୂର୍ବରୁ ପ୍ରଜମାନେ ଚଉଷଠି ପ୍ରକାର କର କନକା ରାଜାଙ୍କୁ ଦେଉଥିଲେ । ଏହି ଖଜଣା ପୁଣି ବୃଦ୍ଧି ପାଇଲା ଏବଂ

(୫) ନାଗିପୁ କବି ବୀର କିଶୋର—ବିନୋଦ କାନୁନ୍‌ଗୋ—ଜ୍ଞାନ ମଣ୍ଡଳ ପ୍ରକାଶନୀ ୧୯୭୭ – ପୃ: ୬୪ ।

ବର୍ଦ୍ଧିତ ହାରରେ ଖଜଣା ନ ଦେଲେ ଖଜଣା ଗ୍ରହଣ କରାଗଲା ନାହିଁ । ତେଣୁ ପ୍ରଜାମାନେ କେନ୍ଦ୍ରାପଡ଼ାସ୍ଥ ସରକାରୀ ଟ୍ରେଜେରୀରେ ଖଜଣା ଦାଖଲ କଲେ । ଏହି ପ୍ରଜାମେଳାକୁ ଭଣ୍ଡୁର କରିଦେବା ପାଇଁ କନକା ରାଜା ଏହାକୁ ଅସହଯୋଗ ଆନ୍ଦୋଳନର ଏକ ଅଂଶ ବୋଲି ଇଂରେଜ ସରକାରଙ୍କୁ ଜଣାଇ ଦେଲେ । ଫଳରେ କନକା ଅତ୍ୟାଚାର ପ୍ରସଙ୍ଗଟି ଉପରେ ଏକ ଆବରଣ ପଡ଼ିଗଲା । କନକା ରାଜା ସେତେବେଳେ ବିହାର-ଓଡ଼ିଶା ସରକାରଙ୍କ କାର୍ଯ୍ୟକାରୀ ପରାମର୍ଶ ଦାତା ସଦସ୍ୟ ବା Executive Councillor ଥାଆନ୍ତି । ସେ ବିହାର-ଓଡ଼ିଶା ରାଜ୍ୟର ରାଜଧାନୀ ପାଟଣାର ଲାଟ ଭବନରେ ଅବସ୍ଥିତ ଥିଲାବେଳେ କନକାରୁ ଟେଲିଗ୍ରାମ ଯାଇ ପହଂଚିଲା ଯେ ପ୍ରଜାମାନେ ମେଳିକରି ରାଜପ୍ରସାଦ ଲୁଟ କରିବାକୁ ଆସୁଛନ୍ତି । ଏହା ଥିଲା ଇଂରେଜ ସରକାରଙ୍କ ଠାରେ କନକା ରାଜାଙ୍କର ଏକ କୌଶଳ । ଇଂରେଜ ସରକାରଙ୍କର ବିଶ୍ୱାସ ହେଲା ଯେ ପ୍ରକୃତରେ କନକାର ପ୍ରଜାମେଳା ହେଉଛି ଅସହଯୋଗ ଆନ୍ଦୋଳନର ଏକ ଅଂଶ ବିଶେଷ ।

ଏହି ଆନ୍ଦୋଳନ ପ୍ରଥମେ କଟକ ଜିଲ୍ଲାର ଛମୁକା ଅଞ୍ଚଳରେ ଚାଲିଥିଲା । ଏହାର ନେତୃତ୍ୱ ନେଇଥିଲେ ଶ୍ରୀ ଚକ୍ରଧର ବେହେରା । କମିଶନର ସାହେବ ଯେତେବେଳେ ଏହାର ଅନୁସନ୍ଧାନ କରିବାକୁ ଗଲେ, ସେତେବେଳେ ପ୍ରଜାମାନେ ତାଙ୍କ ପାଖରେ ନିଜର ଆପତ୍ତି ଅଭିଯୋଗ କରିବାକୁ ଆସିବାରୁ ତାଙ୍କୁ ଆକ୍ରମଣ କରିବାକୁ ଲୋକମାନେ ଆସୁଛନ୍ତି ବୋଲି ପୋଲିସ୍ ସୁପରିଟେଣ୍ଡେଣ୍ଟ୍ ଶ୍ରୀକୃଷ୍ଣ ମହାପାତ୍ର ମିଛରେ କହିଲେ । ତେଣୁ କଟକର ସଶସ୍ତ୍ର ପୋଲିସ୍ ଆସିଲା ଓ ଗୁଳିରେ ଦୁଇଜଣ ମଲେ ଏବଂ ପନ୍ଦର ଜଣ ଲୋକ ଆହତ ହେଲେ । ତା'ପରେ ପୋଲିସ୍ ମାନେ ଯେପରି ଅତ୍ୟାଚାର କଲେ ତାହାର ବର୍ଣ୍ଣନା ଦେବାକୁ ଯାଇ ଡ଼: ହରେକୃଷ୍ଣ ମହତାବ ତାଙ୍କ ଆତ୍ମ ଜୀବନୀ 'ସାଧନାର ପଥ' ରେ ଲେଖିଛନ୍ତି— "ବନ୍ଧୁକ ଧାରୀ ପୋଲିସ୍ କେବଳ ଯେ ଗୁଳିକରି କ୍ଷାନ୍ତ ହେଲେ, ତା ନୁହେଁ, ଘରଦ୍ୱାର ଲୁଟିକଲେ, ବହୁ ଧନୀ ଲୋକ ପଥର ଭିକାରୀ ହୋଇଗଲେ, ବହୁ ସ୍ତ୍ରୀ ଲୋକ ଅତ୍ୟାଚାରିତା ହେଲେ । ଏପରି ଆତଙ୍କ ସୃଷ୍ଟି କରିଦେଲା ଯେ, କେତେକ ଗର୍ଭବତୀ ସ୍ତ୍ରୀ ପଳାଇ ଯାଇ ପ୍ରସବ କରିପକାଇଲେ । ଖଣ୍ଡେଇତ ବଂଶ ଅଶ୍ୱିନୀ କୁମାର ପଲେଇ ଏମାନଙ୍କର ଶହଶହ ମାଣ ଜମି ବେଦଖଲ କରାହୋଇ ଏମାନଙ୍କୁ ରାଜ୍ୟରୁ ବାହାର କରି ଦିଆହେଲା" (୬) । ସ୍ତ୍ରୀ ଲୋକଙ୍କ ଦେହରୁ

(୬) ସାଧନାର ପଥେ- କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର—୨ୟ ସଂସ୍କରଣ- ୧୯୭୨
ପୃ.— ୬୧-୬୨ ।

ବୃଦ୍ଧି ଖଜଣା ଆଦାୟ ଆଳରେ ଅଳଙ୍କାର ଛଡ଼ାଇ ଆଣିଲେ । ଘରେ ନିଆଁ ଲଗାଇ ଦେଲେ । ସ୍ତ୍ରୀ ଲୋକମାନେ ନଈ, ପୋଖରୀରେ ପଶି ଆତ୍ମରକ୍ଷା କଲେ । କନିକା ଅଧିବାସୀ ମାନେ ବୃନ୍ଦାବାଳ, ଆଳ, କେନ୍ଦୁପ୍ରମା ଅଞ୍ଚଳକୁ ପ୍ରାଣ ବିକଳରେ ପଳାଇଗଲେ । 'ସାଧନାର ପଥେ' ପୁସ୍ତକରେ ପୁଣି ଲେଖା ଯାଇଛି—"ସ୍ୱାମୀଙ୍କୁ ଛନ୍ଦା କରାଇ ତା' ଆଗରେ ତା' ସ୍ତ୍ରୀର ସମ୍ମାନ ହରଣ କରେ ଜଣେ ପୋଲିସ-ମାନଙ୍କ ପ୍ରତି ଏକାଦିକ୍ରମେ ୨୦ । ୨୫ ଜଣ ପୁରୁଷଙ୍କର ଅତ୍ୟାଚାର, ଯାହା ଫଳରେ ଅନେକ ବେହୋସ ହୋଇ ପଡ଼ିଯାନ୍ତି । + + + ଯେଉଁ ସ୍ୱାମୀ ଆଗରେ ତା'ର ସ୍ତ୍ରୀର ସମ୍ମାନ ହରଣ କରା ହୋଇଥିଲା, ସେ ଅତ୍ୟାଚାରୀଙ୍କୁ ତରବାରୀରେ ହାଣି ଦେବାପାଇଁ ଯାଉଥିଲା । ମାତ୍ର ତରବାରୀ ଅକସ୍ମାତ୍ ଦ୍ୱାର କବାଟ ଉପରେ ବାଜି ଖସିଗଲା । ପୋଲିସ୍‌କୁ ମାରିବାକୁ ଯାଉଥିବା ଅପରାଧରେ ତାକୁ ଦୁଇବର୍ଷ ଜେଲ ହୋଇଛି । ସେ ପାଗଳ ପ୍ରାୟ ହେଉଥାଏ । ରାତିରେ ଶୋଇ 'ମାର ମାର' ବୋଲି ପ୍ରତିଦିନ ଚିତ୍କାର କରୁଥାଏ । ସେକଥା ବର୍ତ୍ତମାନ ସୁଦ୍ଧା ମନେ ପଡ଼ିଲେ ରୋମାଞ୍ଚ ଜାତହୁଏ । ଏତେ ଅତ୍ୟାଚାର !" (୭) ପ୍ରାୟ ୨୦ ଲକ୍ଷ ଟଙ୍କାର ସମ୍ପତ୍ତି ଲୁଟ କରାଯାଇ ଥିଲା ଏବଂ ୧୫୦ ଜଣ ଲୋକ ଗିରଫ୍ ହେଲେ । ଜଣେ ଡେପୁଟି ରାଜ ପ୍ରାସାଦକୁ ଆସି ଏମାନଙ୍କ ବିଚାର କଲେ । ଓକିଲ୍ ବା ପରାମର୍ଶ ଦାତା କେହି ନଥିଲେ । ତେଣୁ, ଏକ ତରଫା ବିଚାର କରି ରାଜକନିକାରୁ କେନ୍ଦ୍ରାପଡ଼ା ସବ୍-ଜେଲକୁ ଯିବାର କଥା । କିନ୍ତୁ ସେମାନଙ୍କୁ ହାତକଡ଼ି ପକାଇ ବାନ୍ଧି ଛମୁକାରୁ ବୃନ୍ଦାବାଳ ଓ ପାଞ୍ଚମୁକା ବାଟଦେଇ ଭଦ୍ରକବାଟେ କଟକକୁ ନିଆଗଲା । କାରଣ, ବାଲେଶ୍ୱର ଜିଲ୍ଲାର ପାଞ୍ଚମୁକା ଅଞ୍ଚଳ କନିକା ରାଜାଙ୍କ ଅଧୀନରେ ଥିଲା । ସେଠାରେ ଯେମିତି ପ୍ରଜାମେଳି ନ ହୁଏ, ସେଥିପାଇଁ ରାଜା ଏପରି ବ୍ୟବସ୍ଥା କରିଥିଲେ । ଭଦ୍ରକର ଏସ୍.ଡ଼ି.ଓ ଭଦ୍ରକଠାରୁ ୩୨ ମାଇଲ୍ ଦୂରସ୍ଥ ଘଣ୍ଟେଶ୍ୱର ଠାରେ କନିକା ରାଜାଙ୍କ କଚେରୀରେ ଜଣେ ସତୁରି ବର୍ଷ ବୟସର ପ୍ରଜାଙ୍କୁ ବେତାଘାତ କରିବା ପାଇଁ ଆଦେଶ ଦେଇଥିଲେ । ପାଞ୍ଚମୁକା ଅଞ୍ଚଳରେ ମଧ୍ୟ ସାତ, ଆଠ ଜଣ ପ୍ରଜାଙ୍କୁ ୧୦୭ ଦଫାରେ ଗିରଫ୍ କରାହେଲା । ଏହି ମୋକଦ୍ଦମା ହାଇକୋର୍ଟ ପର୍ଯ୍ୟନ୍ତ ଗଲା । ହାଇକୋର୍ଟର ବିଚାରପତିମାନେ ରାୟଦେଲେ ଯେ କନିକା ଆନ୍ଦୋଳନ ରାଜାଙ୍କ ବିରୁଦ୍ଧରେ ଆନ୍ଦୋଳନ, ଇଂରେଜ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ ନୁହେଁ । 'ସମାଜ'ର ଜଣେ ସାମ୍ବାଦିକ ତଥା ପ୍ରଜାଙ୍କୁ ଗିରଫ କରାଯିବାରୁ ସେ ମୋକଦ୍ଦମାରେ ଲଢ଼ିଲେ । ମାତ୍ର ସେତେବେଳେ ଦେଖାଗଲା ଏ ବିଚାର ଚାଲିଲେ ଇଂରେଜ ସରକାରଙ୍କ ସବୁ ଗୁମରଚତୁର ଜଣା ପଡ଼ିଯିବ ଏବଂ ପୋଲିସ୍ ଅତ୍ୟାଚାର ବିଷୟରେ ସମସ୍ତେ ଜାଣିବେ, ତେଣୁ ବିଭିନ୍ନ ମୋକଦ୍ଦମା ଉଠେଇ ନିଆଗଲା ।

(୭) ଉତ୍କଳେ ବ—ପୃ: ୭୬ ।

କନକାରେ ଅତ୍ୟାଚାର ଚାଲୁଥିବା ସମ୍ବାଦ 'ସମାଜ'ରେ ପ୍ରକାଶ କରାଗଲା । ୧୯୨୧ ମସିହା ଅଗଷ୍ଟ ୭ ତାରିଖରେ ବାବାଜୀ ରାମଦାସ ଓ ଯଦୁମଣି ମଙ୍ଗରାଜ ସମେତ ଆଠଜଣ ସ୍ୱେଚ୍ଛାସେବକଙ୍କୁ ଗ୍ରାମବାସୀମାନେ ଉପର ଚଢ଼ିଦେଲେ, ତାହା ବର୍ଣ୍ଣନା କରାଯାଇଛି । କଟକ ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଡ଼ାକ୍ତର ଅଟଳ-ବିହାରୀ ଆଚାର୍ଯ୍ୟ ଓ ପୂର୍ଣ୍ଣାନନ୍ଦ ରାଉତରାୟ ତିନିଜଣ ସ୍ୱେଚ୍ଛାସେବକଙ୍କୁ ନେଇ ଏହାର ଅନୁସନ୍ଧାନ କଲେ । ସେ ପ୍ରାଦେଶିକ କଂଗ୍ରେସ କମିଟିକୁ ଯେଉଁ ଚିଠି ଲେଖିଥିଲେ, ତାହା ୧୯୨୧ ଅଗଷ୍ଟ ୧୩ ତାରିଖରେ 'ସମାଜ'ରେ ପ୍ରକାଶ ପାଇଥିଲା । ସେହିଦିନ ଗୋପବନ୍ଧୁ ମଧ୍ୟ 'ସମାଜ'ରେ ତାଙ୍କ ମନ୍ତବ୍ୟ ଲେଖିଥିଲେ । ସେତେବେଳେ ବହୁ ସମ୍ବାଦ 'ସମାଜ'ରେ ଏ ସଂପର୍କରେ ପ୍ରକାଶ ପାଇଥିଲା । ରାଜା ସାହେବ ଗୋପବନ୍ଧୁ ଓ ହରେକୃଷ୍ଣ ମହତାବଙ୍କ ଉପରେ ବହୁ ମୋକଦ୍ଦମା ଚଳାଇଥିଲେ । ବିହାର-ଓଡ଼ିଶା ଲେଜିସ୍‌ଲେଟିଭ କାଉନ୍‌ସିଲର ସଦସ୍ୟ ଭଦ୍ରକର ଶ୍ରୀ ଭଗବତ ପ୍ରସାଦ ମହାପାତ୍ର କନକାର ଏହି ପ୍ରଜା ଆନ୍ଦୋଳନ ସଂପର୍କରେ କାଉନ୍‌ସିଲରେ ଭାଷଣ ଦେଇ ଦୃଷ୍ଟି ଆକର୍ଷଣ କରିଥିଲେ । ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ ମଧ୍ୟ କନକା ଯାଇ ସେଠାକାର ଅତ୍ୟାଚାରର ବିବରଣୀ ପ୍ରେରଣ କରିଥିଲେ ।

୧୯୨୨ ମସିହା ମେ' ମାସ ୧୪ ତାରିଖରେ ବାଲେଶ୍ୱରଠାରେ ପ୍ରଦେଶ କଂଗ୍ରେସ କମିଟିର ସଭା ଅନୁଷ୍ଠିତ ହେଲା । ଏଥିରେ କନକା ଅତ୍ୟାଚାର ସଂପର୍କରେ ଅନୁସନ୍ଧାନ ପାଇଁ ସ୍ଥିରହେଲା ଓ ଗୋପବନ୍ଧୁ ଏବଂ ପ୍ରଦେଶ କଂଗ୍ରେସ କମିଟିର ସଂପାଦକ ଶ୍ରୀ ଭଗୀରଥି ମହାପାତ୍ର ମେ' ୧୭ତାରିଖରେ ଭଦ୍ରଖରେ ପହଞ୍ଚିଲେ । ସେତେବେଳକୁ ଭଦ୍ରକର ଏସ୍.ଡ଼ି.ଓ. ୧୪୪ଧାରା ନୋଟିସ୍ ଜାରିକରି କନକା ସଂପର୍କରେ ସଭାକରି ପାରିବେ ନାହିଁ ବୋଲି ଘୋଷଣା କରି ସାରିଥିଲେ । ଗୋପବନ୍ଧୁ ଷ୍ଟେସନରେ ପହଂଚିଲା ମାତ୍ରେ ୧୪୪ ଧାରା ନୋଟିସ୍ ତାଙ୍କୁ ଜାରି କରାଗଲା । ସେ ଭଦ୍ରକ କଂଗ୍ରେସ ଆଶ୍ରମକୁ ଗଲେ । ହଡ଼ସନ୍ ସାହେବ, ସେତେବେଳେ ଭଦ୍ରକରେ ଥା'ନ୍ତି । ହରେକୃଷ୍ଣ ମହତାବ ତାଙ୍କୁ ବୁଝେଇ କହିଲେ ଯେ ଗଣ୍ଡଗୋଳ ହେବାର କୌଣସି ଆଶଙ୍କା ନାହିଁ । ଏକ ଘେରାବନ୍ଦୀ ସ୍ଥାନରେ ସଭାହେବ । ସେଠାରେ ସର୍ବସାଧାରଣଙ୍କର ପ୍ରବେଶ ନିଷେଧ । ଯେଉଁମାନେ ଟିକଟ ପାଇବେ, ସେମାନେ କେବଳ ଯିବେ । ପୋଲିସ ସାହେବ ରାଜିହେଲେ । କଂଗ୍ରେସ ଆଶ୍ରମ ସମ୍ମୁଖସ୍ଥ ଏକ ମସଜିଦ୍ ହତାରେ ସଭାହେଲା । ସେଥିରେ କନକା ଅତ୍ୟାଚାରର ନିନ୍ଦାକରି ବିଭିନ୍ନ ପ୍ରସ୍ତାବ ଗ୍ରହଣ କରାଗଲା । ଗୋପବନ୍ଧୁ ଓ ଭଗୀରଥି ମହାପାତ୍ର କଟକ ଫେରିଗଲେ । କିନ୍ତୁ ଭଦ୍ରକ ଏସ୍.ଡ଼ି ଓଙ୍କ ୧୪୪ ଧାରା ଅମାନ୍ୟ କରିଥିବା ଯୋଗୁଁ ୧୮୮ ଧାରାରେ ଭଦ୍ରକ ସବ୍‌ଡ଼ିଭିଜନ ମାଜିଷ୍ଟ୍ରେଟ କୋର୍ଟରେ ଦୁହିଁଙ୍କ ନାମରେ

ମୋକଦ୍ଦମା ଆଗତ ହେଲା । ତା'ପରେ ମେ ୭ାଂ ତାରିଖରେ ଗୋପବନ୍ଧୁ ପୁରୀର ନରେନ୍ଦ୍ର ପୋଖରୀରୁ ସ୍ନାନସାରି ଫେରୁଥିଲାବେଳେ ପୁରୀର ପୋଲିସ୍ ଇନ୍‌ସପେକ୍ଟର ଅବୋଧବାବୁ ତାଙ୍କୁ ଗିରଫ କଲେ । ସେ ପୁରୀରୁ କଟକ ଗଲାବେଳେ ନିରଞ୍ଜନ ପଟ୍ଟନାୟକଙ୍କ ହାତରେ ଯେଉଁ ଚୋଟ୍ଟିଏ ଲେଖି ପଠାଇଥିଲେ, ସେଥିରେ ସେ କନକା ଅତ୍ୟାଗ୍ରହରେ ଅନୁସନ୍ଧାନ ପାଇଁ ଗୁରୁତ୍ୱ ଆରୋପ କରିଥିଲେ । ଏଥିରେ ସେ ଗୋଟିଏ ସ୍ଥାନରେ ଲେଖିଥିଲେ— + + + "ମୋ ବିରୁଦ୍ଧରେ ଏ ଯେ ମାଲ୍ ମୋକଦ୍ଦମାର ସୃଅ ଚ୍ଚଳିଛୁ, ମୋର ଆଶଙ୍କା ଏହା କେବଳ କନକା ଅନୁସନ୍ଧାନରୁ ଅନ୍ତର କରି ଜବତ୍ କରି ରଖିବା ପାଇଁ କରାଯାଉଛି । କନକାର ବର୍ତ୍ତମାନ ଅବସ୍ଥା ବିଷୟରେ ସ୍ୱାଧୀନ ଓ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରିଯିବା ନିତାନ୍ତ ଦରକାର । ଦେଶବାସୀଙ୍କର ଏହା ପ୍ରଧାନ କର୍ତ୍ତବ୍ୟ । ମୁଁ ଏଥିପାଇଁ ବଡ ଚିନ୍ତିତ । ଅବିଳମ୍ବେ ଏହା କାର୍ଯ୍ୟରେ ପରିଣତ କରିବା ପାଇଁ ମୁଁ ବରାବର ଚେଷ୍ଟା କରୁଥିଲି । ମୋର ମନେହୁଏ ବର୍ତ୍ତମାନ ଘଟଣାରେ କୌଣସି ଅନୁସନ୍ଧାନ କରେଇ ନ ଦେବାପାଇଁ ସରକାରୀ ଲୋକେ ପ୍ରାଣପଣେ ଚେଷ୍ଟା କରୁଛନ୍ତି, କିନ୍ତୁ ମୁଁ ମୋର ଦେଶବାସୀ ବିଶେଷତଃ ବିହାର, ବଙ୍ଗଳା ଓ ଓଡ଼ିଶାର ନେତାମାନଙ୍କ ଠାରେ ଦାବୀ କରେକି ସେମାନେ କାଳବିଳମ୍ବ ନ କରି ଅତିଶୀଘ୍ର ବିଚକ୍ଷଣତା ଓ ସାବଧାନତାର ସହିତ କନକା ଅତ୍ୟାଗ୍ରହର ଅନୁସନ୍ଧାନ କରନ୍ତୁ । + + + କନକା ଘଟଣାର ଉପଯୁକ୍ତ ଅନୁସନ୍ଧାନ କରି ନପାରିଲେ, ତାହା ଏକ କଳଙ୍କ ଓ ମନୁଷ୍ୟ ପ୍ରତି ମନୁଷ୍ୟର ଏହି କର୍ତ୍ତବ୍ୟରେ ଘୋର ତ୍ରୁଟି ଘଟିବ ।" (୮) ଗୋପବନ୍ଧୁ କଟକରୁ ହଜାରିବାଗ୍ ଜେଲକୁ ଯିବା ବାଟରେ ଭଦ୍ରକ ପାଖରେ ରେଳଗାଡ଼ି ପହଞ୍ଚିଲା ବେଳେ ତାଙ୍କ ଭାବନାକୁ 'ବନ୍ଦୀର ସ୍ୱଦେଶ ଚିନ୍ତା' ପୁସ୍ତକରେ ଲେଖିଛନ୍ତି—

"ଦୁଃଖିନୀ କନକା କରୁଣ କୁହାଟ;
ଲଗେ ଯେସନ୍ତେ ଭେଦି ବିଲ ବନ ପାଟ !
ସାଳନ୍ଦୀ ସଲିଳେ ପ୍ରତିଧ୍ୱନି ତାନେ,
କୁଲୀଶ ନିନାଦ ବାଜଇ ମୋ କାନେ ।

ଭଦ୍ରଖ କନକା ଚିର ପ୍ରତିବେଶୀ,
କନକା ଦୁଃଖ କି କହିବ ବିଶେଷି ?"

+ + +

---

(୮) ହେ ସାଥି ! ହେ ସାରଥି ! — ଡଃ ନିତ୍ୟାନନ୍ଦ ଶତପଥୀ-
ଜେ : ମହାପାତ୍ର ଏଣ୍ଡ୍ କୋ —୧୯୭୭ - ପୃ. ୧୮୭-୧୮୮ ।

ଉଡ଼ିଯାଇ ଦେଖି ଆସିଥାନ୍ତୁ ଥରେ,
କନକା ପ୍ରଜାଙ୍କ ଶକ୍ତ ଉଙ୍ଗାନାରେ ।
ଆଳ୍କିଁଣି ପିଠିରୁ ପ୍ରହାର ପରାସ,
ହିତ ପାଇଥାନ୍ତ ପବ୍ୱଣେ ଆଶ୍ୱାସ ।

+ + +

ଶୁଣିଭ ଚଉଦିଗେ କାତର ଚକ୍ରାର,
ପଳାଏ ପରଜା ଛାଡ଼ି ଘର ଦ୍ୱାର ।
ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ,
ଉଠଇ ଗୋ ଗୋଷ୍ଠେ ବିକଟାଳ ରାବ,
ମହା ବିପଦିଏ, ମହା ବିଭୀଷିକା,
କମ୍ପେ ମହାତଙ୍କେ ଦୁଃଖିନୀ କନକା ।"

ଏହିପରି 'ଦୁଃଖିନୀ କନକା'ର ମର୍ମନ୍ତୁଦ ଅତ୍ୟାଚାରକୁ ଉଲ୍ଲେଖ କରି ସେହି ଖୋଲା ଅଧିବେଶନରେ ବାଞ୍ଛାନିଧି ସ୍ୱରଚିତ ସଂଗୀତ ବୋଲିଥିଲେ—

"କେତେ ଦିନ ଆଉ ଦୁଃଖିନୀ କନକା
ଅନାଥ ଯାତନା ସହିବ,
ଦୁଃଖ ସହିବାକୁ ଦୁଃଖିନୀ ଲାଗିଛେ
ଲିହିଥିଲା ବିଧା ଦରବ ।୦।

କର ଦେଇ ଦେଇ ସାରିଛୁ ସମ୍ବଳ,
ମାଡ଼ ଖାଇ ଖାଇ ହଟିଗଲୁ ବଳ ।
ଆହା ବୋଲିବାକୁ ସାହା କେହି ନାହିଁ
କାହା ଆଗେ ଦୁଃଖ କହିବ ।୧।

ପଞ୍ଜାବ କାହାଣୀ ଶୁଣିଥିଲ କାନେ
କନକାର ଲୀଳା ଦେଖୁଛ ନୟନେ
ଶତ ଅତ୍ୟାଚାର କନକାର ତୁଳେ ପଞ୍ଜାବଙ୍କ ସରି ହୋଇବ ।୨।

କନକା ରାଇଜ ଜମିଦାରୀ ଗ୍ରାମ,
ଏତେ ଅତ୍ୟାଚାର ଏତେ ବଳାତ୍କାର,
ହୋଇଥାନ୍ତା ଯଦି ମହାଶ୍ମଶାନ କେଁପୁର କି ଥାନ୍ତା କିଏ କହିବ ।୩।

ଅତ୍ୟାଗ୍ରସ୍ତ ନର ପିଶାଚ ମାନସ,
ଅତ୍ୟାଚାରେ ଯିଏ ଲଭଇ ସନ୍ତୋଷ
ପାପୀ ପାପ-କର୍ମ ଦେଖେ ନାହିଁ କରିଲେ ଆହାରକ ତାକୁ କୁଚନ । ୪ ।

ଦୁଃଖ ସହ୍ୟ ସହ୍ୟ କନକା ରମଣୀ,
ଅହଲ୍ୟା ସୁନ୍ଦରୀ ହୋଇଲେ ପାଷାଣୀ
ନାହିଁକି ଭାରତେ କେହି ବୀର-ରାମ-ପାଦ ପରଶେ ଉଦ୍ଧାରିବ । ୫ ।

ତା ଦୁଃଖ ଫେଡିବା ପାଇଁ ଗୋପବନ୍ଧୁ
ଉତ୍କଳର ପ୍ରାଣ ଦୀନ ଜନ ବନ୍ଧୁ
ବରିନେଲେ ଦୀର୍ଘ କାରାଗାର ଦଣ୍ଡ ନାହିଁ କେହି ଏହା ଦେଖିବ ।୬।

ନାହିଁକି ଉତ୍କଳେ ଦଶଟି ଅକାଳୀ
ବାଇବାକୁ ବୀର ବାଇଦ କାହାଳୀ
ହୁଅନ୍ତା ଦେଖନ୍ତେ ନାଗପୁର ଜଙ୍ଗି ଗୁରୁଦ୍ୱାର ମହିମା ଆହବ ।'' ।୭।

ବାଞ୍ଛାନିଧିଙ୍କର ସେହି ଉଦ୍ଦାମ, କାଗରଣ ତଥା କରୁଣାତ୍ମକ ସଙ୍ଗୀତ ଶ୍ରବଣ କରି ଗୋପବନ୍ଧୁଙ୍କ ଚକ୍ଷୁଦ୍ୱୟ ସଜଳ ହୋଇ ଆସିଥିଲା । ସେ ଆଉ କୋହ ସମ୍ବରଣ କରି ନପାରି ବାଞ୍ଛାନିଧିଙ୍କୁ ଆଲିଙ୍ଗନ କରି କାନ୍ଦି ଉଠିଥିଲେ-'' ତୁମେ ବାଞ୍ଛାନିଧି କନକାର ଦୁଃଖ, ଯନ୍ତ୍ରଣା, କଷ୍ଟ, ନିର୍ଯାତନା ଯେଉଁ ପରିମାଣରେ ଅନୁଭବ କରି ପାରିଛ, ମୁଁ ସେତେ ପରିମାଣରେ ଅନୁଭବ କରିପାରି ନାହିଁ । କାରଣ, ମୁଁ ଜୀବନର ଅନେକ ସମୟ ବନ୍ଦୀ ହୋଇ ଜେଲ୍‌ରେ ରହିଗଲି ।''

''ସେହି ସମ୍ମିଳନୀରେ ବାଞ୍ଛାନିଧି ବାବୁ ଯେଉଁ ଗୀତ ବୋଲିଥିଲେ ତାକୁ ଶୁଣି ସଭାରେ ଉପସ୍ଥିତ ପ୍ରାୟ ସମସ୍ତେ କାନ୍ଦି ପକାଇଲେ'' (୯) । ସତ୍ୟବାଦୀ ବନବିଦ୍ୟାଳୟର ପୁରାତନ ଛାତ୍ର ଓ କର୍ମୀ ଶ୍ରୀ ନନ୍ଦକିଶୋର ଦାସ ଏହି ପ୍ରସଂଗରେ ତାଙ୍କର 'ବନ୍ଧୁସ୍ମୃତି' ପ୍ରବନ୍ଧରେ ଲେଖିଛନ୍ତି- ''ଯେତେବେଳେ ବାଞ୍ଛାନିଧି ବାବୁ ବୋଲିଲେ, ସେତେବେଳେ ତାଙ୍କର (ଗୋପବନ୍ଧୁ) ଓ ସଭାପତି ଆଗ୍ନେୟ ରାୟଙ୍କ ସମେତ ଶ୍ରୋତୃମଣ୍ଡଳୀଙ୍କୁ ବିଶେଷ ଅଭିଭୂତ କରିଥିଲା ଓ ସଭାପତିଙ୍କ ଆକାର ଇଙ୍ଗିତରୁ ସ୍ପଷ୍ଟ ଜଣା ପଡ଼ିଲା ସେ ଯେପରି ବାଞ୍ଛାନିଧି ବାବୁଙ୍କୁ ଆଲିଙ୍ଗନ କରିବାକୁ ଉଦ୍ୟତ ।''

ଏହି ସ୍ମୃତିମୟ ଘଟଣାକୁ ପ୍ରକାଶ କରି କନକା ପ୍ରଜାମେଳର ନେତା ଶ୍ରୀ ଚକ୍ରଧର ବେହେରା 'କବି ବାଞ୍ଛାନିଧି' ଶୀର୍ଷକ କବିତାରେ ଲେଖିଛନ୍ତି—

---

(୯) ଜାତୀୟ କବି ବୀର କିଶୋର— ପୃ: ୬୪ ।

+ + +

ବାଞ୍ଛାନିଧିଙ୍କର ସେ ଅମର ଗୀତ
ଦେଲା ମନେ ନବବଳ,
ଗାଇଥିଲେ ସେତ ଦୁଃଖିନୀ ଜନନୀ
ଦାରୁଣ ଦୁଃଖ କାହାଣୀ,
ଉତ୍କଳ ପ୍ରଦେଶ ସମ୍ମିଳନୀ ପୀଠେ
ନୟନୁ ଝରାଇ ପାଣି,
ତରଳାଇ ଦେଲା ସେ ସଙ୍ଗୀତ ତାନ
ସଭାଜନ ମନ ପ୍ରାଣ,
ଝରିଲା ଲୋତକ ସରବ ନୟନୁ
ସଭା ହେଲା କମ୍ପମାନ ।" (୧୦)

ଜନ କବି ବାଞ୍ଛାନିଧି ପଣ୍ଡିତ ଗୋପବନ୍ଧୁଙ୍କ ସହିତ ଅନେକ ଥର ବନ୍ୟା ସମୟରେ ନୌକାରେ ଭ୍ରମଣ କରି ବିପଦ ଗ୍ରସ୍ତ ଲୋକମାନଙ୍କୁ ଚୂଡ଼ା, ଗୁଡ଼ଲ, ଲୁଗା ଆଦି ବିତରଣ କରିଥିଲେ । ତାଙ୍କ ସହିତ ହରେକୃଷ୍ଣ ମହତାବ ଓ ଗୋପବନ୍ଧୁ ଙ୍କ ଧିସ୍ୱା ମଧ୍ୟ ଯାଉଥିଲେ । ସେ ତାଙ୍କର ଲେଖନୀ ମାଧ୍ୟମରେ ବନ୍ୟାର ତାଣ୍ଡବ-ଲୀଳା ଲୋକଲୋଚନକୁ ଆଣିବା ସଙ୍ଗେ ସଙ୍ଗେ ଇଂରେଜ ସରକାରଙ୍କର ଶାସନ, ପରିଚାଳନାଗତ ଅପାରଗତାକୁ ଦୃଢ଼ କଣ୍ଠରେ ସମାଲୋଚନା କରୁଥିଲେ । ଏହାର ପ୍ରଭାବ ମଧ୍ୟ ବହୁ ପରିମାଣରେ ଇଂରେଜ ଶାସକ ଗୋଷ୍ଠୀଙ୍କ ଉପରେ ପଡ଼ୁଥିଲା ଏବଂ ତଦନୁଯାୟୀ ସେମାନେ କର୍ମ ତତ୍ପର ହୋଇ ଉଠୁଥିଲେ ।

ଇଂରେଜ ସରକାର ମରୁଡ଼ି ଓ ଫସଲ ହାନି ଇତ୍ୟାଦିର ପ୍ରକୃତ ବିବରଣୀକୁ ଲୁଚାଇ ଅଳ୍ପ ପରିମାଣରେ ସମ୍ପତ୍ତି ନଷ୍ଟ ହୋଇଛି ବୋଲି ମିଥ୍ୟା ବିବରଣୀ ପ୍ରକାଶ କରୁଥିଲେ । ଏଥିରେ ଗୋପବନ୍ଧୁ ଘୋର ପ୍ରତିବାଦ କରୁଥିଲେ । ବାଞ୍ଛାନିଧି ମଧ୍ୟ ଏ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରୁଥିଲେ । ସେଥିପାଇଁ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ସେ ଏକ ସଂଗୀତରେ ଗୋଟିଏ ସ୍ଥାନରେ ଲେଖିଛନ୍ତି—

"ଆମ୍ଭେ କି ବୁଝିବୁଁ ତୁମ୍ଭ ହୃଦମନ ବୁଝିଥିଲେ ପୁରୀବାସୀ ଗଣ,
ଦୁର୍ଭିକ୍ଷ ଦାଉରେ ଯାଉଥିଲେ ମରିଥିଲ ଯେ ଉଦ୍ଧରି

(୧୦) ଜାତୀୟ କବି ଅଭିନନ୍ଦନ— ୧୯୭୩-ପୃ: ୨୫

ଭୁଞ୍ଜିବଲେ, ରଙ୍କ ରତନରେ
ରଙ୍କ ପାଇଁ ତୁମ୍ଭ ଜୀବନ ହେ ।”
( ବା: ପ: / ପୃ: ୧୬୧ )

ସେ ନିଜେ ଅନେକ ଥର ମୁଷ୍ଟି ଚାଉଳ ସଂଗ୍ରହ କରି ପିଠାପଣା ଆଦି ତିଆରି କରି ମରୁଡ଼ିଗ୍ରସ୍ତ ଅଞ୍ଚଳକୁ ଯାଇ ବୁଭୁକ୍ଷୁ ବ୍ୟକ୍ତିମାନଙ୍କୁ ବାଣ୍ଟିଦେଇ କରିଥିଲେ । ଏ ସମସ୍ତ କ୍ଷେତ୍ରରେ ଉତ୍କଳମଣି ଗୋପବନ୍ଧୁ ଯେ 'ଆଦର୍ଶ' ଥିଲେ ଏହା କହିବା ବାହୁଲ୍ୟ ମାତ୍ର । ତେଣୁ ତାଙ୍କୁ ଉତ୍କଳମଣିଙ୍କ 'ଦକ୍ଷିଣ ହସ୍ତ' କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୋପବନ୍ଧୁଙ୍କ ମୃତ୍ୟୁରେ ବାଞ୍ଛାନିଧିଙ୍କ ଅନ୍ତରାତ୍ମା କାହୁଁନି ଉଠିଥିଲା । ଗୋପବନ୍ଧୁଙ୍କ ଶବସତ୍କାର ବେଳେ ସେ ଯେଉଁ 'ପଟୁଆର ସଙ୍ଗୀତ' ରଚନା କରିଥିଲେ, ସେଥିରେ ସେ ଲେଖିଥିଲେ—

"ହୃଦୟ ବେଦନା ଉତ୍କଳେ ଆଜି
ପାଶୋରି ନହି,
ଜଳୁଛି ଅନ୍ତରେ ଚିତା ଲଭିଛି ଶବକୁ ବହି ।"

ସେ ପୁଣି ତାଙ୍କ ବିଷୟରେ ଲେଖିଛନ୍ତି—

"ଉତ୍କଳ ଗଳାହାର କଳା-ମାଣିକ
କୋଟି ସନ୍ତାନ ମେଳେ ଗୋଟି ଗୁଣିକ ହେ
ସେ ଯେ ଉତ୍କଳମଣି ,
ମଣିହରା କି ଏବେ ହେଲା ଜନନୀ ହେ ।

+ + +

ଝୁରୁଛି ବାଞ୍ଛାନିଧି ନୀଳ ଅଚଳେ
ଲହରୀ ଗାଉ କମ ଅତି ଚଞ୍ଚଳ ହେ
କାହିଁ ବକୁଳ ବନ
ସତ୍ୟବାଦୀ ନିକୁଞ୍ଜେ ପଲ୍ଲବ-ଘନ ହେ ।"

## ଡକ୍ଟର ହରେକୃଷ୍ଣ ମହତାବ ଓ ବାଞ୍ଛାନିଧି

ବାଞ୍ଛାନିଧି କିଛି ସମୟ ଭଦ୍ରକ ହାଇସ୍କୁଲରେ ଶିକ୍ଷକତା କଲାବେଳେ ହରେକୃଷ୍ଣ ମହତାବ ତାଙ୍କର ଛାତ୍ର ଥିଲେ । ତେଣୁ ଡ଼କ୍ଟର ମହତାବ ତାଙ୍କର ଆତ୍ମ-ଜୀବନୀ 'ସାଧନାର ପଥେ' ପୁସ୍ତକରେ ସ୍ପଷ୍ଟ ଲେଖିଛନ୍ତି—"ବାଞ୍ଛାନିଧି ବାବୁ ଓକିଲାତି

ପଢ଼ିବା ଆଗରୁ ଅଲ୍‌ଡେନ ପାଇଁ ଭଦ୍ରଖ ହାଇସ୍କୁଲରେ ଆମର ଶିକ୍ଷକ ଥିଲେ । ତେଣୁ ସେ ମୋର ମାନ୍ୟଥିଲେ । + + + " (୧୧) । ମାତ୍ର ୧୯୨୧ ମସିହାର ଅସହଯୋଗ ଆନ୍ଦୋଳନରେ ଦୁହିଁଙ୍କ ସଂପର୍କ ଗୁରୁ ଓ ଶିକ୍ଷକରୁ ସହକର୍ମୀ ସ୍ତରକୁ ଘନିଷ୍ଠ ହୋଇ ଆସିଲା । ବାଞ୍ଛାନିଧି ଭଦ୍ରକ ସବ୍‌ଡିଭିଜନ୍ କଂଗ୍ରେସ୍ ଆଶ୍ରମର ନେତୃତ୍ୱ ନେବାବେଳେ ମହତାବ ତାଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କ ସହିତ ଘନଶ୍ୟାମ ସାହୁ, ଉପେନ୍ଦ୍ର ନାଥ ପଣ୍ଡା ଓ ମୌଲବୀ ମହମ୍ମଦ ହନିଫ୍ ପ୍ରମୁଖ କଂଗ୍ରେସ କାର୍ଯ୍ୟ କରୁଥିଲେ । ବାଞ୍ଛାନିଧି ମହତାବଙ୍କ ଠାରୁ ମାତ୍ର ଦୁଇ, ତିନିବର୍ଷ ବଡ । ଦୁହେଁ ଏକତ୍ର ଅସହଯୋଗ ଆନ୍ଦୋଳନରେ ସଂଗ୍ରାମୀ ସାଜି ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରୁଥିଲେ । ବାଲେଶ୍ୱର ଜିଲ୍ଲା ବୋର୍ଡରେ କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠ ଲାଭ କରିଥିବାରୁ ଜିଲ୍ଲାବୋର୍ଡର ଚେୟାରମେନ୍ ରୂପେ ସେ ନିର୍ବାଚିତ ହେଲେ । ଏହି ସମୟରେ ଶ୍ରୀ ଗୌରାଙ୍ଗ ଚନ୍ଦ୍ର ଦାସ ତାଙ୍କର ପାର୍ସନାଲ ଆସିଷ୍ଟାଣ୍ଟ ଥିଲେ । ଗୌରାଙ୍ଗ ବାବୁ ତାଙ୍କ ସାନଭାଇ ସଦୃଶ । ତାଙ୍କ ବିଷୟରେ ପରେ କୁହାଯାଉଛି । ସେ ଏହି ସମୟରେ ଖାଇପିଇ ମାସକୁ ଦଶ/ପନ୍ଦର ଟଙ୍କା ନେଉଥିଲେ । ଗତ୍ରଙ୍କ ବାଞ୍ଛାନିଧି ମାସକୁ ପ୍ରାୟ ୬୦ଏ ଟଙ୍କାରୁ ଏକ ଶହ ଟଙ୍କା ମଧ୍ୟରେ ପାଉଥିଲେ । ସେ ଟଙ୍କା ଘରକୁ ନ ଆସି ବାହାରେ ବାହାରେ ଖର୍ଚ୍ଚ ହୋଇଯାଉଥିଲା । ଏଥିରୁ ଆଠ, ଦଶଜଣ ସ୍କୁଲ ପିଲାଙ୍କୁ ଦରମା ଦିଆଯାଉଥିଲା । ଗୌରାଙ୍ଗ ବାବୁ ତାଙ୍କର କୋଷାଧ୍ୟକ୍ଷ ଥାଆନ୍ତି । ଏହା ୧୯୨୫-୨୬ ମସିହାର କଥା । (୧୨)

୧୯୨୬ ମସିହା ମେ' ମାସ ୨୩ ତାରିଖରେ ଭଦ୍ରକରେ ବାଲେଶ୍ୱର ଜିଲ୍ଲା ରାଜନୈତିକ ଧର୍ମିଳନୀ ଶ୍ରୀ ନନ୍ଦକିଶୋର ଦାସଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ବାଞ୍ଛାନିଧି ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ହରେକୃଷ୍ଣ ମହତାବ ସେତେବେଳେ ବାଲେଶ୍ୱର ଜିଲ୍ଲା ମୁକ୍ତି ସଂଗ୍ରାମରେ ନେତୃତ୍ୱ ନେଉଥିଲେ । ତାଙ୍କ ପ୍ରସ୍ତାବ ଅନୁସାରେ ଜିଲ୍ଲାର ବାସିନ୍ଦା ସଭାପତି ହେଲେ । ନନେତ୍ ପୂର୍ବରୁ ଓଡ଼ିଶା ସ୍ତରରେ ନେତାଙ୍କୁ ସଭାପତି ରୂପେ ନିର୍ବାଚନ କରାଯାଉଥିଲା । ନନ୍ଦକିଶୋରଙ୍କ ଉଦ୍ଦେଶ୍ୟରେ ବାଞ୍ଛାନିଧି ଗାଇଥିଲେ—

"ଦାସ ନନ୍ଦକିଶୋର, ଆସହେ ସୁଗୁଣୀ ପ୍ରିୟ ଅତିଥି ବର,
(ଆଜି) ପାଇଲେ ତୁମର ସଂଗ ସୁମଧୁର ଭଦ୍ରକ ବାସୀର ।
+ + +

---

(୧୧) ସାଧନାର ପଥେ—ପୃ. ୪୪ ।

(୧୨) ସ୍ୱର୍ଗୀୟ ବାଞ୍ଛାନିଧି ବାବୁ ଓ ମୁଁ – ଶ୍ରୀ ଗୌରାଙ୍ଗ ଚନ୍ଦ୍ର ଦାସ ( ପୃଷ୍ଠା-୧୬ )

ତୁମ୍ଭର ତ୍ୟାଗ ଭାବିଲେ ମନେ, ଗରବ ଦମ୍ଭ ଉପୁଜେ ପ୍ରାଣେ,
ସରଳ ଅନ୍ତର ସୁମଧୁରେ ଗିର କ୍ଷୀଣ ଶଙ୍କର ବାଧ୍ୟାବଳେ ବୀର
ଏଭଳି ସନ୍ତାନ ଲଭି ଧନ୍ୟ ଧନ୍ୟ ମଣେ
ଏ ଉତ୍କଳ ସାରା ବାଲେଶ୍ୱର ।''

ପଣ୍ଡିତ ଗୋପବନ୍ଧୁ, କୁଳବୃଦ୍ଧ ମଧୁସୂଦନ, କାନ୍ତ କବି ଲକ୍ଷ୍ମୀକାନ୍ତ, ହରେକୃଷ୍ଣ ମହତାବ, ମୁକୁନ୍ଦ ପ୍ରସାଦ ଦାସ, ନୀଳାମ୍ବର ଦାସ, ସର୍ଦ୍ଦାର ସୁରେନ୍ଦ୍ର ଦାସଙ୍କ ସମେତ ବହୁ କଂଗ୍ରେସ୍ ନେତା ଏଥିରେ ଯୋଗ ଦେଇଥିଲେ । ପ୍ରଥମ ଦିନ ବର୍ଷା ହେବାରୁ ୨ୟ ଦିନ ସମ୍ମିଳନୀ ଆରମ୍ଭ ହେଲା । ମଧୁସୂଦନ 'ଖଦୀ ପ୍ରଦର୍ଶନୀ' ଉଦ୍‌ଘାଟନ କରିଥିଲେ । ଏହା ଉପଲକ୍ଷେ ବାଞ୍ଛାନିଧି ଗୀତ ଗାଇଲେ—

''ଆମ୍ଭର ଦୁଃଖ ଶୁଣି ଶୁଣି ନିରତେ ମୋହନ ଝୁରୁଛନ୍ତେ,
ବୁଝାଇ ବୁଝାଇ ବୁଢ଼ିକୁ ହଜାଇ ଦେଲେ ଚେତେବେଳେ ନ ପାରୁଛନ୍ତେ ।

\+ \+ \+

ପିନ୍ଧିବ ଖଦର, ହେବ ଦୁଃଖ ଦୂର
ଭାଇଏ ପାଇବ ଆହାର
ଉଦାସୀ ହୋଇବୁ ନରଇ ଏତିକି ଅଳି ମୁଁ କରୁଛିରେ ।''

( ବା. ଗ୍ର. , ପୃ. ୧୭୬ )

ପାଟଣା କାଉନ୍‌ସିଲ୍‌ର ସଦସ୍ୟ ରୂପେ ମହତାବ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ବେଳେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ରୂପେ ପ୍ରବୀଣ ଆଇନଜୀବୀ ଶ୍ରୀ ଭାଗବତ ପ୍ରସାଦ ସାମନ୍ତରାୟ ଠିଆ ହୋଇଥିଲେ । ମାତ୍ର କବି ବାଞ୍ଛାନିଧିଙ୍କ ଉଦ୍ଦାମ ସଂଗୀତ, ବକ୍ତୃତା ତଥା ବ୍ୟକ୍ତିତ୍ୱ ମହତାବଙ୍କୁ ସେଦିନ ବିଜୟୀ କରାଇଥିଲା । ମହତାବ ଶତାଧିକ ଭୋଟ ପାଇଥିଲେ । ଏ ସମସ୍ତ ମୂଳରେ ବାଞ୍ଛାନିଧିଙ୍କ ଅବଦାନ ଆଦୌ ଭୁଲିହେବାର ନୁହେଁ ।

ଏତଦ୍‌ ବ୍ୟତୀତ ବିଭିନ୍ନ ସାଧାରଣ ସଭା ଓ ସମ୍ମିଳନୀରେ ଦୁହେଁ ଦୁହିଁଙ୍କର କ୍ରମଶଃ ନିକଟତର ହୋଇ ଆସିଥିଲେ ।

### ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଓ ବାଞ୍ଛାନିଧି

ଶ୍ରୀ ଅଟଳବିହାରୀ ଆଚାର୍ଯ୍ୟ ଥିଲେ କଟକର ଜଣେ ପ୍ରସିଦ୍ଧ ଡାକ୍ତର, ସେ ମଧ୍ୟ ଥିଲେ ଜଣେ ଜାତୀୟ କର୍ମୀ । ଗାନ୍ଧୀ ଓ ଗୋପବନ୍ଧୁଙ୍କ ଆହ୍ୱାନରେ ସେ

ଅନୁପ୍ରାଣିତ ହୋଇ ଅସହଯୋଗ ଆନ୍ଦୋଳନରେ ଯୋଗଦାନ କରି ଦେଶ ମାତୃକାର ସେବାରେ ନିଜକୁ ଲଗାଇବାକୁ ସେ ଶପଥ ନେଇଥିଲେ । ତେଣୁ ସେ କଂଗ୍ରେସରେ ଯୋଗଦାନ କଲେ ଓ ଜଣେ ସକ୍ରିୟ ସଦସ୍ୟ ରୂପେ କାର୍ଯ୍ୟ ଆରମ୍ଭ କରିଦେଲେ । କଟକର ନେତା ସମ୍ମିଳନୀ, ଉତ୍କଳ ସମ୍ମିଳନୀ, କଟକ ଜିଲ୍ଲାର ମଧ୍ୟ ପାଟଣା ସମ୍ମିଳନୀ ପ୍ରଭୃତିରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ଉଦ୍ଦକଣ୍ଠିତ 'ଇଦ୍‌ଗା ମସଜିଦ୍‌'ରେ ଏକ ବିରାଟ ସାଧାରଣ ସଭାର ଆୟୋଜନ କରାଯାଇଥିଲା ବାଞ୍ଛାନିଧିଙ୍କ ନେତୃତ୍ୱରେ । ପୋଲିସ୍ ପୂର୍ବରୁ ସମ୍ବାଦ ପାଇ ୧୪୪ ଧାରା ଜେଲ୍ହି ଅଞ୍ଚଳରେ ଜାରି କରିଦେଲେ । ତେଣୁ ସଭା କରିବା ଅସମ୍ଭବ ହୋଇ ପଡ଼ିଲା । ମାତ୍ର ଗୋପବନ୍ଧୁ କହିଥିଲେ— "ପଛଘୁଞ୍ଚା ନାହିଁ ବୀରର ଜାତକେ ।" ବାଞ୍ଛାନିଧି, ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଏବଂ ଗୋବିନ୍ଦ ମିଶ୍ର [କଟକ] ମଚକାଚଙ୍କ ୧୪୪ ଧାରା ଭଙ୍ଗ କରି ଗିରଫ୍ ହୋଇ କଟକ ଜେଲ୍‌କୁ ଗଲେ । ପଥ ମଧ୍ୟରେ ସ୍ଥାନେ ସ୍ଥାନେ ସେମାନଙ୍କୁ ପୁଷ୍ପମାଲ୍ୟ ଅର୍ପଣ କରାଯାଇ ସମବେତ କଣ୍ଠରେ ସେମାନଙ୍କର ଜୟଗାନ କରାଯାଇଥିଲା । ସେମାନେ କଟକ ଜେଲରେ ଛଅମାସ ବନ୍ଦୀ ହୋଇ ରହିଥିଲେ । ତା'ପରେ ମୁକ୍ତି ପାଇବା ମାତ୍ରେ ବାଞ୍ଛାନିଧି ଦୁଇଗୁଣ ଉତ୍ସାହ ଓ ନିର୍ଭୟରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ ।

ଓଡ଼ିଶା କାଉନ୍‌ସିଲ୍‌ର ସଦସ୍ୟ ନିର୍ବାଚନରେ କଂଗ୍ରେସ୍ ତରଫରୁ ଅଟଳ-ବିହାରୀ ଆଚାର୍ଯ୍ୟ ଠିଆ ହୋଇଥିଲେ । ତାଙ୍କ ପ୍ରତିଦ୍ୱନ୍ଦ୍ୱୀ ଥିଲେ କଟକସ୍ଥିତ ଖଣ୍ଡସାହିର ପ୍ରତିପତ୍ତିଶାଳୀ ଜମିଦାର ଗୋପ ମିଶ୍ର, ସେ କିପରି ଆଚାର୍ଯ୍ୟଙ୍କୁ ପରାସ୍ତ କରିବେ, ସେଥିପାଇଁ ସେ ଭୋଟର ମାନଙ୍କୁ ପ୍ରାୟ ପଚିଶ ହଜାର ଟଙ୍କା ବ୍ୟୟରେ ମିଷ୍ଟାନ୍ନ ବଣ୍ଟନ ଏବଂ ମନୋରଞ୍ଜନ ପାଇଁ ଶ୍ରେଷ୍ଠ ପାଲା, ଯାତ୍ରା, ଗୋଟିପୁଅ, ନୃତ୍ୟ ଆଦି ଦ୍ୱାରା ସନ୍ତୁଷ୍ଟ କରାଇବାକୁ ଲାଗିଲେ । ତେଣୁ ବିଜୟ ଲାଭ କରିବା ତାଙ୍କ ପକ୍ଷରେ ଏକ ପ୍ରକାର ନିଶ୍ଚିତ ହୋଇଗଲା । ଏପରି ପରିସ୍ଥିତିରେ ଶ୍ରୀଯୁକ୍ତ ଆଚାର୍ଯ୍ୟ ବାଞ୍ଛାନିଧିଙ୍କୁ ନିମନ୍ତ୍ରଣ କଲେ ଏବଂ ଅବସ୍ଥା ବିଷୟରେ ସୂଚନା ଦେଲେ । ବାଞ୍ଛାନିଧି ତାଙ୍କ ନିମନ୍ତ୍ରଣ ରକ୍ଷା କରି ଆସି ସଭାମାନ ଅନୁଷ୍ଠିତ କରି ଏବଂ ଜାତୀୟ ସଂଗୀତଗାନ କରି ଯାହା ଅସମ୍ଭବ, ତାକୁ ସମ୍ଭବ କରାଇଥିଲେ । ଏହା ମହାନ୍ ପ୍ରତିଭା ମାନଙ୍କ ପକ୍ଷେ ସମ୍ଭବ । ବାଞ୍ଛାନିଧି ମଧ୍ୟ ଏହିପରି ମହାନ୍ ପ୍ରତିଭାବାନ୍ ପୁରୁଷ ଥିଲେ । ଅଟଳବିହାରୀ ଆଚାର୍ଯ୍ୟ ଶହସ୍ରାଧିକ ଭୋଟ୍‌ରେ ପ୍ରତିଦ୍ୱନ୍ଦ୍ୱୀ ହୋଇ ଗୋପ ମିଶ୍ରଙ୍କୁ ଅକ୍ଳେଶରେ ପରାସ୍ତ କରିଦେଲେ । ସେହି ଦିନଠାରୁ ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଓ ଗୁରୁଣ କବି ବାଞ୍ଛାନିଧିଙ୍କ ସଂପର୍କ ଅଧିକ ଘନିଷ୍ଠ ହୋଇ ଆସିଲା ।

## ନବକୃଷ୍ଣ ଚୌଧୁରୀ ଓ ବାଞ୍ଛାନିଧି

ପ୍ରଥମତଃ, ନବକୃଷ୍ଣ ଚୌଧୁରୀଙ୍କ ସହିତ ତାଙ୍କର ପରିଚୟ ହୁଏ କଟକର କଂଗ୍ରେସ୍ ସମ୍ମିଳନୀରେ । ତାପରେ ବାଞ୍ଛାନିଧିଙ୍କ ସହିତ ବାଲେଶ୍ୱର, ଜଲେଶ୍ୱର, ବସ୍ତା, ସୋର, ମର୍ଚ୍ଚୋ, ଭଦ୍ରକ, କଟକ, ପୁରୀ, ସମ୍ବଲପୁର, ଛତ୍ରପୁର, ଢେଙ୍କାନାଳ' ସୁକିନ୍ଦା ଆଦି ସ୍ଥାନରେ ବିଭିନ୍ନ ସଭା ସମିତି ମାନ ଅନୁଷ୍ଠିତ କରି ଅସହଯୋଗ ଆନ୍ଦୋଳନ ଚଳାଇ ରଖିଥିଲେ । ଫଳରେ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ଅଧିକ ଦୃଢ଼ୀଭୂତ ହୋଇ ଆସିଲା ।

ବିଶେଷତଃ, ସେ ଯେତେବେଳେ ସୁକିନ୍ଦାରେ କଂଗ୍ରେସ୍ କାଉନସିଲର ସଦସ୍ୟ ପାଇଁ ଠିଆ ହେଲେ, ସେତେବେଳେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ସୁକିନ୍ଦାର ପ୍ରସିଦ୍ଧ ମେନେଜର ଗୋବିନ୍ଦ ବାବୁ । ଗୋବିନ୍ଦ ବାବୁ ସେ ଅଞ୍ଚଳରେ ଖୁବ୍ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ସେତେବେଳକୁ ନବକୃଷ୍ଣ ଚୌଧୁରୀ ଏପରି ସୁପରିଚିତ ହୋଇନଥିଲେ । ତେଣୁ ତାଙ୍କ ପକ୍ଷରେ ବିଜୟ ଲାଭ କରିବା ଏକ ସ୍ୱପ୍ନ ଥିଲା । ମାତ୍ର ଏହି ସ୍ୱପ୍ନକୁ ସତ୍ୟରେ ପରିଣତ କରିଥିଲେ ବାଞ୍ଛାନିଧି । ନବକୃଷ୍ଣ ଚୌଧୁରୀ ବାଞ୍ଛାନିଧିଙ୍କୁ ବାରମ୍ବାର ନିମନ୍ତ୍ରଣ କରିଥିଲେ । ଅବଶେଷରେ ବାଞ୍ଛାନିଧି ଭଦ୍ରକ କଲେଜ, ଚାନ୍ଦବାଲି, ଭଣ୍ଡାରୀ ପୋଖରୀ, ବାସୁଦେବପୁର ଆଦି ନିର୍ବାଚନ ମଣ୍ଡଳୀର କାର୍ଯ୍ୟକ୍ରମକୁ ବାତିଲ କରି ସୁକିନ୍ଦା ଗଲେ । ବାଞ୍ଛାନିଧିଙ୍କ ଜାତୀୟ ସଙ୍ଗୀତ ଓ ବକ୍ତୃତା ଜନତା ମଧ୍ୟରେ ନବ ଜାଗରଣ ସୃଷ୍ଟି କରିଥିଲା । ଏହି ସବୁ ସଂଗୀତ ଚକ୍ରକୁ କିପରି ଉଷ୍ମତାରେ ଭରି ଦେଉଥିଲା, ତାହା ଡକ୍ଟର କବି ଚନ୍ଦ୍ର କାଳୀ ଚରଣ ପଟ୍ଟନାୟକଙ୍କ ଆତ୍ମ ଜୀବନୀ ଗ୍ରନ୍ଥ 'କୁମ୍ଭାର ଚକ'ରେ ଏ ସଂପର୍କରେ ଯାହା ଲେଖିଛନ୍ତି, ତାହା ଏଠାରେ ଉଦ୍ଧାର କଲେ ଅପ୍ରାସଂଗିକ ହେବ ନାହିଁ । ସେ ଲେଖିଛନ୍ତି—"ଅନେକ ବେଳରେ ଅପାଶୋରୀ କବି ବାଞ୍ଛାନିଧି ଆସି ବୈଠକରେ ଯୋଗ ଦେଇ ସ୍ୱଦେଶୀ ଓ ପ୍ରେମଗୀତ ସୁଲଳିତ କଣ୍ଠରେ ଗାଆନ୍ତି । + + + କବି ବାଞ୍ଛାନିଧି ମହାନ୍ତିଙ୍କ ଗୀତ ଲୋକଙ୍କ ରକ୍ତ ଉଷ୍ମ କରି ଦେଉଥାଏ" (୧୩) । ସୁକିନ୍ଦାରୁ ନବକୃଷ୍ଣ ଚୌଧୁରୀ ଶ୍ରୀହରସାଧିଙ୍କ ଭୋଟରେ ଗୋବିନ୍ଦ ବାବୁଙ୍କୁ ପରାସ୍ତ କରି ଜୟଯୁକ୍ତ ହୋଇଥିଲେ । ଏହାଦ୍ୱାରା ଦୁହିଁଙ୍କ ସଂପର୍କ ଅଧିକ ଘନିଷ୍ଠ ହୋଇ ଆସିଥିଲା ।

---

(୧୩) କୁମ୍ଭାର ଚକ—ଡକ୍ଟର କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକ— କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର—୧୯୭୫—ପୃ: ୨୪୪-୨୪୫ ।

## ଗୋପବନ୍ଧୁ ଚୌଧୁରୀ ଓ ବାଞ୍ଛାନିଧି—

ଗୋପବନ୍ଧୁ ଚୌଧୁରୀ କଲିକତା ବିଶ୍ୱବିଦ୍ୟାଳୟରେ ଗଣିତ ଶାସ୍ତ୍ରରେ ସର୍ବୋଚ୍ଚ ସ୍ଥାନାଧିକାର କରି ଯାଜପୁରରେ ଡେପୁଟି ମାଜିଷ୍ଟ୍ରେଟ୍ ଥିଲେ । ମାତ୍ର ପରେ ୧୯୨୧ ମସିହାରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଆହ୍ୱାନରେ ସେ ଅନୁପ୍ରାଣିତ ହୋଇ ଚାକିରୀରୁ ଇସ୍ତଫାଦେଇ କଂଗ୍ରେସ କର୍ମୀ ରୂପେ କାର୍ଯ୍ୟ କଲେ । କନିକାରେ ପ୍ରଜା ଅତ୍ୟାଚାର ସମୟରେ ବାଞ୍ଛାନିଧି ଏବଂ ଗୋପବନ୍ଧୁଙ୍କ ସଂପର୍କ କ୍ରମଶଃ ଘନିଷ୍ଠ ହୋଇ ଆସିଥିଲା । କଟକ, ପୁରୀ ଆଦି ଜିଲ୍ଲା ଏବଂ ବିଭିନ୍ନ ନେତା ସମ୍ମିଳନୀରେ ତାଙ୍କ ସହିତ ସଂପର୍କ ନିକଟ ହୋଇ ଆସିଥିଲା ।

ବାଲେଶ୍ୱର ଜିଲ୍ଲାର ଭଦ୍ରକ ସବ୍‌ଡିଭିଜନ୍ ଅନ୍ତର୍ଗତ ଏଡତାଳ ଗ୍ରାମରେ ଜମିଦାର ରାୟବାହାଦୂର ଈଶ୍ୱର ଚନ୍ଦ୍ର ଭୂୟାଁ ମହାପାତ୍ର କୃଷ୍ଣପୁରର ଦରିଦ୍ର ଗୋପାଳ ପ୍ରଜାମାନଙ୍କ ଉପରେ ଅକଥନୀୟ ଭାବରେ ଅତ୍ୟାଚାର ଆରମ୍ଭ କରି ଦେଇଥିଲେ । ସେମାନେ ଗୃହଶୂନ୍ୟ ହୋଇ ସମୁଦ୍ରର କୂଳ ଦେଶରେ ଅସହାୟ ଅବସ୍ଥାରେ ପଡ଼ି ରହିଲେ । ସେତେବେଳେ ବାଞ୍ଛାନିଧି ଏ ସମ୍ବାଦ ପାଇ ଭଦ୍ରକରୁ ତାଙ୍କ କର୍ମୀମାନଙ୍କୁ ନେଇ ଘଟଣା ସ୍ଥଳରେ ଉପସ୍ଥିତ ହେଲେ । ଦରିଦ୍ର ଗୋପାଳ ପ୍ରଜାମାନଙ୍କର ଆପତ୍ତି ଅଭିଯୋଗ ମାନଙ୍କୁ ଲେଖି ବିଭିନ୍ନ ସମ୍ବାଦ ପତ୍ର ତଥା ପତ୍ରିକାରେ ପ୍ରକାଶ କରିଥିଲେ । ସେ ଗୋପବନ୍ଧୁ ଚୌଧୁରୀ ଏବଂ ହରେକୃଷ୍ଣ ମହତାବଙ୍କୁ ଟେଲିଗ୍ରାମ କରି ଘଟଣା ସ୍ଥଳକୁ ଡକାଇ ପଠାଇଲେ । ଗୋପବନ୍ଧୁ ଚୌଧୁରୀ କୃଷ୍ଣପୁରର ଅମାନୁଷିକ ଅତ୍ୟାଚାରର ବିବରଣୀ ଲେଖି ଜିଲ୍ଲା ମାଜିଷ୍ଟ୍ରେଟ ମିଷ୍ଟର ଜୋନ୍‌ଷ୍ଟୋନ୍‌ଙ୍କ ନିକଟକୁ ପଠାଇଲେ । ଫଳରେ ମାଜିଷ୍ଟ୍ରେଟଙ୍କ ଠାରୁ ଜମିଦାରଙ୍କ ପାଖକୁ ଏହି ଦମନଲୀଳା ବନ୍ଦ କରିବାକୁ ନିର୍ଦ୍ଦେଶ ଆସିଲା । ତେଣୁ ଜମିଦାରଙ୍କ ଜୁଲମର ଅବସାନ ଘଟିଲା ।

## ॥ ପାଞ୍ଚ ॥

### ବିଦେଶୀ ବସନ ବର୍ଜନ

ମହାତ୍ମାଗାନ୍ଧୀଙ୍କ 'ସ୍ୱଦେଶୀ' ଆନ୍ଦୋଳନର ଏକ ବିଶିଷ୍ଟ ଅଂଗ ହେଲା— ପଞ୍ଚସୂତ୍ରୀ ବର୍ଜ୍ଜନ ( Five gold boycott. ) । ଏହି ପାଞ୍ଚଗୋଟି ବର୍ଜ୍ଜନ ହେଲା—ସରକାରୀ ପଦବୀ ବର୍ଜ୍ଜନ, ଶିକ୍ଷାନୁଷ୍ଠାନ ବର୍ଜ୍ଜନ, ବ୍ୟବସ୍ଥାପକ ସଭା ବର୍ଜ୍ଜନ, ବିଦେଶୀ ବସନ ବର୍ଜ୍ଜନ ଓ ମାଦକ ଦ୍ରବ୍ୟ ବର୍ଜ୍ଜନ । ବିଦେଶୀ ବସନ ବର୍ଜ୍ଜନ ମଧ୍ୟରେ କଂଗ୍ରେସ ଯେ କେବଳ ଇଂରେଜ ସରକାରଙ୍କ ବିରୁଦ୍ଧରେ ଅସହଯୋଗ କଲେ, ତା ନୁହେଁ, ନିଜେ ଯେପରି ସ୍ୱାବଲମ୍ବୀ ହୋଇ ପାରିବ, ସେଥିପାଇଁ ଅରଟରେ ସୂତାକାଟି ତନ୍ତରେ ବୁଣି ଖଦୀ ପିନ୍ଧିବା ମତ ମଧ୍ୟ ପ୍ରଚଳିତ ହେଲା । 'ହିନ୍ଦ୍ ସ୍ୱରାଜ୍ୟ' ପୁସ୍ତକରେ ଜାତିର ପିତା ମହାତ୍ମା ଗାନ୍ଧି ଅରଟ ଦ୍ୱାରା ଭାରତର ଦାରିଦ୍ର୍ୟ ମେଣ୍ଟିବ ବୋଲି ମତ ଦେଇଥିଲେ । ସ୍ୱଦେଶୀ ବସନ ବ୍ୟବହାର ନ ହେଲେ ବିଦେଶୀ ବସନ ବର୍ଜ୍ଜନର କିଛି ମୂଲ୍ୟ ନାହିଁ । ତେଣୁ, ଅରଟରେ ସୂତାକାଟି ତନ୍ତରେ ଲୁଗା ବୁଣାକୁ ଅଧିକ ଗୁରୁତ୍ୱ ଦିଆଗଲା । ଦାରିଦ୍ର୍ୟ ଓ ବେକାର ଜୀବନରୁ ମୁକ୍ତିପାଇଁ ଗାନ୍ଧି ଖଦୀ ବୁଣାକୁ ଆନ୍ଦୋଳନର ଏକ ଅଙ୍ଗ ବୋଲି 'ଆତ୍ମ ଜୀବନୀ'ରେ ସେ ଲେଖିଛନ୍ତି । 'ଖଦୀ ଜନ୍ମ' ଶୀର୍ଷକରେ ସେ ଲେଖିଛନ୍ତି—"ମୁଁ ଏଭଳି ସ୍ୱଦେଶୀରେ ବିଶ୍ୱାସ କରୁଛି । କାରଣ ଭାରତରେ ଉପାସରେ ମରିଥିବା ଓ ଅର୍ଦ୍ଧେ ବେକାର ଅବସ୍ଥାରେ ରହିଥିବା ନାରୀମାନଙ୍କୁ ଏହାଦ୍ୱାରା ମୁଁ କାମ ଜୁଟେଇ ଦେଇ ପାରିବ । ସେମାନେ କାଟିଥିବା ସୂତାକୁ ବୁଣେଇବା ଓ ସେ ଲୁଗାକୁ ପିନ୍ଧାଇବା ମୋର କାମ ଓ ମୋର ଆନ୍ଦୋଳନ ।" (୧୪) ଅନ୍ୟତ୍ର ସେ କହିଥିଲେ- "ମନେରଖ, ବିଦେଶୀ ବର୍ଜ୍ଜନ ଲାଗି ମୁଁ ଖଦୀ ଚଳାଇ ନାହିଁ । ଖଦୀ ହେଉଛି ଆମର ବଂଚିବାର ଉପାୟ । ନିଜେ ବଂଚିବାକୁ ହେଲେ ନିଜ ଲୁଗା ନିଜେ ତିଆରି କରିବାକୁ ହେବ ।" (୧୫)

ନିଖିଳ ଭାରତ କଂଗ୍ରେସ କମିଟିରେ ସ୍ଥିରହେଲା ଯେ ସେପ୍ଟେମ୍ବର ମାସ ମଧ୍ୟରେ ବିଦେଶୀ ବସ୍ତ୍ର ସଂପୂର୍ଣ୍ଣ ଭାବରେ ବର୍ଜ୍ଜନ କରାଯିବ । ଗାନ୍ଧୀ ପ୍ରଥମେ ବିଦେଶୀ ଲୁଗା ଗାଦିରେ ଅଗ୍ନି ସଂଯୋଗ କରିଥିଲେ । ତା'ପରେ ଓଡ଼ିଶାରେ ବିଦେଶୀ ବସନ ବର୍ଜ୍ଜନ ଆନ୍ଦୋଳନ ଆରମ୍ଭ ହୋଇଗଲା ।

---

(୧୪) ଆତ୍ମକଥା- ବା- ସତ୍ୟର ପ୍ରୟୋଗ—ମୋହନ ଦାସ କରମଚାନ୍ଦ ଗାନ୍ଧି—ଉତ୍କଳ ସ୍ମାରକ ନିଧି— ୧୯୭୬ - ପୃ. ୪୨୪ ।

(୧୫) ଗାନ୍ଧିଜୀ ଓ ଓଡ଼ିଶା— ଡଃ ହରେକୃଷ୍ଣ ମହତାବ- ପୃ. ୫୭ ।

୧୯୨୧ ମସିହା ଅଗଷ୍ଟ ମାସ ୭ ତାରିଖ ଶନିବାର ସନ୍ଧ୍ୟାରେ ପୁରୀ ବଡ଼ଦାଣ୍ଡରେ ସ୍ୱରାଜ୍ୟ ଆନ୍ଦୋଳନ ବିଷୟରେ ଗୋପବନ୍ଧୁ ବକ୍ତୃତା ଦେଲେ । ସେ କହିଲେ— ବିଦେଶୀ ସରକାରଙ୍କୁ ହଟାଇବାକୁ ହେଲେ ବିଦେଶୀ ବର୍ଜ୍ଜନ ଏକ ବଳିଷ୍ଠ ପନ୍ଥା । ବିଦେଶୀ ବସ୍ତ୍ର ବର୍ଜ୍ଜନ ଏକ ଚମତ୍କାର ଅସ୍ତ୍ର । ଆଜି ଆମ୍ଭମାନେ ଏହି ବିଦେଶୀ ବସ୍ତ୍ର ବର୍ଜ୍ଜନ ଯଜ୍ଞ ଆରମ୍ଭ କରିବା ସଂକଳ୍ପ କରୁଥାଉଁ + + + ବିଦେଶୀ ବସ୍ତ୍ର ପାପ ଏତେ ଦିନ ଆମ୍ଭମାନଙ୍କର କାୟାଭ୍ରଷ୍ଟ କରୁଥିଲା । ଆଜି ତା ଦଗ୍ଧ ହେଲା । ଏଣିକି ଶୁଦ୍ଧ ସ୍ୱଦେଶୀ ବସ୍ତ୍ରରେ ଅଙ୍ଗ ଆବୃତ କରିବାକୁ ହେବ ।

ସଭା ସ୍ଥାନରେ ବହୁ ପୁରୁଣା ବିଦେଶୀ ଲୁଗା ଜମାହେଲା । ଗୋପବନ୍ଧୁ ଏଥିରେ ଅଗ୍ନି ସଂଯୋଗ କଲେ । ଏପରି କି ଗାମୁଛା ସୁଦ୍ଧା ପାଳଟି ବିଦେଶୀ ଲୁଗାକୁ ଅଗ୍ନି କୁଣ୍ଡକୁ ପକାଗଲା । କଟକରେ ଅଗଷ୍ଟ ୧୩ ଓ ୧୪ ତାରିଖରେ ଟାଉନ୍ ହଲରେ ସଭାହୋଇ ବିଦେଶୀ ବସନ ବର୍ଜ୍ଜନ ହେଲା । ଏହି ଅଗ୍ନି କୁଣ୍ଡର ଚାରିପଟେ କଂଗ୍ରେସ କର୍ମୀମାନେ ଘୂରିବୁଲି କୀର୍ତ୍ତନ କଲେ ଏବଂ ୧୫ ତାରିଖରୁ ୨୨ ତାରିଖ ପର୍ଯ୍ୟନ୍ତ ବାଲେଶ୍ୱର ଜିଲ୍ଲା ଓ ବିଭିନ୍ନ ଅଞ୍ଚଳରେ ବୁଲି ବିଦେଶୀ ବସନ ବର୍ଜ୍ଜନ ସଂପର୍କରେ ପ୍ରଚାର କଲେ । ସେତେବେଳେ ତାଙ୍କ ସହିତ ନାରାୟଣ ବିର ବାଞ୍ଛାନିଧି ଓ ଶ୍ରୀ ହରେକୃଷ୍ଣ ମହତାବ ତାଙ୍କ ସହିତ ଯୋଗ ଦେଇଥିଲେ । ଏହି ପ୍ରସଙ୍ଗରେ ଉତ୍କଳମଣି ଗୋପବନ୍ଧୁ ପ୍ରଣେତା ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଲେଖିଛନ୍ତି -"ବାଲେଶ୍ୱର ଜିଲ୍ଲା କଂଗ୍ରେସ ସମ୍ପାଦକ ଶ୍ରୀ ହରେକୃଷ୍ଣ ମହତାବ ଓ ଶ୍ରୀ ବାଞ୍ଛାନିଧି ମହାନ୍ତି ବରାବର ତାଙ୍କ ସହିତ ଥିଲେ । ସ୍ୱଦେଶୀ ପ୍ରଚାର ମୂଳ ଲକ୍ଷ୍ୟ ଥିଲା ।" (୧୭)

ଭଦ୍ରକର କୁଆଁସସ୍ଥିତ କଂଗ୍ରେସ ଆଶ୍ରମ ସେତେବେଳେ ଭଦ୍ରକ ଅଞ୍ଚଳର ସଂଗ୍ରାମ ପୀଠଥିଲା । କଂଗ୍ରେସ ଆଶ୍ରମର କର୍ମୀମାନଙ୍କ ଗହଣରେ ବାଞ୍ଛାନିଧିଙ୍କ ରଚିତ ସଙ୍ଗୀତମାନ ଗାନକରି ପଲ୍ଲୀଆରରେ ଯାଇ ଘରେ ଘରେ ବିଦେଶୀ ବସନ ଭିକ୍ଷାକରି ସେଥିରେ ଅଗ୍ନି ସଂଯୋଗ କରି ଧ୍ୱଂସକରି ଦେଉଥିଲେ । ସୁଦର୍ଶନ ପଣ୍ଡା, ଚକ୍ରଧର ପଟ୍ଟନାୟକ ଏବଂ କନିଷ୍ଠ ଭ୍ରାତା ପ୍ରେମାନନ୍ଦ ମହାନ୍ତି ଓ କାଶୀନାଥ ବାରିକ ଆଦି ଏ କ୍ଷେତ୍ରରେ ତାଙ୍କର ମୁଖ୍ୟ ସହକର୍ମୀ ଥିଲେ । ସେମାନେ ବିଦେଶୀ ବସନ ସଂଗ୍ରହକରି ପୋଡ଼ି ପକାଉଥିଲେ । ସେମାନେ ପଲ୍ଲୀଆରେ କୀର୍ତ୍ତନ ସ୍ୱରରେ ଗାନ କରୁଥିଲେ—

କ] "ଭାଇରେ ଆଜି ଆସିଛି ଦିନ,
ରାମ ରାଇଜର ଆସିଛି ଦିନ,
ବିଲାତି ବସନ କର ଦହନ ।"

---

(୧୭) ଉତ୍କଳମଣି ଗୋପବନ୍ଧୁ—[ପୂର୍ବାର୍ଦ୍ଧ] ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଗ୍ରନ୍ଥମନ୍ଦିର ୨ୟ ମୁଦ୍ରଣ—୧୯୭୧ ପୃ. ୪୫୨ ।

ଖ] "ଭେଜ ଭେଜ ଭାଇ ବିଦେଶୀ ବସନରେ
(ବିଦେଶୀ) ବସନରେ ବିଲାତି ଫେସନରେ ।

ପିନ୍ଧି ପରଦେଶୀ ସାଜ ନ ମାଡେ କି ତଳେ ଲାଜ
ପରଘର ଲୁଗାରେ କି କଥା ଏ ଭାଇ ସମ୍ମାନରେ ।୧।

ବିଦେଶୀ ବେପାରୀ ପୋଷି ସ୍ୱଦେଶ ଦେଉଛ ନାଶି
ଗାଆଁ-ତନ୍ତୀ ମଲେ ହୋଇ ଅକାରଣ ହରିବାଣରେ ।୨।

\+ \+ \+ \+

ବରଷକେ ଚଉଷଠି କୋଟି ଟଙ୍କା ନିଏ ଲୁଟି
ଅଭାବ ହେଲା ଆମ୍ଭକୁ ଅଶନରେ ।୪।

\+ \+ \+ \+

ଯେ ଲୁଗାପାଇଁ ଜନନୀ ହେଲା ଆଜ କାଙ୍ଗାଳୁଣୀ
ସେ ଲୁଗାକୁ ବେଗେ କର ଭାଇ ଦହନରେ ।୯।"

ସାଧାରଣ ଜନତା ପ୍ରତି ତାଙ୍କର ଯେଉଁ ବିନମ୍ର ପ୍ରାର୍ଥନା ତାହା ଭୁଲି ଯିବାର ନୁହେଁ—

"ବିଦେଶୀ ବସନେ ଭାଇ ମଜ୍ଜିଲୁ କି,
ଚକ୍‌କଣ ସରୁ ସୁରଙ୍ଗେ ନାନା ଛବି ନାନାରଙ୍ଗେ ଭୁଲିଲକି ।"

ବିଦେଶୀ ବସନ ବର୍ଜ୍ଜନ କଲେ କେବଳ ହେବ ନାହିଁ । ସ୍ୱଦେଶୀ ବସନ ବା ଖଦଡ଼ ପିନ୍ଧିବାକୁ ପ୍ରବର୍ତ୍ତାଇ ସେ ଗାଇ ଉଠିଛନ୍ତି ।

"ଖଦି ପିନ୍ଧିବି ମୁଁ ଯେତେ ମୋଟ ହେଉ,
ହସିବ ଦେଖି ଯେ ମୋତେ ହସୁଥାଉ (ସେ ପଛେ )
ମୋ ଦେଶ ତିଆରି ଧନ,
କରିବି ଅତି ଯତନ,
ଭାସିଗଲା ଦେଶସାରା ତ୍ୟାଗ ଢେଉ [ତାଦର] ।"

ଯେଉଁଠି ଏହି ବିନମ୍ର ପ୍ରାର୍ଥନା ଓ ବୁଝାମଣା ଫଳ ଦେଇ ନାହିଁ, ସେତେବେଳେ ତାଙ୍କର ଶାଣିତ ବ୍ୟଙ୍ଗୋକ୍ତି ପ୍ରକାଶ ପାଇଛି ।

"କହ ନାନୀ କହ କହ ମୋତେ
କିଂପା ବାବୁଆଣୀ ହୋଇଗଲୁ ଏତେ ?

କିଏ ତୋତେ କେଲା କୁହୁକ କରିଲା
କା ଦେଖି ବାଇଆ ହେଲୁ ଏତେ ?
ବଜାଟୁଣୀ ଢଙ୍ଗ କାହୁଁ ରୁ ଶିଖିଲୁ
ବିଲାତ ଫେସନ କାହୁଁ ରୁ ଶିଖିଲୁ
ବଡ଼ାବଡ଼ଙ୍କୁ ତୁ ବେଖାତିର କରି ଭୟଭକ୍ତି ନ ରଖିଲୁ ଟିକେ ।

+ + + +

ସବୁ ପିନ୍ଧି ପିନ୍ଧି ହେଲୁ ପଛେ ବୁଢ଼ି
ନ ଛାଡ଼ିଲୁ କଳ ପିନ୍ଧା ପାଢ଼ି
ହେଉ ଯେତେ ବୁଢ଼ି ଖୋଜୁ ସେତେ ଧାଡ଼ି
ଫୁଲ ମିଜନାର କଣ୍ଠୁ କେତେ ।”

ଏହି ସଂଗୀତଟି ଏକ ସଭାକୁ ଜଣେ ବୃଦ୍ଧା ବିଦେଶୀ ବସନ ପିନ୍ଧି ଆସିଥିବାର ଦେଖି ସେ ସଙ୍ଗେ ସଙ୍ଗେ ରଚନା କରି ସ୍ୱର ସଂଯୋଜନା କରି ସେହି ସଭା ମଣ୍ଡପରେ ଗାନ କରିଥିଲେ ବୋଲି ଶୁଣାଯାଏ ।

ନିଜ ଘରୁ ସେ ବହୁ ମୂଲ୍ୟବାନ ବିଦେଶୀ ବସନ ଆଣି ଦାଣ୍ଡ ଆଗରେ ଜମାକରି ଧେଇ ନିଆଁ ଲଗେଇ ଦେଇଥିଲେ । ତାଙ୍କ ବିମାତା କୁନ୍ଦଲତା ଦେବୀ କିନ୍ତୁ ଖୁବ୍ ମୂଲ୍ୟବାନ ବସ୍ତୁ କେତୋଟି ବାଛି ଦୁଇଟି ବସ୍ତାରେ ପୂରାଇ ଘର ଉପରିସ୍ଥିତ ମାଟୁ ଉପରେ ଲୁଚାଇ ରଖି ଦେଇଥିଲେ । ଯେତେବେଳେ ବାଞ୍ଛାନିଧି ସମସ୍ତ ବିଦେଶୀ ବସନ ଘରୁ ଆଣି ନିଆଁ ଲଗେଇ ଦେଲେ । ସେତେବେଳେ ସେ ତାଙ୍କ ମା'ଙ୍କୁ କହିଥିଲେ— "ଆଉ କିଛି ବିଦେଶୀ ବସନ ଅଛି କି ?" ତାଙ୍କ ମା' ମନାକରି ଦେଇଥିଲେ । ମାତ୍ର ବାଞ୍ଛାନିଧି ଯେତେବେଳେ ମା'ଙ୍କ ହାତଆଣି ନିଜମୁଣ୍ଡ ଉପରେ ରଖି କହିଲେ—"ମୋ ମୁଣ୍ଡରେ ହାତରଖି କହିଲ, ତୁମେ ବିଦେଶୀ ଲୁଗା ଘରେ ରଖିନାହିଁ ।" ତାଙ୍କ ମା' କାନ୍ଦି ପକାଇ କହି ଉଠିଲେ— "ସେ ଲୁଗାରେ ନିଆଁ ଲାଗି ଯାଉ । ମୋ ଫକ (ବାଞ୍ଛାନିଧି ) ହେଲା ନାହିଁ, ଏଇ ଲୁଗା ଏତେ ହେଲା ?" ସେ ନିଜେ ମାଟୁ ଉପରକୁ ଉଠିଯାଇ ବାଞ୍ଛାନିଧିଙ୍କୁ ଦୁଇବସ୍ତାରେ ପୂରାଇଥିବା ମୂଲ୍ୟବାନ ବିଦେଶୀ ବସନ ବାହାର କରି ଦେଇଥିଲେ ଜଳେଇ ଦେବାପାଇଁ । ଏଥିରୁ ତାଙ୍କ ବିମାତା ବାଞ୍ଛାନିଧିଙ୍କୁ କିପରି ପ୍ରାଣଠାରୁ ବଳି ସ୍ନେହ କରୁଥିଲେ, ତାହା ଅନୁମିତ ହୁଏ ।

'ସ୍ୱଦେଶୀ' ଆନ୍ଦୋଳନରେ 'ବିଦେଶୀ ବସନ ବର୍ଜ୍ଜନ' ଏକ ଅଂଶ ମାତ୍ର । ବିଦେଶୀ ପଦାର୍ଥକୁ ମଧ୍ୟ ବର୍ଜ୍ଜନ କରିବାକୁ ଗାନ୍ଧି ପ୍ରବର୍ତ୍ତାଇଥିଲେ । ଗୋଟିଏ ସଂଗୀତରେ ବାଞ୍ଛାନିଧି ଏହାକୁ ବର୍ଣ୍ଣନା କରିଛନ୍ତି—

"କାହିଁକି ରହୁଛ ଭାଇ ଆଳସେ ବସି ହୋ,
ପର ନେଇଗଲା ଧନ ସଭିଠୁଁ କସି ହୋ ।୦।

ଲୁଣ, ଦିଆସିଲି, ଛତା, ଛୁରୀ, କଇଁଞ୍ଚି ଓ କୋଟା,
ଆରଶି, ପାନିଆ, ଷୁର, ନକଲି ନାନା ପ୍ରକାର
କାଚ ଶଙ୍ଖା, କାଚମାଳ ମନ୍ଦ୍ରଣା ବେଙ୍ଗି ପିତ୍ତଳ
ଚେନ ଘଡ଼ି, ଶୁନ୍‌ଗାଡ଼ି, ଦମ୍‌କଳ ହାଓ୍ୱାଗାଡ଼ି ।
(ବାବୁ) ବିଲାତ ଜିନଷ କିଣି ମନେ ଖୁସି ହୋ ।୧।"

( ବା:ପ:, ପୃ.୯ )

ବିଦେଶୀ ବେପାରୀ ପାଇଁ ଭାରତୀୟମାନେ କିପରି ଭିଖାରୀରେ ପରିଣତ ହୋଇଛନ୍ତି, ତାହା ତାଙ୍କର ଏକ ସଙ୍ଗୀତରେ ସ୍ଥାନ ପାଇଛି ।

"ଯାହୁଁ ଆଇଲେ ବିଦେଶରୁ ବେପାରୀ,
ସବୁ ସାଇଲେ ହେଲୁ ଆମେ ଭିକାରୀ !

+ + + +

ଚକ ଚକ ଗୁଇନା ମାଟିର ବାସନ,
ସାରଦେଲା ବୃତ୍ତି ବେଶ କଂସାର ।
ସିରିସୀର ଫେନ୍‌ସି କାମ, ଜାପାନର ଶସ୍ତା ଦାମ
କଟେଲ୍ଲଶ ହୁଇସେଲ ସୁଇଟ ସେଣ୍ଟ୍ ପରଫ୍ୟୁମେଲ
କାଠ ଶଙ୍ଖା ମାରଦେଲା ଶଙ୍ଖାରୀ ।"

( ବା: ପ., ପୃ. ୨୮ )

ତାଙ୍କ ଉଦ୍ଦାମ ସଂଗୀତର ଶକ୍ତି କିପରି ପ୍ରଭାବଶାଳୀ ଥିଲା । ତାହାର ଏକ ଉଦାହରଣ ଦେବାକୁ ଯାଇ ଡ. ହରେକୃଷ୍ଣ ମହତାବ କହନ୍ତି—"ବିଦେଶୀ ବର୍ଜ୍ଜନ ପାଇଁ ଯେତେବେଳେ ଗାଁ ଗାଁରେ ବାଞ୍ଛାନିଧିଙ୍କ ସଂଗୀତ ଗାନ କରାଯାଉଥିଲା ଏବଂ ବିଦେଶୀ ବସନ ସବୁ ମାଗଣ କରି ତାକୁ ନିଆଁ ଜାଳି ପୋଡ଼ି ଦିଆଯାଇଥିଲା, ସେତେ-ବେଳେ ଗାୟକ ଓ ବାଦକମାନେ ବାଞ୍ଛାନିଧିଙ୍କ ଗୀତ ଗାଇ ଏପରି ନାଚୁଥିଲେ ଯେ ନିଆଁ ଚାରିପଟେ ଘୂରିଘୂରି ଗୀତ ଗାଉଗାଉ କେତେ ଜଣ ସେହି ନିଆଁ ଭିତରେ ପଶି ଯାଉଥିଲେ ଅଲକ୍ଷ୍ୟ ଭାବରେ ।"

ଗୋପବନ୍ଧୁ ମଧ୍ଯ ଭଦ୍ରକ ଆଶ୍ରମର ଗାନରେ ଲୋକମାନେ ଉତ୍ସାହିତ ହେଉଥିବା

ଦେଖି ଉଦ୍ୟୋକ୍ତାମାନଙ୍କୁ ପ୍ରଶଂସା କରିଥିଲେ । ଏହା ଉଲ୍ଲେଖ କରି ପଣ୍ଡିତ ସୂର୍ଯ୍ୟ-ନାରାୟଣ ଦାଶ ଲେଖିଛନ୍ତି—"ଭଦ୍ରକ ସ୍ୱରାଜ୍ୟ ସଂକୀର୍ତ୍ତନ ସଂପ୍ରଦାୟଙ୍କ ଗାନରେ ଲୋକେ ଖୁବ ଉତ୍ସାହିତ ହୋଇଥିବା ଦେଖି ଗୋପବନ୍ଧୁ ବାବୁ ଉଦ୍ୟୋକ୍ତାମାନଙ୍କୁ ପ୍ରଶଂସା କରିଥିଲେ ।" (୧୭)

ସେତେବେଳେ ବାଲେଶ୍ୱର ଅଞ୍ଚଳରେ ସ୍ୱଦେଶୀ ବସନ ବର୍ଜ୍ଜନ ପାଇଁ ଜୋରର କାର୍ଯ୍ୟାନୁଷ୍ଠାନ କରାଯାଇଥିଲା, ସେ ସଂପର୍କରେ ଡଃ ହରେକୃଷ୍ଣ ମହତାବ ତାଙ୍କର ଆତ୍ମଜୀବନୀ (ସାଧନାର ପଥେ) ଗ୍ରନ୍ଥରେ ଏହି ପ୍ରସଂଗରେ ଲେଖିଛନ୍ତି, "ସ୍ୱଦେଶୀ ଲୁଗା ଦୋକାନ ଆଗରେ ପିକେଟିଂ ନିତ୍ୟନୈମିତ୍ତିକ ବ୍ୟାପାର । ସ୍ୱଦେଶୀ ଲୁଗା କଲିକତାରୁ କୌଣସି ବ୍ୟବସାୟୀ ନାମରେ ରେଳରେ ଆସୁଥିବାର ଖବର ପାଇଲେ, ଏପରି ବ୍ୟବସ୍ଥା କରୁ ଯେ, ଷ୍ଟେସନରୁ ଦୋକାନ ପର୍ଯ୍ୟନ୍ତ ମାଲ୍ ଆସିପାରେ ନାହିଁ । ପ୍ରଥମେ କୁଲି ଯେପରି ମାଲ ନ ଉଠାଇବେ ସେଥିପାଇଁ ଚେଷ୍ଟା ହୁଏ । ଦୈବାତ୍ କୁଲି ଆମ କଥା ନ ମାନଲେ ଗାଡ଼ିବାଲା ଯେପରି ନ ବହିବେ, ତା'ର ବ୍ୟବସ୍ଥା କରୁ । ଗାଡ଼ି ଆଗରେ ଶୋଇ ପିକେଟିଂ କରିବା, କୁଲିମାନଙ୍କର ଗୋଡହାତ ଧରିବା, ଏହିସବୁ ଆମର କର୍ମ କୌଶଳ ଥାଏ ।" (୧୮) ସ୍ୱଦେଶୀ ଲୁଗା ଦୋକାନ ଆଗରେ ପିକେଟିଂ କରି ବାଞ୍ଛାନିଧି ଗିରଫ୍ ହୋଇ ଜେଲଦଣ୍ଡ ଭୋଗ କରିଥିଲେ ମଧ୍ୟ (୧୯) ।

— X —

(୧୭) ଉତ୍କଳମଣି ଗୋପବନ୍ଧୁ (ପୂର୍ବାର୍ଦ୍ଧ)— ପୃ. ୪୬୨

(୧୮) ସାଧନାର ପଥେ— ପୃ. ୪୩ ।

(୧୯) ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ—ଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ୧୯୭୨ - ଗ୍ରନ୍ଥମନ୍ଦିର- ପୃ. ୬୧ ।

## ॥ ଛଅ ॥

### ସ୍ୱତନ୍ତ୍ର ପ୍ରଦେଶ ଗଠନ

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କଲାପରେ ମହାନଦୀର ଉତ୍ତର ଓ ଦକ୍ଷିଣ ଭାଗକୁ ନେଇ ଦୁଇଗୋଟି ଜିଲ୍ଲା ଗଠନ କରାଗଲା । ୧୮୦୫ ମସିହାରେ ଓଡ଼ିଶା ଗୋଟିଏ ଜିଲ୍ଲାରେ ପରିଣତ ହେଲା । ପୁରୀ ଶାସନର କେନ୍ଦ୍ର ସ୍ଥାନ ହେଲା । ୧୮୧୬ ମସିହାରେ ପୁରୀରୁ ଶାସନ କେନ୍ଦ୍ର କଟକକୁ ଉଠି ଆସିଲା । ୧୮୨୯ ମସିହାରେ ଓଡ଼ିଶା ତିନିଗୋଟି ଜିଲ୍ଲାରେ ବିଭକ୍ତ ହେଲା । ଯଥା— ବାଲେଶ୍ୱର, କଟକ ଓ ପୁରୀ । ବାଲେଶ୍ୱର ଜିଲ୍ଲାର ବସ୍ତାଠାରୁ ଉତ୍ତର ଅଂଶ ମେଦିନୀପୁର ଜିଲ୍ଲା ମଧ୍ୟରେ ଥିଲା, କିନ୍ତୁ ୧୮୭୦ ମସିହାରେ ସେହି ଅଂଶ ବାଲେଶ୍ୱର ଜିଲ୍ଲାରେ ମିଶିଲା । ୧୮୪୭ରେ ଅନୁଗୋଳ ଓ ବାଙ୍କିମାଲ ମିଶି ଗୋଟିଏ ଜିଲ୍ଲା ହେଲା । ୧୮୦୩ ମସିହାରେ ସମ୍ବଲପୁର ନାଗପୁର ଅଧୀନରେ ଥିଲା । ୧୮୬୨ ମସିହାରେ ପୁଣି ଏହା ମଧ୍ୟ ପ୍ରଦେଶର ଅନ୍ତର୍ଗତ ହେଲା । ପୁଣି ୧୯୦୫ ମସିହାରେ ସମ୍ବଲପୁର ଓ ତା'ର ଗଡଜାତ ସବୁ ଓଡ଼ିଶାକୁ ଆସିଲା ।

ଭାଷା ସୂତ୍ରରେ ଓଡ଼ିଶା ପ୍ରଦେଶକୁ ଗଠନ କରିବା ପାଇଁ ପ୍ରଥମେ ଓଡ଼ିଶାର କମିଶନର କୁକ୍ ସାହେବ ଉଦ୍ୟମ କରିଥିଲେ । ୧୯୦୩ ମସିହାରେ ବଡ଼ଲାଟ ଲର୍ଡ କର୍ଜନଙ୍କ ସମୟରେ ତାଙ୍କ ସେକ୍ରେଟେରୀ ରିସ୍‌ଲେ ସାହେବ ବଙ୍ଗ ବିଚ୍ଛେଦ ପ୍ରସଙ୍ଗରେ ଯେଉଁ ପ୍ରସ୍ତାବ ଦେଇଥିଲେ ସେଥିରେ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରିବା ପାଇଁ ସ୍ୱୀକାର କରାଗଲା । ବଙ୍ଗଳା ଦୁଇଭାଗ ହେଲା । ତେଣୁ, ପୂର୍ବବଙ୍ଗ ଓ ଆସାମ ମିଶି ଗୋଟିଏ ପ୍ରଦେଶରେ ଏବଂ ପଶ୍ଚିମ ବଙ୍ଗ, ବିହାର, ଓଡ଼ିଶା ଓ ଛୋଟ ନାଗପୁରକୁ ନେଇ ଗୋଟିଏ ପ୍ରଦେଶ ଗଠନ କରାଗଲା । ୧୯୧୨ ମସିହା ଏପ୍ରିଲ୍ ପହିଲାରେ ଓଡ଼ିଶା ବିହାର ସହିତ ମିଶି ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା ।

୧୯୦୨ ମସିହାରେ ଓଡ଼ିଶାର ପ୍ରତିନିଧିମାନେ ମିଶି ଏକ ଜାତୀୟ ସମ୍ମିଳନୀ ଅନୁଷ୍ଠିତ ହେଲା । ତା' ପରବର୍ଷ ଅର୍ଥାତ୍ ୧୯୦୩ ମସିହାରେ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଅଧିନାୟକତ୍ୱରେ ଅନୁଷ୍ଠିତ ହେଲା । ଏହାର ଲକ୍ଷ୍ୟ ହେଲା ବିଚ୍ଛିନ୍ନାଞ୍ଚଳକୁ ଓଡ଼ିଶା ପ୍ରଦେଶର ଅନ୍ତର୍ଗତ କରିବା । ୧୯୧୧ ମସିହା ଅଗଷ୍ଟ ୨୫ ତାରିଖରେ ଲର୍ଡ ହାର୍ଡିଞ୍ଜ ଲଣ୍ଡନକୁ ଭାରତ ବିଭାଗର ସେକ୍ରେଟେରୀଙ୍କ ପାଖକୁ ପ୍ରସଙ୍ଗ କ୍ରମେ ଓଡ଼ିଶାକୁ ବିହାର ସହିତ ରଖିବାକୁ ମତଦେଲେ । ୧୯୧୨ ଫେବୃଆରୀ ମାସ ୧୨ ତାରିଖରେ 'ଲର୍ଡସ୍ ସଭା'ରେ ଲର୍ଡ କର୍ଜନ ଓଡ଼ିଶା ଉପରେ ବିହାର ସହିତ

ମିଶିଲ ସେଥିରେ ଆଶ୍ବସ୍ତ ହୋଇଗଲେ । ଏହା ସରକାରଙ୍କର 'ଅନ୍ୟାୟ' ବୋଲି ସେ ମତ ଦେଲେ । ଭାରତର ସାମ୍ବିଧାନିକ ଶାସନ ବ୍ୟବସ୍ଥାର ସଂସ୍କାର ପାଇଁ ଯେଉଁ ମଣ୍ଟେଗୁ ଚେମସ୍ ଫୋର୍ଡ ବିବରଣୀ ପ୍ରକାଶ ପାଇଲା, ସେଥିରେ ଓଡ଼ିଶାକୁ 'ସବ୍-ପ୍ରୋଭିନ୍ସ୍' ବୋଲି ଗ୍ରହଣ କରିଥିଲେ । ଏହା ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ଦିଗରେ ଆଉ ଏକ ପାହାଚ । ୧୯୨୮ ଡ଼ିସେମ୍ବର ମାସରେ ପାଟନାରେ India n Statuatory Commission ବସିଲା । ଏଥିରେ ବ୍ରଜସୁନ୍ଦର ଦାସଙ୍କ ନେତୃତ୍ୱରେ କେତେଜଣ କମିସନ୍ ଆଗରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ସପକ୍ଷରେ ସାକ୍ଷ୍ୟ ଦେବାକୁ ଯାଇଥିଲେ ସାଇମନ କମିସନ୍ ଦ୍ୱାରା ଯଥାର୍ଥତାକୁ ସ୍ୱୀକାର କରି ମେଜର ଆଟଲିଙ୍କ ନେତୃତ୍ୱରେ ଏହାର ବିଚାର କରିବା ଉଦ୍ଦେଶ୍ୟରେ ଏକ 'ସବ୍‌କମିଟି' ଗଠନ କରିବାକୁ ନିର୍ଦ୍ଦେଶ ଦେଲା । ଫଳରେ ୧୯୩୧ ମସିହାରେ ସାର୍ ସାମୁଏଲ୍ ଓଡ଼ୋନେଲଙ୍କ ସଭାପତିତ୍ୱରେ ଓଡ଼ିଶା କମିଟି ଗଠନ କରାଗଲା । କମିସନ୍ ବିହାରର 'ସିଂହଭୂମି' ଜିଲ୍ଲା ଓଡ଼ିଶା ସହିତ ମିଶିବାକୁ ସୁପାରିଶ୍ କରି ନଥିଲା । ତେଣୁ ମଧୁସୂଦନ କାମଶେଦ୍‌ପୁର ଓ ସିଂହଭୂମି ଜିଲ୍ଲାର ବିଭିନ୍ନ ଅଞ୍ଚଳ ବୁଲି 'ଓଡ଼ିଶା କମିଟି' ସପକ୍ଷରେ ଓ ଓଡ଼ିଶା ମିଶ୍ରଣ ସପକ୍ଷରେ ଜନମତ ସୃଷ୍ଟି କଲେ ।

୧୯୨୪ ମସିହା ଜୁନ୍ ୨୯ ତାରିଖ ଦିନ 'ଉତ୍କଳ ପ୍ରଦେଶ କଂଗ୍ରେସ ସମ୍ମିଳନୀ'ରେ ଭାଷା ସୂତ୍ରରେ ଓଡ଼ିଶା ପ୍ରଦେଶ ଗଠନ ପଣ୍ଡିତ ଗୋପବନ୍ଧୁ, ପ୍ରଚାରକ ଅନନ୍ତ ମିଶ୍ର, ନିରଞ୍ଜନ ପଟ୍ଟନାୟକ ଓ ନନ୍ଦକିଶୋର ଦାସଙ୍କୁ ନେଇ ଗଠନ କରାଗଲା । ମଧ୍ୟପ୍ରଦେଶର ଫୁଲଝର, ସିଂହଭୂମି ଆଦି ଅଞ୍ଚଳକୁ ବାଞ୍ଛାନିଧି ଗୋଦାବରୀଶ ମିଶ୍ରଙ୍କ ନେତୃତ୍ୱରେ ଯାଇ ସ୍ୱାଧୀନତାର ବାର୍ତ୍ତା ପ୍ରଚାର ସଙ୍ଗେ ସଙ୍ଗେ ଓଡ଼ିଆମାନଙ୍କୁ ଏକଜ କରି ଓଡ଼ିଶା ସହିତ ମିଶ୍ରଣ ପାଇଁ ସୁଖ୍ୟ ସମିତିରେ ଯୋଗଦାନ ଦେଇଥିଲେ । ଏଥିପାଇଁ ଅବଶ୍ୟ ତାଙ୍କୁ ବହୁ ସମୟରେ ଟେକାପଥର ମାଡ଼, ଭର୍ତ୍ସନା ସହିବାକୁ ପଡ଼ିଥିଲା । ଏ ବିଷୟରେ ପୂର୍ବରୁ ଉଲ୍ଲେଖ କରାଯାଇଛି । ବିଶେଷତଃ, ନାଟକ ଦଳ ମାଧ୍ୟମରେ ସେ ଜାତୀୟ ଚେତନାର ପ୍ରଚାର କରୁଥିଲେ । ବିଚ୍ଛିନ୍ନାଞ୍ଚଳର ମିଶ୍ରଣକୁ ଉଦ୍ଦେଶ୍ୟ କରି ପ୍ରଶ୍ନ କରିଛନ୍ତି—

> "କି ହେବ ଏ ମୁଣ୍ଡକଟା ଦେଶକୁ ଘେନି,
> ମୁଣ୍ଡକଟା, ଗୋଡ଼କଟା ପଙ୍ଗୁକୁ ଘେନି
> ମୋ ଜନନୀ କି ସୁନ୍ଦର ସିଂହଭୂମି ତା'ର ଶିର
> ମେଦିନୀପୁର, ମଞ୍ଜୁଷା ପସ୍ତର ବେଣି ।୧।
>
> ଝିଙ୍କାଲି ତା ଅଙ୍ଗ ଟୀକା, ସମ୍ବର ଗୃହୁ ଛୁଟିକା
> ଫୁଲଝର ଫୁଲଝରି ସୁଷମା ବେଣୀ ।୨।"

( ବା. ପ., ପୃ. ୨୬ )

# ॥ ସାତ ॥

## ସାଇମନ୍ କମିସନ୍

୧୯୨୭ ମସିହାର ଶେଷ ଭାଗରେ ଇଂରେଜ ସରକାର ଭାରତକୁ ଏକ କମିଶନ୍ ପଠାଇବେ ବୋଲି ସ୍ଥିରକଲେ । ଏହି କମିଶନ୍ ଭାରତର ଶାସନ ବ୍ୟବସ୍ଥା କିପରି ହେବ, ସେ ବିଷୟରେ ଅନୁସନ୍ଧାନ କରିବେ । ଏହାକୁ 'ସାଇମନ୍ କମିସନ୍' କୁହାଗଲା । ସେଥିରେ ସବୁ ସଦସ୍ୟ ଇଂରେଜ । ଭାରତ ବ୍ୟାପି ଏହାର ବିରୋଧ କରାଗଲା । ଏହି କମିଶନ୍ ୧୯୨୮ ମସିହା ଅକ୍ଟୋବର ୩୦ ତାରିଖ ଦିନ ଭାରତକୁ ଆସିଲା । ଏହାକୁ କଂଗ୍ରେସ ବର୍ଜନ କଲା । ଏହାର ନେତୃତ୍ୱ ନେଲେ ଲାଲା ଲଜପତ୍‌ରାୟ । ତାଙ୍କ ନେତୃତ୍ୱରେ ବିରାଟ ଶୋଭାଯାତ୍ରା ବାହାରିଲା । 'ସାଇମନ୍-ଫେରିଯାଅ' —ଧ୍ୱନିରେ ଚତୁର୍ଦ୍ଦିଗ ବ୍ୟାପିଗଲା । ସେହି ଶୋଭାଯାତ୍ରାକୁ ଲାହୋର ରେଳଷ୍ଟେସନ ନିକଟରେ ପୋଲିସ୍‌ମାନେ ଆକ୍ରମଣ କଲେ । ଲଜପତ୍‌ରାୟଙ୍କୁ ଗିରଫ୍ କରି ଲାଠି ପ୍ରହାର କଲେ । ଚକ୍ରାନ୍ତ ଅବସ୍ଥାରେ ପଞ୍ଜାବ କେଶରୀ ଲଜପତ୍ କହୁଥାନ୍ତି—"ମୋ ଉପରେ ତୁମ୍ଭେମାନେ ଯେଉଁ ପ୍ରହାର କରୁଛ ତାହା ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାରଙ୍କ ଶବାଧାର ଉପରେ ଗୋଟିଏ ଲେଖାଏଁ କଣ୍ଟା ସଦୃଶ ।" ସେହି ଆଘାତରେ ସେ ନଭେମ୍ବର ୧୭ ତାରିଖରେ ଇହଧାମ ତ୍ୟାଗକଲେ । ଏହି ଘଟଣା ଭାରତ ସାରା ଏକ ଶୃଙ୍ଖଳା ଦେଖାଇ ଦେଇଥିଲା । ସେତେବେଳେ ବାଞ୍ଛାନିଧିଙ୍କ ବିପ୍ଳବୀ ଲେଖନୀ ଗାଇ ଉଠିଲା—

"ସାଇମନ ରିପୋର୍ଟ ଲେଖା
ସରିଗଲା ହେଲା ବଜାରେ ବିକା
ହଜାର ହଜାର କରି କିଣିନେଲେ କେ କେତେ ରଙ୍କା,
ସାତ ଭାଇ ସାଇମନ
ନିଶ୍ଚେ ଦେବେ ଡୋମିନିଅନ୍
ରିପୋର୍ଟ ପଢି ସାରି ମୋ ଭାଇ ମୁହଁ ହେଲା ଫିକା ।"

\+ \+ \+ \+

କମିସନ୍ ଏକ ବାହାନା ମାତ୍ର । ଯାହା ସିଦ୍ଧାନ୍ତ ତାହା ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇ ସାରିଛି । ଅନ୍ୟ ଏକ ଗୀତରେ ସେ ବୋଲିଛନ୍ତି—

"ଆସିଥିଲା ସାଇମନ — ଦେବାକୁ ନୂଆ ଶାସନ
ଅଧିକାର ବଡ ବୋଲି କୁହାଯାଇଛି,

କପଟ ସେ ଅଧିକାର                    ଅ'ଗରୁ ରାନ୍ଧା ପ୍ରଭୁର
ମନ୍ତ୍ରୀବର ଢଗଡଡୁ କରି ଦେଇଛୁ ।''
( ବା. ପ., ପୃ. ୧୭୪-୧୭୫ )

॥ ଆଠ ॥

ଲବଣ ସତ୍ୟାଗ୍ରହ

ଓଡ଼ିଶା ଇତିହାସ ପ୍ରଣୟନର ସର୍ବ ପ୍ରଥମ ଐତିହାସିକ ଆଣ୍ଡ୍ରୁ ଷ୍ଟର୍ଲିଂ ତାଙ୍କ ଗ୍ରନ୍ଥରେ ଓଡ଼ିଶାର ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳର ଅସ୍ୱାସ୍ଥ୍ୟକର ହେଲେ ମଧ୍ୟ ସେତେବେଳକାର ସର୍ବ ଶ୍ରେଷ୍ଠ ଲୁଣ ସଂଗ୍ରହ କରାଯାଉଥିଲା ବୋଲି ଉଲ୍ଲେଖ କରିଛନ୍ତି । ଐତିହାସିକ କୃପାସିନ୍ଧୁ ମିଶ୍ର ମଧ୍ୟ ତାଙ୍କ 'ଉତ୍କଳ ଇତିହାସ' ପୁସ୍ତକରେ ଠିକ୍ ଏହିପରି ମତ ପୋଷଣ କରିଛନ୍ତି । ସେ ଲେଖିଛନ୍ତି – ''ଓଡ଼ିଶା ଲୁଣ ସମଗ୍ର ଭାରତ ମଧ୍ୟରେ ସର୍ବାପେକ୍ଷା ଉତ୍କୃଷ୍ଟ ଓ ଆଦରଣୀୟ ବୋଲି ପ୍ରଶଂସିତ ।'' (୨୦) ଓଡ଼ିଶାରୁ ଲୁଣ ମଧ୍ୟ ପ୍ରଦେଶ ଓ ଛୋଟନାଗପୁରକୁ ମଧ୍ୟ ରପ୍ତାନି କରାଯାଉଥିଲା । ୧୮୬୧ ମସିହା ପର୍ଯ୍ୟନ୍ତ ଇଷ୍ଟଇଣ୍ଡିଆ କମ୍ପାନୀ ଏକଚାଟିଆ ନୀତି ଅବଲମ୍ବନ କଲେ । ଜମିଦାର ମାନେ ମଧ୍ୟ ତାଙ୍କ ଅଞ୍ଚଳରେ ଲୁଣ ମାରି ପାରିଲେ ନାହିଁ । କେତେକଙ୍କୁ କେବଳ ପଟ୍ଟା ଦେଲେ । ସରକାର ମହଣ ପିଛା ତିନି ଟଙ୍କା ଗୁରିଅଣା ହିସାବରେ କର ନେଉଥିଲେ । • ଓଡ଼ିଶାରୁ ଇଷ୍ଟଇଣ୍ଡିଆ କମ୍ପାନୀ ବାର୍ଷିକ ୧୮ ଲକ୍ଷ ଟଙ୍କା ଏକଚାଟିଆ ବାଣିଜ୍ୟ ସୂତ୍ରରେ ଟିକସ ପାଉଥିଲେ । ବଙ୍ଗ ଆଇନ ଅନୁସାରେ ଚିଲିକାର ଉତ୍ତର ତଟରେ ଲୁଣ ଟିକସ ୩ ଟଙ୍କା ଗୁରିଅଣା ଥିଲାବେଳେ ଦକ୍ଷିଣ ଦିଗରେ ମାନ୍ଦ୍ରାଜ ଆଇନ ଅନୁସାରେ ଏକଟଙ୍କା ବାରଅଣା ମାତ୍ର ଥିଲା । ଏଥିରୁ ଜଣାଯାଏ ଯେ ଓଡ଼ିଶାରେ ଲୁଣ କର ସମଗ୍ର ଭାରତ ମଧ୍ୟରେ ସର୍ବାପେକ୍ଷା ଅଧିକ ଥିଲା । ତେଣୁ ଓଡ଼ିଶାରେ ଲୁଣ ବ୍ୟବସାୟ ୧୯୦୦ ମସିହା ବେଳକୁ ବନ୍ଦ୍ ହୋଇଗଲା । କିନ୍ତୁ ଓଡ଼ିଶାର ଲୁଣ ଉତ୍କୃଷ୍ଟ ହେତୁ ତା'ର ଉତ୍ପାଦନ ପାଇଁ ଓଡ଼ିଶାର ସରକାରୀ ଲବଣ-ବିଭାଗ ପରିଚାଳନା ଓ ନିୟନ୍ତ୍ରଣ ଦାୟିତ୍ୱ ମାନ୍ଦ୍ରାଜ ସରକାର ହାତରେ ସଂପୂର୍ଣ୍ଣ ଛାଡ଼ିଦେଇଥିଲେ । ଫଳରେ ଯେଉଁମାନେ ଓଡ଼ିଶାରେ ଲୁଣ ମାରି ପେଟ ପୋଷୁଥିଲେ ସେମାନେ ସର୍ବସ୍ୱାନ୍ତ ହୋଇ ପଡ଼ିଲେ ।

---

(୨୦) ଉତ୍କଳ ଇତିହାସ—ଶ୍ରୀ କୃପାସିନ୍ଧୁ ମିଶ୍ର – ବୁକ୍ସ ଏଣ୍ଡ୍ ବୁକ୍ସ କଟକ-୨ ୧୯୬୯—ପୃ: ୨୧୩ ।

୧୮୮୮ ମସିହାରେ ଏଲାହାବାଦ୍ ଠାରେ ଭାରତୀୟ ଜାତୀୟ କଂଗ୍ରେସ୍‌ର ଅଧିବେଶନ ଇଂରେଜ ସରକାରଙ୍କର ଏହି ଲବଣ ଟିକସ୍ ବୃଦ୍ଧି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ଉତ୍କଳ ଗୌରବ ମଧୁସୂଦନ ବଂଗଳା ଲେଜିସ୍ ଲେଟିଭ୍ କାଉନ୍‌ସିଲ୍‌ରେ ସଦସ୍ୟ ଥିଲା ବେଳେ ୧୮୯୭ ମସିହା ଏପ୍ରିଲ୍ ମାସରେ ଏ ସଂପର୍କରେ ଭାଷଣ ଦେଇଥିଲେ । ପରିଣାମରେ ସରକାରୀ ସଦସ୍ୟ ମିଷ୍ଟର ରସ୍‌ଲେ କହିଲେ ଯେ ଓଡ଼ିଶାର ଲବଣ ବିଭାଗକୁ ମାନ୍ଦ୍ରାଜ ଶାସନରୁ ଆଣି ବଙ୍ଗଶାସନରେ ରଖାଯିବା ପ୍ରସ୍ତାବ ବର୍ତ୍ତମାନ ଭାରତ ସରକାରଙ୍କର ବିଚାରାଧୀନ ଅଛି । ସମଗ୍ର ଭାରତର ଲବଣ ଆଇନ୍‌ର ସଂଶୋଧନ ମଧ୍ୟ କରାଯିବାର ପ୍ରସ୍ତାବ ରହିଛି । ପରେ ପରେ ଓଡ଼ିଶାର ନିମକ ମାହାଲ୍‌କୁ ମାନ୍ଦ୍ରାଜ ଶାସନରୁ ଫେରାଇ ଆଣି ପୂର୍ବପରି ବଙ୍ଗଳା ଶାସନରେ ରହିଲା । ଏହାର ୪୭ ବର୍ଷ ପରେ ୧୯୩୦ ମସିହାରେ ମହାତ୍ମାଗାନ୍ଧି ଏହି ଲବଣ ଶିଳ୍ପକୁ କେନ୍ଦ୍ର କରି ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିଥିଲେ ।

୧୯୧୮ ମସିହା ମାର୍ଚ୍ଚ ମାସରେ ଓଡ଼ିଶାରେ ଲବଣ ଶିଳ୍ପର ବିକାଶ ପାଇଁ ଉତ୍କଳମଣି ଗୋପବନ୍ଧୁ ବିହାର ଓଡ଼ିଶାର ବ୍ୟବସ୍ଥା ସଭାରେ ସଦସ୍ୟ ଥିଲା ବେଳେ ପ୍ରସ୍ତାବ ଦେଇଥିଲେ । ତାଙ୍କ କଥା ସରକାର ହୃଦୟଙ୍ଗମ କରିଥିଲେ ଏବଂ ଏହି ଶିଳ୍ପର ପୁନରୁଦ୍ଧାର ହେଲେ ଏହା ସଫଳ ହେବକି ନାହିଁ ତା'ର ଅନୁସନ୍ଧାନ ପାଇଁ ସରକାର ବ୍ୟବସ୍ଥା କରିଥିଲେ ।

୧୯୨୯ ମସିହାରେ ଲାହୋର କଂଗ୍ରେସ୍‌ରେ ସିଦ୍ଧାନ୍ତ ଗ୍ରହଣ କରାଗଲା ଯେ ଭାରତର ଜନସାଧାରଣ ସ୍ୱାଧୀନତା ଚାହାନ୍ତି । ଏଥିପାଇଁ ସେମାନେ ଆନ୍ଦୋଳନ କରିବାକୁ ପ୍ରସ୍ତୁତ । ତେଣୁ ଆଇନ ଅମାନ୍ୟ ଆନ୍ଦୋଳନର ବ୍ୟବସ୍ଥା ହେଲା । ଏସେମ୍ବ୍ଲି ଓ କାଉନ୍‌ସିଲ୍‌ରୁ କଂଗ୍ରେସ୍ ସଦସ୍ୟ ମାନେ ଇସ୍ତଫା ଦେଲେ । ୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ ସାରା ଭାରତରେ ସଭା ମାଧ୍ୟମରେ ଆନ୍ଦୋଳନ ଆରମ୍ଭ ହେଲା । ସେହି ବର୍ଷ ମାର୍ଚ୍ଚ ୧୨ ତାରିଖରେ ଗାନ୍ଧିଜୀ ଭାରତ ସରକାରଙ୍କ ଲବଣ ଆଇନ୍‌କୁ ଅମାନ୍ୟ କରିବା ପାଇଁ ୭୯ ଜଣ ସତ୍ୟାଗ୍ରହୀଙ୍କ ସହିତ ସାବରମତୀ ଆଶ୍ରମରୁ ଦାଣ୍ଡି ଯାତ୍ରା ଆରମ୍ଭ କଲେ । ସେ ଗିରଫ୍ ହେଲା ପରେ ଅବାସ ତୟାବଜୀ ଏହାର ନେତୃତ୍ୱ ନେଲେ । ଏହି ୭୯ ସତ୍ୟାଗ୍ରହୀଙ୍କ ମଧ୍ୟରେ ଶ୍ରୀମତୀ ଦାସ ଅନ୍ୟତମ ।

ଓଡ଼ିଶାରେ ଲବଣ ସତ୍ୟାଗ୍ରହର ବାର୍ତ୍ତା ପ୍ରସାରିତ ହୋଇଗଲା । ଓଡ଼ିଶାରେ ଗୋପବନ୍ଧୁ ଚୌଧୁରୀ, ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର, ହରେକୃଷ୍ଣ ମହତାବ,

ନୀଳମଣି ପ୍ରଧାନ, ସର୍ଦ୍ଦାର ସୁରେନ୍ଦ୍ର ଦାସ ପ୍ରଭୃତି ୧୯୩୦ ମସିହା ଏପ୍ରିଲ୍ ମାସ ୬ ତାରିଖରେ ବାଲେଶ୍ୱରର ୧୨ ମାଇଲ ପୂର୍ବସ୍ଥ ଇଞ୍ଚୁଡ଼ି ଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଏହା ପୂର୍ବରୁ ମାର୍ଚ୍ଚ ୧୬ ତାରିଖରେ ଗୋପବନ୍ଧୁ ଚୌଧୁରୀଙ୍କ ବାସଭବନରେ ପ୍ରାଦେଶିକ କଂଗ୍ରେସ୍ କମିଟିର ବୈଠକ ବସିଥିଲା । ଗୋପବନ୍ଧୁ ଚୌଧୁରୀ, ପ୍ରାଣକୃଷ୍ଣ ପଡ଼ିହାରୀ, ନବକୃଷ୍ଣ ଚୌଧୁରୀ ଆଦି ବୈଠକରେ ଯୋଗ ଦେଇ ସ୍ଥିର କଲେ ଯେ ଏପ୍ରିଲ୍ ୬ ତାରିଖରେ ଇଞ୍ଚୁଡ଼ି ପାଇଁ କଟକରୁ ପଦଯାତ୍ରା ଆରମ୍ଭ ହେବ । ସେଦିନ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ପଦବ୍ରଜ ଆରମ୍ଭ ହେଲା । ଆଠ ତାରିଖରେ ସେ ଗିରଫ୍ ହେଲେ । ନିର୍ଦ୍ଦିଷ୍ଟ ତାରିଖରେ ନ ପହଞ୍ଚିବାରୁ ଆଗୁଆ ହରିହର ମହତାବ ଦଳର ମୁଖ୍ୟ ହୋଇ ଏପ୍ରିଲ୍ ୧୩ ତାରିଖରେ ପ୍ରଥମେ ଇଞ୍ଚୁଡ଼ିର ବେଳାଭୂମିରେ ଲୁଣ ମାରି ଗିରଫ୍ ହେଲେ । ଗୁଜରାଟର ଦାଣ୍ଡି ଯାତ୍ରା ପରେ ଏହା ଭାରତରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ଜୀବରାମଜୀ କଲ୍ୟାଣଜୀ କୋଠାରୀ, ନୀଳକଣ୍ଠ, କୃଷ୍ଣ ପ୍ରସାଦ ମହାନ୍ତି, କରୁଣାକର, ବିଶ୍ୱନାଥ, ବନୋବା ଚୌଧୁରୀ ଓ ନନ୍ଦକିଶୋର ଦାସ ସମସ୍ତେ ଜେଲ୍ ଦଣ୍ଡ ଭୋଗିଲେ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଏହି ସନ୍ଧାନ୍ତରେ ପ୍ରାୟ ତିନି ହଜାର ଲୋକ କାରାଦଣ୍ଡ ଭୋଗିଥିଲେ । ରମା ଦେବୀ, ମାଳତୀ ଚୌଧୁରୀ ଓ ସରଳା ଦେବୀଙ୍କ ନେତୃତ୍ୱରେ ବହୁ ସ୍ୱେଚ୍ଛାସେବିକା ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ । ସେହିପରି ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ ଇରମ ଓ ପଡ଼ୁଆଁ ଠାରେ ମଧ୍ୟ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା । କାରଣ ଗୋପବନ୍ଧୁ ଚୌଧୁରୀ ୧୯ ତାରିଖରେ ମୁକ୍ତ ହୋଇ ବାଲେଶ୍ୱର ଯାଇ ୨୦ ତାରିଖରେ ପ୍ରାଦେଶିକ କଂଗ୍ରେସ୍ କମିଟିରେ ସ୍ଥିର କଲେ ଯେ ବାଲେଶ୍ୱର ଉପକୂଳବର୍ତ୍ତୀ ସବୁ ଗ୍ରାମରେ ସତ୍ୟାଗ୍ରହ ଚାଲିବ । ସାର୍ଥାରେ ମଧ୍ୟ ଲବଣ ସତ୍ୟାଗ୍ରହ ଚାଲିଲା । ଏହି ବିଷୟରେ 'Young India' ରେ ୧୯୩୦ ମସିହା ମେ' ମାସ ୧ ତାରିଖରେ ବିଶଦ ବିବରଣୀ ପ୍ରକାଶ ପାଇଥିଲା ।

ଭଦ୍ରକ ସବ୍‌ଡିଭିଜନର ଦାୟିତ୍ୱରେ ଥିବା ବାଞ୍ଛାନିଧି ଏହି ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇଥିଲେ । ସେ ତାଙ୍କ ଗ୍ରାମ ଇରମରେ ପ୍ରଥମେ କାର୍ଯ୍ୟ ଆରମ୍ଭ କଲେ । ସେତେବେଳେ ସେ ଅଞ୍ଚଳର ସମୁଦ୍ର କୂଳରେ ଦୁଇଟି ଲୁଣ ମରା କେନ୍ଦ୍ର ଉନ୍ମୋଚନ କରାଯାଇଥିଲା । ଗୋଟିଏ ଇରମର କୁଲଖଟି ଆଡ଼ୁଆ ଏବଂ ଅନ୍ୟଟି ହେଲା-ଇରମର ଉତ୍ତର ଦିଗରେ ଅବସ୍ଥିତ ବିଚ୍ଛଦା (ପଡ଼ୁଆଁ) ଆଡ଼ୁଆ ।

ଇରମର ବଙ୍କ ତ୍ରିପାଠୀ ଓରଫ୍ ଦିବାକର ତ୍ରିପାଠୀଙ୍କ ବାସଗୃହ ଥିଲା ଲବଣ ସତ୍ୟାଗ୍ରହ ଆନ୍ଦୋଳନର କାର୍ଯ୍ୟାଳୟ । ଜମିଦାର ରାଧାକାନ୍ତ ପାଢ଼ୀ ଯଦିଓ

ପ୍ରକାଶ୍ୟରେ ଇଂରେଜ ସରକାରଙ୍କୁ ସମର୍ଥନ କରୁଥାନ୍ତି, ତଥାପି ଏହି ଆନ୍ଦୋଳନ ପ୍ରତି ତାଙ୍କର ଆନ୍ତରିକତା ଥିଲା ।

ଇରମସ୍ଥ, ମେଳନ ପଡ଼ିଆରେ ସଭାମାନ ଅନୁଷ୍ଠିତ ହେଉଥିଲା । ଏଥିରେ ଲକ୍ଷ୍ମୀନାରାୟଣ ପାଢ଼ୀ, ସନ୍ଥ ବେହେରା, ଦ୍ୱିଜ ନନ୍ଦ ବାରୁ, କୃଷ୍ଣ ଚନ୍ଦ୍ର ପାଣି, ନଦୀ ଗାଁର ଶରତ ଚନ୍ଦ୍ର କାନୁନ୍‌ଗୋ, ମାଗୁଣି ତ୍ରିପାଠୀ, ବାଞ୍ଛାନିଧି ଅଗସ୍ତି, ପଦ୍ମାକର ତ୍ରିପାଠୀ, କାଶୀନାଥ ଦାସ, ଗୋପାଳ ଚନ୍ଦ୍ର ଦାସ, ମଧୁସୂଦନ ତ୍ରିପାଠୀ, ପଞ୍ଚାନନ ତ୍ରିପାଠୀ, ଗଣେଶ ପ୍ରସାଦ ତ୍ରିପାଠୀ ପ୍ରଭୃତି ବହୁ କଂଗ୍ରେସ୍ କର୍ମୀ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ବାଲେଶ୍ୱର ଜିଲ୍ଲାର ଲବଣ ସତ୍ୟାଗ୍ରହ କେନ୍ଦ୍ର ଗୁଡ଼ିକର ତତ୍ତ୍ୱାବଧାରକ ଥିଲେ ପଣ୍ଡିତ ନୀଳକଣ୍ଠ ଦାସ । ସେ ଇରମ କେନ୍ଦ୍ରର ତତ୍ପରତା ଓ ନିଷ୍ଠାରେ ମୁଗ୍ଧ ହୋଇ କର୍ମୀ ମାନଙ୍କୁ ଅତି ପ୍ରଶଂସା କରି ଚିଠି ସବୁ ଲେଖିଥିଲେ (୨୧) ।

ପ୍ରତ୍ୟହ ଦିନ ତ୍ରୟ ଗୋଟାଏ ଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ସମୁଦ୍ରରୁ ପାଣି ଆଣି ଲୁଣ ମାରିବା ପାଇଁ ଶୋଭାଯାତ୍ରା ଚାଲୁଥିଲା । ପ୍ରଥମେ ସ୍ୱେଚ୍ଛା ସେବକ ମାନେ ସନ୍ଧ୍ୟାରେ କାର୍ଯ୍ୟାଳୟରେ ପରେଡ଼ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଉଥିଲା । ପୁରୁଷ ମାନଙ୍କର ନେତୃତ୍ୱ ନେଉଥିଲେ ବାଞ୍ଛାନିଧି ଓ ନାରୀ ମାନଙ୍କର ନେତୃତ୍ୱ ନେଉଥିଲେ ବାଞ୍ଛାନିଧିଙ୍କ ମାତା କୁନ୍ଦଲତା ଦେବୀ । ନିଜେ ବାଞ୍ଛାନିଧି ତାଙ୍କ ମା'ଙ୍କ ମୁଣ୍ଡରେ ସମୁଦ୍ର କୂଳରେ ଲୁଣ ମାରିବାକୁ ଟୋକେଇ ଧରେଇ ଦେଇଥିଲେ ଇଂରେଜ ସରକାରଙ୍କ ଆଇନ୍ ଅମାନ୍ୟ କରିବାକୁ ।

ବାସୁଦେବପୁର ଥାନାରୁ ବହୁ ସଂଖ୍ୟକ ଲାଠିଧାରୀ ଏବଂ ସଶସ୍ତ୍ର ପୋଲିସ୍ ଆସି ଲୁଣ ମାରିବାକୁ ଦମନଲୀଳା ଆରମ୍ଭ କରିଦେଲେ । ବହୁ କର୍ମୀ କ୍ଷତ ବିକ୍ଷତ ହେଲେ । ସମସ୍ତଙ୍କ ମୁହଁରେ ବାଞ୍ଛାନିଧିଙ୍କର ସେହି ଐତିହାସିକ ସ୍ମରଣୀୟ ଗୀତ ଲାଗି ରହିଥାଏ—

"ଗାଅ ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ
ସ୍ୱାଧୀନ, ସ୍ୱାଧୀନ, ସ୍ୱାଧୀନରେ,
ଗାଏ ସାଗର ଭୂଧର ଅମ୍ବର ଚୁମ୍ବିତ
ଭଲ ହିମାଚଳ ଗିରିବର କମ୍ପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ ।୦।

---

(୨୧) ସ୍ୱାଧୀନତାର ସଂଗ୍ରାମ ଭୂମି-ଇରମ-ଶ୍ରୀ ସୁଧାକର ଦାସ- ୧୯୭୭-ପୃ: ୯ ।

ନମ୍ରେ ବନ୍ଧ୍ୟଗିରି କାନନ କୁଞ୍ଜେ
ଲମ୍ବେ ନର୍ତ୍ତଶ୍ରେଣୀ ପଯୋଧ ପୁଞ୍ଜେ
ଚପଳା ଚମକେ ଗଗନେ ପୁଲକେ ନୀରବ ବନ୍ଧନରେ । ୧ ।

ପାବନୀ ଗଙ୍ଗା ଯମୁନା ସଙ୍ଗେ
ସିନ୍ଧୁ ମହାନଦୀ କାବେରୀ ରଙ୍ଗେ
ପ୍ଲାବିତ ଭୁବନ ସୁରଧୂନୀ ଶୋଭନ ସ୍ୱଚିତ ସ୍ୱାଧୀନରେ । ୨ ।

ବଙ୍ଗୋପସାଗର ଉତ୍କଳ ଦେଶେ
ନର୍ତ୍ତନ କୀର୍ତ୍ତନ ଉନ୍ନତ ବେଶେ
ଅଙ୍ଗେ ରଙ୍ଗେ ତରଙ୍ଗେ ଭଙ୍ଗେ ସ୍ୱଚିତ ସ୍ୱାଧୀନରେ । ୩ ।

ଜାତୀୟ କେତନ ଦ୍ରୁତଇ କି ଗର୍ବ
ଅଖଣ୍ଡ ଦର୍ପ କରିବ କି ଖର୍ବ
ସେତ ଜାତୀୟ ଗୌରବ, ଜାତୀୟ ସଂପଦ
ଜାତୀୟ ଜୀବନରେ । ୪ ।"

ସେତେବେଳେ ଏହି ଗୀତରେ ସମଗ୍ର ଉତ୍କଳ ଖଣ୍ଡରେ ପ୍ରସାର ଲାଭ କରିଥିଲା । ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର 'ଗାନ୍ଧିଜୀ ଓ ଓଡ଼ିଶା' ଗ୍ରନ୍ଥରେ ଲେଖିଛନ୍ତି— " + + + ସେ ସମୟରେ ଜନତାର ଉନ୍ମାଦନା ଆଜି କେବଳ ଅନୁମାନ କରିହେବ , ଓଡ଼ିଶାର ଗଗନ ପବନ ପୂରିଥାଏ, କବି ବାଞ୍ଛାନିଧିଙ୍କ ରୋମାଞ୍ଚକାରୀ ଗାନ + + + " (୨୨) । ଶୋଭାଯାତ୍ରା ଆରମ୍ଭ ପୂର୍ବରୁ କବି ବାଞ୍ଛାନିଧି ସମସ୍ତଙ୍କୁ ଜାଗ୍ରତ କରାଇ ଇଂରେଜ ସରକାରଙ୍କ ଆଇନ୍ ଅମାନ୍ୟ କରିବାକୁ ଦୃଢ଼ କଣ୍ଠରେ ପ୍ରବର୍ତ୍ତାଉ ଥିଲେ । ତାଙ୍କର ଓଜଃସ୍ୱିନୀ ଭାଷଣ ଓ ସଂଗୀତ ଜନତା ହୃଦୟରେ ଉଦ୍ଗୀରଣ କରିବାର ଶକ୍ତି ସୃଷ୍ଟି କରି ପାରୁଥିଲା ଏବଂ ଦେଶସେବାର ପ୍ରବଳ ଉତ୍ତେଜନାରେ ପୋଲିସ୍‌ର ଲାଠି ଓ ବନ୍ଧୁକକୁ ଭୟ ନକରି କଦମ୍ କଦମ୍ ଆଗେଇ ଯାଉଥିଲେ ବଙ୍ଗୋପସାଗର କୂଳକୁ ।

ସ୍ତ୍ରୀ ଲୋକମାନଙ୍କ ଉପରେ ପୋଲିସ୍ ଲାଠି ଚାର୍ଜ କରୁ ନଥିଲେ । ତେଣୁ ପରବର୍ତ୍ତୀ କାର୍ଯ୍ୟକ୍ରମରେ ପୁରୁଷ ମାନେ ସ୍ତ୍ରୀ ମାନଙ୍କ ଘେରା ମଧ୍ୟରେ ଯାଇ ସମୁଦ୍ରରୁ ପାଣି ଆଣି ଲୁଣ ମାରୁଥିଲେ । ତଥାପି ଲାଠିଚାର୍ଜ ବନ୍ଦ ହେଉ ନାହିଁ । ସମସ୍ତଙ୍କ ମୁହଁରେ —"ଜୟ ସ୍ୱାଧୀନ ଭାରତ—ଜିନ୍ଦାବାଦ୍—" ସ୍ଲୋଗାନ ସଂଗେ ଗୋଟିଏ ପଦ ମୁହଁରେ ଲାଗି ରହୁଥିଲା—

(୨୨) ଗାନ୍ଧିଜୀ ଓ ଓଡ଼ିଶା—୧୯୬୯—ପୃ: ୮୧.

"ଯିବ ପଛେ ପରାଣ,
ଛାଡ଼ିବୁ ନାହିଁ ଲୁଣ ।"

ଏହି ଲବଣ ସତ୍ୟାଗ୍ରହରେ ପୋଲିସ୍ ବାଞ୍ଛାନିଧିଙ୍କୁ ଗିରଫ୍ କରି କଟକ ଜେଲ୍‌କୁ ପଠାଇ ଦେଲେ (୨୩) । ତାଙ୍କ ସହିତ ମଧ୍ୟ ଗିରଫ୍ ହେଲେ କୃଷ୍ଣଚନ୍ଦ୍ର ପାଣି, ବଙ୍କ ବାବୁ, କସ୍ତୁରୀ ବାବୁ, ବୃନ୍ଦାବନ ପ୍ରଭୃତି । ପଥ ମଧ୍ୟରେ ଏଡ଼୍‌ତାଳ, ପଦ୍ମପୁର ଅଣ୍ଡିରାଇ, ସାବରଙ୍ଗ ଓ ଭଦ୍ରକ ଆଦି ସ୍ଥାନରେ ସତ୍ୟାଗ୍ରହୀ ମାନଙ୍କୁ ପୁଷ୍ପମାଲ୍ୟ ଅର୍ପଣ କରି ସମ୍ବର୍ଦ୍ଧନା ଦିଆଯାଇଥିଲା । କଟକ ଜେଲ୍‌ରେ ଛଅ ମାସ ପାଇଁ ସେମାନଙ୍କୁ କାରାଦଣ୍ଡ ହୋଇଥିଲା । ବାଞ୍ଛାନିଧିଙ୍କୁ ଦୁଇଶହ ଟଙ୍କା ଜୋରିମାନ ହୋଇଥିଲା ଏବଂ ତାଙ୍କ ପିତାଙ୍କୁ ମଧ୍ୟ ଏକଶତ ଟଙ୍କା ଜୋରିମାନା ହୋଇଥିଲା । ଟଙ୍କା ଦେଇ ନପାରିଲେ ଜେଲ୍ ଯିବାକୁ ହେବ ଏବଂ ସମ୍ପତ୍ତି ବାଜ୍ୟାପ୍ତି ହୋଇଯିବ । ବାଞ୍ଛାନିଧିଙ୍କ ଉଦ୍ଦେଶ୍ୟ ଥିଲା ସେ ଜେଲ୍ ବରଣ କରିବେ । କିନ୍ତୁ ଜୋରିମାନା ଦେବେ ନାହିଁ । ଶେଷକୁ ସେ ଜେଲ୍ ଦଣ୍ଡକୁ ନିଜେ ହସ ହସ ବଦନରେ ଗ୍ରହଣ କରିନେଲେ ମଧ୍ୟ ।

କିନ୍ତୁ ଏକଥା ତାଙ୍କ ଶ୍ୱଶୁର ଜମିଦାର ରାଧାକାନ୍ତ ଦାସ ପଟ୍ଟନାୟକ ସହ୍ୟ କରି ପାରିଲେ ନାହିଁ । ସାମାନ୍ୟ ଦୁଇଶହ ଟଙ୍କା ପାଇଁ ଜ୍ୱାଇଁ ତାଙ୍କର ଜେଲ୍ ଯିବେ ? ତେଣୁ ସେ ଚକ୍ରଧର ବାବୁଙ୍କ ପାଖରେ ଆସି ଦୁଇଶହ ଟଙ୍କା ଜୋରିମାନା ଦେଇ ବାଞ୍ଛାନିଧିଙ୍କୁ ମୁକୁଳାଇବାର ବ୍ୟବସ୍ଥା କଲେ । ଏହି ଘଟଣାରେ ଶ୍ୱଶୁର ଓ ଜ୍ୱାଇଁଙ୍କ ମଧ୍ୟରେ ମନାନ୍ତର ସୃଷ୍ଟି ହୋଇଥିଲା । ସେ କହୁଥିଲେ—"ମୋର ଜେଲ୍ ଦଣ୍ଡ ସରିନାହିଁ, ମୁଁ କାହିଁକି ଖଲାସ୍ ହେବି ?"

ବାଞ୍ଛାନିଧିଙ୍କ ଗିରଫ୍ ହେବାର ଶୁଣି ଏବଂ ତାଙ୍କୁ ଜେଲ୍‌ଦଣ୍ଡ ହେବାର ଶୁଣି ମାତା କୁନ୍ତଳତା ଦେବୀ ଅସୁସ୍ଥ ହୋଇ ପଡ଼ିଲେ । ଶେଷକୁ ଶଯ୍ୟାଶାୟୀ ହେଲେ । ସବୁ ବେଳେ ସେ ବାଞ୍ଛାନିଧିଙ୍କ କଥା ଚିନ୍ତା କରି କାନ୍ଦି ଉଠି ବ୍ୟସ୍ତ ହୋଇ ପଡ଼ୁଥିଲେ । କ୍ରମେ ତାଙ୍କ ଶରୀରର ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା ଏବଂ ବାଞ୍ଛାନିଧି ଜେଲ୍ ଯିବାର ସପ୍ତମ ଦିବସରେ ସେ ବାଞ୍ଛାନିଧିଙ୍କୁ ଝୁରି ଝୁରି ପ୍ରାଣତ୍ୟାଗ କଲେ ।

—୫୦୫—

(୨୩) ସ୍ୱାଧୀନତାର ସଂଗ୍ରାମ ଭୂମି—ଈରମ—ପୃ: ୯ ।

## ॥ ନଅ ॥

### ଶ୍ରୀଜଙ୍ଗ ଅତ୍ୟାଗ୍ରହ

ଶ୍ରୀଜଙ୍ଗ ଗ୍ରାମଟି ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଗୋପାଳପୁରର ଗୃଣ କିଲୋମିଟର ଉତ୍ତର ଦିଗରେ ଅବସ୍ଥିତ । ଏହାର ଉତ୍ତର-ପୂର୍ବ ଦିଗରେ ଲବଣ ତୀର୍ଥ ଇଞ୍ଚୁଡ଼ି ଗ୍ରାମ ଅବସ୍ଥିତ । ବଙ୍ଗୋପସାଗର କୂଳରେ ଅବସ୍ଥିତ ଏହି ଗ୍ରାମଟି ୭୫୨ ଘର ବିଶିଷ୍ଟ ଏକ ବଡ଼ ଗ୍ରାମ । ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନରେ ଶ୍ରୀଜଙ୍ଗର ସ୍ୱାଧୀନତା ସଂଗ୍ରାମୀ ଜମିଦାର ଶ୍ରୀ ଗୌର ମୋହନ ଦାସ ମହାପାତ୍ର ନେତୃତ୍ୱ ନେଇଥିଲେ । ୧୯୩୦ ମସିହାରେ ଇଞ୍ଚୁଡ଼ି ଠାରେ ଲବଣ ସତ୍ୟାଗ୍ରହ ଏବଂ ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ଜୀବରାମ କଲ୍ୟାଣୀ, ସରଳା-ଦେବୀ, ମାଳତୀ ଚୌଧୁରୀ, ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ ଆଦିଙ୍କ ଆଗମନ ଏହି ଅଞ୍ଚଳରେ ଏକ ଜାତୀୟ ଉତ୍ତେଜନା ସୃଷ୍ଟି କରିଥିଲା । ପ୍ରଥମ ପର୍ଯ୍ୟାୟରେ ଅସହ-ଯୋଗ ଆନ୍ଦୋଳନ, ଦ୍ୱିତୀୟ ପର୍ଯ୍ୟାୟରେ ଲବଣ ସତ୍ୟାଗ୍ରହ ଏବଂ ତୃତୀୟ ପର୍ଯ୍ୟାୟରେ ସମୂହ ଜମାଦା ଟିକସ ଆନ୍ଦୋଳନ ଶ୍ରୀଜଙ୍ଗ ଅଞ୍ଚଳରେ ଭୟଙ୍କର ରୂପ ଧାରଣ କରିଥିଲା । ଅସହଯୋଗ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହ ପରେ ଜାତୀୟ ଉତ୍ତେଜନାକୁ ଶୀଥିଳ କରିବା ପାଇଁ ଇଂରେଜ ସରକାର Punitive Tax ବା ଦଣ୍ଡବିଧାୟକ ଖଜଣା ନାମରେ ଗୋଟିଏ ଟିକସ ୧୩ ଖଣ୍ଡ ଗାଁ ଅଠାଳବାଦ ଠାରୁ ଶ୍ରୀଜଙ୍ଗ ପର୍ଯ୍ୟନ୍ତ ଜାରିକଲେ । ମୁଣ୍ଡପ୍ରତି ପନ୍ଦର ଟଙ୍କା କରି ଏହି ଖଜଣା ଆଦାୟ କରାଗଲା । ଏହି ଅନ୍ୟାୟ ଟିକସ ବିରୁଦ୍ଧରେ ସର୍ବଶ୍ରୀ ଗୌର ମୋହନ ଦାସ ମହାପାତ୍ର, ବିଦ୍ୟାଧର ରଥ ଓ ନବକୃଷ୍ଣ ଚୌଧୁରୀ ନେତୃତ୍ୱ ନେଲେ । ଏହି ଟିକସ ଆଦାୟ କରୁଥିଲେ ତତ୍କାଳୀନ ପ୍ରେସିଡେଣ୍ଟ ଡାଳପଡା ନିବାସୀ ଶ୍ରୀ ଭଗିରଥି ଦାସ ।

୧୯୩୦ ମସିହା ଜୁନ୍ ମାସ ୧୩ ତାରିଖ ଦିନ ପ୍ରେସିଡେଣ୍ଟ ଶ୍ରୀ ଧରଣୀ ଧର ରଥଙ୍କ ଘରକୁ ଯାଇ ସାଥୀରେ ପୋଲିସ୍ ଇନ୍ସପେକ୍ଟର, କନେଷ୍ଟବଳ, ଦଫାଦାର ଆଦିଙ୍କୁ ନେଇ ଖଜଣା ମାଗିଲେ । ସେ ଏହି ଅନ୍ୟାୟ ଟିକସ ବିରୁଦ୍ଧରେ ସ୍ୱର-ଉତ୍ତୋଳନ କରିବାରୁ ଗିରଫ୍ ଆରମ୍ଭ କଲେ । ଶଙ୍ଖନାଦ ହେବାରୁ ଶହଶହ ଲୋକ ଏକତ୍ର ହୋଇଗଲେ । ସର୍ବଶ୍ରୀ କୁମୁଦ ଦାସ, ଭୋଳାନାଥ ଦାସ ଓ ବାସୁଦେବ ରଥଙ୍କୁ ଗିରଫ କରି ଇନ୍ସପେକ୍ଟର ଗ୍ରାମର ପୂର୍ବ ଦିଗସ୍ଥ ବଡ଼ ପୁଷ୍କରିଣୀ ଅତ୍ୟୁତା ସାଗର କୂଳରେ ତାଙ୍କୁ ଅଟକ ରଖିଲେ । ଜନଗହଳି ବଢ଼ି ଯିବାରୁ ଲାଠିଚାର୍ଜ ମଧ୍ୟ ହେଲା । କିନ୍ତୁ ଜନଉତ୍ତେଜନା ବୃଦ୍ଧି ପାଇଲା ଏବଂ ପୋଲିସ୍ ଇନ୍ସପେକ୍ଟର ଓ କନେଷ୍ଟବଳ ମାନଙ୍କ ଉପରେ ଆକ୍ରମଣ ହେଲା । ଏହି ଖବର

ବାଲେଶ୍ୱରରେ ପଦାର୍ପଣ କରିବା ପରେ ଡେପୁଟି ମାଜିଷ୍ଟ୍ରେଟ୍, ଏସ୍. ପି. ପ୍ରଭୃତି ସଶସ୍ତ୍ର ଫୋର୍ସ ନେଇ ଅସି ପହଁଚ ସେଠାରେ ଗୁଳାଗୋଳା ଗିରଫଦାରୀ ଆରମ୍ଭ କରିଦେଲେ । ତା'ପରେ ଫୋର୍ସମାନେ ଗ୍ରାମବାସୀଙ୍କ ଉପରେ ଅକଥନୀୟ ଅତ୍ୟାଚାର ଆରମ୍ଭ କରିଥିଲେ । ଘରେ ପଶି ସେମାନେ ସୁନାରୂପା ଲୁଟିନେଲେ । ନାରୀମାନଙ୍କ ଉପରେ ପାଶବିକ ଅତ୍ୟାଚାର ଚାଲିଲା । ଶ୍ରୀଜଙ୍ଗର ଏହି ଅମାନୁଷିକ ଅତ୍ୟାଚାରର ବର୍ଣ୍ଣନା ଦେବାକୁ ଯାଇ "ଉତ୍କଳ ବୀଣା"ର ଦ୍ୱିତୀୟ ଝଙ୍କାରରେ ଏକ ଦୀର୍ଘ ସଂଗୀତରେ କବିକଣ୍ଠ ବାଞ୍ଛାନିଧି ଲେଖିଛନ୍ତି—

—ଶ୍ରୀଜଙ୍ଗ ସଙ୍ଗୀତ—

"କଏ ନ ଶୁଣିଛୁ ସେ ଦାରୁଣ କଥା କଏ ନ ଜାଣିଛୁ ଗୋ
ଯିଏ ବା ଦେଖିଛୁ ସେ ନାରକୀ ଲୀଳା ତା ହୃଦେ କି ବ୍ୟଥା ଆଣିଛୁ ଗୋ ।୦।

ଦୁଃଖିନୀ ଉତ୍କଳେ ଶ୍ରୀଜଙ୍ଗ କାହାଣୀ
ପ୍ରତି ପ୍ରାଣେ ଦେଲା କି ସନ୍ତାପ ଆଣି
ପ୍ରତି ଲୋମ କୂପ ଶିହରି ଉଠିଲା କାଣେ ଯେ ମନକୁ ଆଣିଛୁ ଗୋ ।୧।

\+ \+ \+ \+

କାଢ଼ି ନେଲେ ଘରୁ ସିନ୍ଦୁକ କବାଟ
ଚଡ଼ି ଦେଲେ ଖଣ୍ଡ ମାରି ବେତ ଗୋଟ
ବୋହି ନେଲେ ଖାଲକରି ଅମାରକୁ (ସତେ) ବାପା ଅଜା ପଟ କଣିଛୁ ଗୋ ।୩।

ଖୁଲିଲେ ଶେଯକୁ ପାଦ ପୋଗ୍ଧ କରି
ଜାଳିଲେ ଚଉକି କାଠ ଆଲମାରି
ନଡ଼ ଚେଙ୍କିକଣ୍ଠା ଭୋଜନ କରିବା ଏକଥା ମୁଁ ସତ ମଣିଛୁ ଗୋ ।୪।

\+ \+ \+ \+

ଗାନ୍ଧି କଲେ ସନ୍ଧି ମୁକୁଳିଲେ ବନ୍ଦୀ
ଶ୍ରୀଜଙ୍ଗ ବେଳକୁ ହେଲା ଏକ ଫନ୍ଦି
'ଅହିଂସା ନୁହଇ ହିଂସା ଅପରାଧୀ' କଳମ ଫଳକୁ କଣିଛୁ ଗୋ ।୮।"

( ବା:ପ., ପୃ. ୧୫୨ )

– X –

## ॥ ଦଶ ॥

### ଗୋଲ ଟେବୁଲ ବୈଠକ

ଇଂରେଜ ସରକାର ଓ କଂଗ୍ରେସ ମଧ୍ୟରେ ୧୯୩୧ ମାର୍ଚ୍ଚ ମାସରେ ଯୁଦ୍ଧ ବନ୍ଦ ଚୁକ୍ତି ହେଲା । ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରାଗଲା । ଅର୍ଡିନାନ୍‌ସ ଉଠେଇ ଦିଆଗଲା । ଗାନ୍ଧିଜୀ ଗୋଲଟେବୁଲ ବୈଠକରେ ଯୋଗଦେବାପାଇଁ ଲଣ୍ଡନ ଯାତ୍ରା କଲେ । ସେତେବେଳେ ବଙ୍ଗଳା ଓ ସୀମାନ୍ତ ପ୍ରଦେଶରେ ସ୍ୱାଧୀନତାର ବିପ୍ଳବ ବଡ଼ ଆକାର ଧାରଣ କରିଥିଲା । ଗାନ୍ଧିଜୀ ଗୋଲଟେବୁଲ ବୈଠକରୁ ବିଫଳ ହୋଇ ଲଣ୍ଡନରୁ ଫେରିବାରୁ ପୂର୍ଣ୍ଣ ଅଇନ ଅମାନ୍ୟ ଆନ୍ଦୋଳନ ଦ୍ୱିଗୁଣରେ ତେଜି ଉଠିଲା । ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କ ସହିତ କୃଷକମାନେ ମଧ୍ୟ ଯୋଗଦେଲେ । ତେଣୁ ଭୂ-ସମସ୍ୟା ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା ପ୍ରତି ଅଧିକ ଗୁରୁତ୍ୱ ଦିଆଗଲା । ତେଣୁ ୧୯୩୧ରେ କରାଚୀରେ ଅନୁଷ୍ଠିତ କଂଗ୍ରେସ୍‌ର ଅଧିବେଶନରେ ମଣିଷର ମୌଳିକ ଅଧିକାର ଓ ଅର୍ଥନୈତିକ କାର୍ଯ୍ୟକ୍ରମ ସଂପର୍କରେ ପ୍ରସ୍ତାବ ନିଆଗଲା । ଗୋଲଟେବୁଲ ବୈଠକର ବ୍ୟର୍ଥତାକୁ ଲକ୍ଷ୍ୟରଖି ବାଞ୍ଛାନିଧି ବ୍ୟଙ୍ଗ-ବିଦ୍ରୂପ ଛଳରେ ଲେଖିଛନ୍ତି—

"ଆଚ୍ଛା, ଗୋଲଟେବୁଲ ଯାଳ ଲଗିଲା ରେ,
ବାବା ସତ୍ୟପୀର ପୂଜା ମାଗିଲା ରେ ।୦।

ପାର୍ଲାମେଣ୍ଟ ସତ୍ୟପୀର ମ୍ୟାକ୍‌ଡୋନାଲ ଗାଉଣୀ ଶିର
କିଂସ୍‌ଲି ( Kingsly ) ହଲରେ ଫାର ଆସ୍ଥାନ
ସାଜ ସଜ୍ଜା ଭାରି ମସ୍ତାନ
କେତେ ରଙ୍ଗେ ପୂଜା ବାଜା ବାଜିଲା ରେ ।୧।

ଗାଉଣି, ବାଉଣି, ପାଳିଆ, ମିଶିଗଲେ ଯେତେ କଳିଆ
ଶିଖ, ହିନ୍ଦୁ, ମୁସଲମାନ, ଜୈନ, ବୌଦ୍ଧ, ଖ୍ରୀଷ୍ଟିଆନ
ପିଟାପିଟି ତାଳ ଖୋଲ ଭାଙ୍ଗିଲା ରେ ।୨।

ମଡରେଟ ସାପ୍ରୁ ଜୟକାର, ନିଜାମ, ଆଲୁଓ୍ୱାର, ଗାଇକୋଓ୍ୱାଡ଼
କାନ୍ଧ କନ୍ଧ ବୁଲି ଫେରିଲା ରେ ।୩।

ବାରେ ଲୁହେଁ ଉଜବାର, ଯାଇଥିଲେ ଦରିଆ ପାର
କେତେ ଲକ୍ଷ ଗଲା ବୋହି, ଶେଷେ ଶିରଣୀ କଦଳୀ ଖୋଇ
ସିଧା ବିଦାକଲେ ପାଲା ଭାଙ୍ଗିଲା ରେ ।୪।

ପାଲ ହେଉଛି ଶେଷ, ଓଡ଼ିଶା ସିନ୍ଧ୍ର ପ୍ରଦେଶ
ଶିରଣୀ ବାଣ୍ଟିଲେ ବସି, ଓଡ଼ିଆ ହୋଇଲେ ଖୁସି
ପୁନା ଫଳିବ ଭାଗ୍ୟ ପାଲ ଭଣିଲ ତେ ।୫।''

## ॥ ଏଗାର ॥

### ପ୍ରବାସୀ ଉତ୍କଳ ସମ୍ମିଳନୀ

୧୯୩୪ ମସିହା ନଭେମ୍ବର ୨୪ ତାରିଖରେ କଲିକତାରେ ପ୍ରବାସୀ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିରେ ଉତ୍କଳ ଭାରତୀ କୁନ୍ତଳା କୁମାରୀ ସାବତ ପୌରହିତ୍ୟ କରିଥିଲେ । ବାଞ୍ଛାନିଧି ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେ କୁନ୍ତଳା କୁମାରୀଙ୍କ ଅଭ୍ୟର୍ଥନା ପାଇଁ ଲେଖିଛନ୍ତି—

''ଆସ ଗୋ ଆସ ଗୋ କୁନ୍ତଳା ଦେବୀ, ଆସ ଆଜ ଶୁଭ ବାସରେ
ଆସିବାକେ ବସିଯାଅ ତବ ଲକ୍ଷିତ ଭାଗ ପାଶରେ
ତୁମ୍ଭେ ସଙ୍ଗୀର, ନାରୀ, ଉତ୍କଳର ଆଶା ସାର
ତପୋବନ ଭାରତୀ ଗୋ, କବିତା ବନ ବିହାର
ଉତ୍କଳ ରମଣୀ ମଣି ପ୍ରାନ୍ତ ଜନର ସରଣି,
ରଖିଛ କାହାର ଟେକ ପ୍ରବାସେ ସ୍ୱଦେଶ ମଣି,
ଶୁଣାଅ ଗୋ ମୁକ୍ତ ଗାଥା ଆଜି ତବ ଭାଷାରେ ।୧।''

( ବା: ପ., ପୃ. ୫୬ )

## ॥ ବାର ॥

### ନିଖିଳ ଉତ୍କଳ ସମାଜ ସଂସ୍କାର ସମ୍ମିଳନୀ

ଦେଶରୁ କୁସଂସ୍କାର ଦୂରେଇବା ପାଇଁ ସେତେବେଳେ କଂଗ୍ରେସ୍ କର୍ମୀମାନେ ଯତ୍ନ କରୁଥିଲେ । କାରଣ ସମାଜକୁ ମାର୍ଜିତ ନ କଲେ ଲୋକମାନଙ୍କ ଚେତନାର ବିକାଶ ଘଟିବ ନାହିଁ ଏବଂ ଏହା ସ୍ୱରାଜ୍ୟ ଲାଭ କରିବାରେ ଅନ୍ତରାୟ ସୃଷ୍ଟି ହେବ । ତେଣୁ ଏହା ମଧ୍ୟ କଂଗ୍ରେସର ଏକ ରଚନାତ୍ମକ କାର୍ଯ୍ୟ । ଓଡ଼ିଶା ସ୍ତରରେ ଗଠିତ 'ନିଖିଳ ଉତ୍କଳ ସମାଜ ସଂସ୍କାର' ସମ୍ମିଳନୀ କଟକ ଠାରେ ବାଞ୍ଛାନିଧି ସକ୍ରିୟ ଅଂଶ ଗ୍ରହଣ

କରିଥିଲେ । ଏହାର ଅଧିବେଶନରେ ସେ ବାଲ୍ୟବିବାହ, ବିଧବା ବିବାହ, ଯୌତୁକ ପ୍ରଥା, ଆଦି ବିଷୟ ଉଲ୍ଲେଖ କରି ସେ ଲେଖିଛନ୍ତି—

"କି ହେଲା କି ହେଲା ଭାଇ ଆମ୍ଭରି ଦେଶ ସମାଜ
ମରମେ ଲାଗେ ବେଦନା ସରମେ ମରୁଛୁ ମୁଁ ଆଜ

+ + + +

ବାଳକ କୋମଳ ମତି, ନ ଜାଣେ ପୀରତି ରୀତି,
ବାଳିକା ଶିଶୁ ସଂଗତେ ସଜାଏ ବିବାହ ସାଜ

+ + + +

ଯୁବତୀ ବିଧବା ପ୍ରାଣ, କି ଦୁଃଖ ଭୋଗେ କି ଜାଣି ?
ତାରିବ ଯେବେ ତାହାକୁ ସମାଜ ନୀତକୁ ମାଜ,
ବେପାରୀ ହୋଇ ଜନକ, ବିକୁଛି କନ୍ୟା କନକ,
କିଣୁଛି କାହିଁ ଜାମାତା ବଜାଇ ନିଲମ ବାଜ ।"

( ବା. ପ., ପୃ. ୧୯୦ )

॥ ତେର ॥

## କେତୋଟି ଘଟଣା

ହମାରୀ ବାଞ୍ଛା ହୈ—

ସେତେବେଳେ ଭଦ୍ରକରେ ହଇଜା ରୋଗ ଭୟଙ୍କର ଭାବରେ ସଂକ୍ରମିତ ହୋଇ ଥିଲା । ମୁସଲମାନ ବସ୍ତିରେ ଅଧିକ ଲୋକ ମରିଥିଲେ । କିନ୍ତୁ ସେ ବସ୍ତିର କୁଳବଧୂମାନେ ଇଞ୍ଜେକ୍‌ସନ୍ ନେବାକୁ ବାହାରିଲେ ନାହିଁ । ଡାକ୍ତରମାନେ କେବଳ ପୁରୁଷମାନଙ୍କୁ ଇଞ୍ଜେକ୍‌ସନ୍ ଦେଲେ । ତେଣୁ ଏକ ଅଚଳ ଅବସ୍ଥା ସୃଷ୍ଟି ହେଲା । ବାଞ୍ଛାନିଧି ବସ୍ତି ଭିତରକୁ ପ୍ରବେଶ କଲେ । କେହି ତାଙ୍କୁ ବାରଣ କରିପାରିଲେ ନାହିଁ । କାରଣ, ସେତେବେଳକୁ ସେ ଖୁବ୍ ଲୋକପ୍ରିୟ ହୋଇ ଉଠିଥିଲେ । ବୃଦ୍ଧ ମୁସଲମାନଙ୍କ ମୁହଁରେ ସେହି ଗୋଟିଏ କଥା—"ହମାରୀ ବାଞ୍ଛା ହୈ, ତବ୍ ଡର କସ୍ ବାତ୍‌କା ?" ଯେଉଁ ମୁସଲମାନ ତରୁଣୀମାନେ ଅସୂର୍ଯ୍ୟଂପଶ୍ୟା ଥିଲେ, ସେମାନଙ୍କୁ ବାଞ୍ଛାନିଧିଙ୍କ ସମ୍ମୁଖରେ ଡ଼ାକ୍ତରମାନେ ଆସି ଇଞ୍ଜେକ୍‌ସନ୍ ଦେଇଗଲେ । ସେ କେବଳ ମୁସଲମାନଙ୍କର ହିତୈଷୀ ନୁହେଁ, ସର୍ବଧର୍ମ ସମନ୍ୱୟକୁ ସେ ସ୍ୱୀକାର କରୁଥିଲେ । ତେଣୁ ସେ ଲେଖିଛନ୍ତି—

"ଜୟ ଜୟ ହିନ୍ଦୁ ମୁସଲମାନ
ଶିଖ ପାର୍ଶି ଜୈନ, ବୌଦ୍ଧ ଇହୁଦି, ଖ୍ରୀଷ୍ଟିୟାନ୍
ନଇକର ନାଦୀର ଭୟ ଗାଅ ଜନ୍ମ ଭୂମିର ଜୟ
ସ୍ୱାଧୀନତା ବୈଜୟନ୍ତୀ ଉଡ଼ାଅ ଅବନ୍ତମୟ,
ଗର୍ଜି ଉଠୁ ସିଂହନାଦେ ସୁପ୍ତ ହିନ୍ଦୁସ୍ଥାନ ।"

( ବାଃ ପଃ/୨ )

## ମୋତେ ଶୁଝିବା ଦରକାର ନାହିଁ—

ଭଦ୍ରକରେ ଥରେ ରାତରେ ବାଞ୍ଛାନିଧି ଓ ନାଟ୍ୟକାର ଗୌରାଙ୍ଗ ଚନ୍ଦ୍ର ଦାସ ରାତରେ ଖାଇପିଇ କେନାଲ ପୋଲ ଉପରେ ବସିଥିବା ସମୟରେ ଚାଳିଶ, ପଞ୍ଚାଳିଶ ବର୍ଷର ଲୋକଟିଏ କାନ୍ଦିକାନ୍ଦି ଆସିଲା । ସେ ମହାଜନ ପାଖରୁ କରଜ କରିଥିଲା । ପଚିଶ୍ ଟଙ୍କାର . ସୁଧବାବଦ କୋଡ଼ିଏ ଟଙ୍କା ଦେଇପାରୁ ନଥିବାରୁ ତାଙ୍କୁ ମାରି ମାରି ଦେହ ମୁଣ୍ଡ ରକ୍ତାକ୍ତ କରି ଦେଇଥିଲା ମହାଜନ । ତାକୁ ବାଞ୍ଛାନିଧି ଅଟକାଇ କାନ୍ଦିବାର କାରଣ ପଚାରିବାରୁ ସେ କହିଲା—"ଆଜି ମୁଁ ପାଞ୍ଚଟଙ୍କା ଦେଇଛି, ମହାଜନ କହୁଛି ଆଉରି ପଚିଶ ଟଙ୍କା ଦେଲେ ହେଣ୍ଡ୍‌ନୋଟ କାଗଜ ଚିରିଦେବ । ପିଲାମାନେ ଆଠଦିନ ହେଲା ଉପାସ ।" ଏକଥା ଶୁଣି ବାଞ୍ଛାନିଧି ବ୍ୟସ୍ତ ହୋଇ ପଡ଼ିଲେ । ସେ କହିଲେ- "ମୁଁ ଟିକେ ଆସେ, ତୁମେ ଅପେକ୍ଷାକର ।" କହିଦେଇ ସେ ତାଙ୍କ ଘରୁ ପାଣ୍ଠିରୁ ପଚିଶ ଟଙ୍କା ଆଣିଦେଲେ । ସେତେବେଳେ ସେ ଭଦ୍ରକର ଲୋକାଲ ବୋର୍ଡର ଚେୟାରମେନ୍ ଥିଲେ । ବାଞ୍ଛାନିଧି କହିଲେ—"ବର୍ତ୍ତମାନ ଏ ଟଙ୍କାଦେଇ ଦଲିଲ୍ କାଢ଼ିଆଣ ।" ଲୋକଟି କାନ୍ଦିକାନ୍ଦି କହିଲା—"ମୁଁ କେମିତି ଏ ଟଙ୍କା ପୁଣି ଶୁଝିବି ?" ବାଞ୍ଛାନିଧି କହିଲେ—"ତୁମେ ଆଗ ଦେଣା ଶୁଝିଦିଅ । ତୁମେ ଆଉ ଅପମାନିତ ହୁଅନାହିଁ । ମାଡଖାଅ ନାହିଁ । ମୋତେ ଶୁଝିବା ଦରକାର ନାହିଁ ।"

## ଘରୁ ଅନୁକୂଳ—

ସେ ଘରୁ ଅନୁକୂଳକରି ବାହାରିଲେ କିଛି ଟଙ୍କା ଦାଣ୍ଡ ମୁହଁରେ ଡାନକରି ବାହାରୁ ଥିଲେ । ତେଣୁ, ବହୁ ଦରିଦ୍ର ଲୋକେ ସନ୍ତୁଷ୍ଟ ନୟନରେ ତାଙ୍କ ଆଗମନକୁ ଅପେକ୍ଷା କରିଥାନ୍ତି । କେଉଁଠି ମଧ୍ୟ ନିଜ ଶରୀରରୁ ବସ୍ତ୍ରଦାନ କରିଛନ୍ତି । ଏପରି ବହୁ ଆଖ୍ୟାନ ଏବେ ବି ପୁରପଲ୍ଲୀରେ ଶୁଣିବାକୁ ମିଳେ ।

ସେ ଭିକାରୀକୁ କିଏ ଲୁଗା ଦେଇଥାନ୍ତା ?

ଥରେ ସେ ଇରମରୁ ମୋର ଯିବା ପଥରେ ପଥ ମଧ୍ୟରେ ଏକ ଭିକାରୀଙ୍କୁ ତାଙ୍କ ସାଲ୍ ଓ ଲୁଗା ଆଦି ଦାନକରି ଦେଇଥିଲେ । ଯେତେବେଳେ ସେ ଘୋଡ଼ାରେ ପହଞ୍ଚିଲେ, ବାଞ୍ଛାନିଧିଙ୍କୁ ଏପରି ଅର୍ଦ୍ଧଲଗ୍ନ ଅବସ୍ଥାରେ ଦେଖି ମେଠାକାର ମାରୁଆଡ଼ି ଲୁଗା ଓ ପଗ୍ଡ଼ି ଦାନକଲେ । ବାଞ୍ଛାନିଧି କହିଲେ—"ସେ ଭିକାରୀକୁ କିଏ ଲୁଗା ଦେଇଥାନ୍ତା ? ମୋତେ ତ ଯେଉଁଠି ହେଲେ ବି କିଛୁ ମିଳିଯିବ ।" ଏବେ ବି ଇରମ ଅଞ୍ଚଳର ବୃଦ୍ଧ ମହଲରେ ବାଞ୍ଛାନିଧିଙ୍କ ଦାନ ଓ ସାହାଯ୍ୟର ଅନେକ କଥା ଶୁଣିବାକୁ ମିଳେ ।

## ॥ ଚଉଦ ॥

### ସଂଗୀତ ଶିଳ୍ପୀ ବାଞ୍ଛାନିଧି

ଆଶୁକବି ବାଞ୍ଛାନିଧି ମୁଖ୍ୟତଃ ଜଣେ ସୁଦକ୍ଷ ସଂଗୀତଜ୍ଞ ରୂପେ ପରିଚିତ । ଓଡ଼ିଶାର ପୁରପଲ୍ଲୀର ଜନସାଧାରଣ ତାଙ୍କ ଗାନଶୁଣି ତାଙ୍କୁ କେବଳ ଦର୍ଶନ କରିବା ପାଇଁ କୋଶକୋଶ ବାଟ ଅତିକ୍ରମ କରି ପଦବ୍ରଜରେ ଆସୁଥିଲେ । ସମସ୍ତଙ୍କ ମୁହଁରେ ସେହି ଗୋଟିଏ କଥା—"ସେ ବାଞ୍ଛାନିଧି ବାବୁ କେମିତି ? ଆମେ ତାଙ୍କୁ ଦେଖିବୁ ।"

ଠିକ୍ ତଳେଇ କରି ଦେଖିଲେ ଜଣାଯିବ ଯେ, ତାଙ୍କର ଜାତୀୟତାବାଦୀ ସଂଗୀତର ସୁଦୂର ପ୍ରସାର ମୂଳରେ ତାଙ୍କ ସଂଗୀତ ଦକ୍ଷତା ମୁଖ୍ୟସ୍ଥାନ ଅଧିକାର କରିଛି । ଏହି ସଂଗୀତ ମାଧ୍ୟମରେ ସେ ଓଡ଼ିଶାର ପୁରପଲ୍ଲୀ ଏବଂ ନଗର ଅଞ୍ଚଳରେ ସାଧାରଣ ନାଗରିକଙ୍କ ମଧ୍ୟରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାରକରି ପାରିଥିଲେ । ସ୍ଥୂଳତଃ, ଏତିକି କହିଲେ ଯଥେଷ୍ଟ ହେବ ଯେ ସେ ଉତ୍କଳର ଜାତୀୟ କବି ହୋଇ ପାରିଛନ୍ତି, ତାଙ୍କର ସଂଗୀତ କଳାରେ ଅଗାଧ ପ୍ରବେଶ ଯୋଗୁଁ ।

• ବାଞ୍ଛାନିଧି ଥିଲେ ଆଶୁକବି । ସଂଗେ ସଂଗେ ସେ ମୁହୂର୍ତ୍ତିକ ମଧ୍ୟରେ ଗୁଣୁଗୁଣୁ ହୋଇ ଗୀତଗାଇ ନିଜେ ବା ଅନ୍ୟକୁ ଲେଖିବାକୁ କହୁଥିଲେ । ଲେଖିସାରିଲାପରେ ସଂଗେ ସଂଗେ ହାରମୋନିୟମ୍ ଏବଂ ଡ଼ୁବି ତବଲା ଆଣି ତାଳଲୟ ଦେଇ ବଜେଇ ସଙ୍ଗୀତ ଅଭ୍ୟାସ କରି ନେଉଥିଲେ । ଅନେକଥର ସଭାମଣ୍ଡପରେ ସଭା ଆରମ୍ଭ ହେବାକୁ କିଛିକ୍ଷଣ ବାକିଥିବ ସେ ଗୁଣୁଗୁଣୁ ହେଇ ଗୀତ ରଚନାକରି ସ୍ୱର ସଂଯୋଜନା କରି ଦେଇ ବୋଲନ୍ତି । ତାଙ୍କର ଏହି 'ଆଶୁ କବିତ୍ୱ' ସମସ୍ତଙ୍କୁ ଚମତ୍କୃତ କରି

ଦେଇଥିଲ । ସେ ପ୍ରଥମେ ସ୍ୱରଦେଇ ଗୁଣୁଗୁଣୁ ହେଉ ବୋଲି ତା'ପରେ ଲେଖୁଥିଲେ । ଅର୍ଥାତ୍, ପ୍ରଥମେ ସଂଗୀତର ତାଳ ଓ ଲୟଦେଇ କବିତା ରଚନା କରୁଥିଲେ । ତେଣୁ, ପ୍ରଥମେ ସେ 'ସୁଦକ୍ଷ ସଂଗୀତଜ୍ଞ', ତା'ପରେ ଜଣେ 'କବି' ବୋଲି କହିବାକୁ ହେବ । ସେ ଉଭୟ ଗାୟକ ଓ କବି ହେତୁ ଓଡ଼ିଶାରେ ମେ ଖୁବ୍ ଲୋକପ୍ରିୟ ହୋଇ ପାରିଥିଲେ । ଏହାକୁ ସ୍ୱୀକାର କରି ଆଲୋଚକ ଶ୍ରୀ ଗୌରଚନ୍ଦ୍ର ମହାପାତ୍ର ଏକ ସ୍ଥାନରେ ଉଲ୍ଲେଖ କରିଛନ୍ତି – "ଏ ଜାତିର ମୁକ୍ତି ସଂଗ୍ରାମରେ ଯେଉଁ କେତେ ଜଣ ମୁଷ୍ଟିମେୟ କବି ଦୁଃଶାସନର କ୍ରନ୍ଦନରେ ଭୟଭୀତ ନ ହୋଇ ଉତ୍କଳର ପୁରପଲ୍ଲୀରେ ବଜାଇ ଥିଲେ ବିପ୍ଳବର ଉନ୍ମାଦ-କାହାଳୀ, ସେମାନଙ୍କ ମଧ୍ୟରେ ମୁଖ୍ୟଥିଲେ କବି ବାଞ୍ଛାନିଧି, ବୀରକିଶୋର ଓ କାନ୍ତକବି ଲକ୍ଷ୍ମୀକାନ୍ତ । ଏହି ତିନିଙ୍କ ମଧ୍ୟରେ ବାଞ୍ଛାନିଧି ଥିଲେ ସର୍ବାଧିକ ଜନପ୍ରିୟ । କାରଣ, ସେ ଥିଲେ ଯେପରି ସୁକଣ୍ଠ ଗାୟକ, ସେହିପରି ସୁନିଷ୍ଠ କର୍ମୀ ।" (୨୪) ପୁନଶ୍ଚ, ତାଙ୍କ କବିତା ଗୁଡ଼ିକ ସବୁ ଗାନ ଉପଯୋଗୀ । ଅର୍ଥାତ୍ ପ୍ରତ୍ୟେକଟି ଗୀତି-କବିତା (Lyric) । ପ୍ରତ୍ୟେକ ଗୀତିକବିତାର ତାଳ, ଲୟର ସୂଚନା ଦେଇଛନ୍ତି ସେ । ତେଣୁ, ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୬୭ମସିହାରେ ଯେତେବେଳେ 'ଉତ୍କଳ ବୀଣା'ର ଦୁଇଟି ଝଙ୍କାର ସମେତ ଅପ୍ରକାଶିତ ଛଅଖଣ୍ଡି କବିତାର ଗୁଚ୍ଛକରି ପ୍ରକାଶ କଲେ, ସେତେବେଳେ ଏହି କବିତା ଗୁଚ୍ଛର ନାମ 'ବାଞ୍ଛାନିଧି ପଦ୍ୟାବଳୀ' ରଖିଲେ ! ପ୍ରକୃତରେ ଏହାକୁ 'କବିତା-ବଳୀ ଠାରୁ 'ପଦ୍ୟାବଳୀ' କହିବା ଅଧିକ ଯୁକ୍ତିସଂଗତ । ସେ ନିଜେ ମଧ୍ୟ ସ୍ୱରଚିତ ଜାତୀୟବାଦୀ କବିତା ଗୁଡ଼ିକ 'ସଂଗୀତ' ଆଖ୍ୟାଦେଇଛନ୍ତି । 'ଉତ୍କଳବୀଣା'ର ପ୍ରଥମ ଝଙ୍କାରର ଭୂମିକାରେ ସେ ଲେଖିଛନ୍ତି— "ମୋ ପରି ନଗଣ୍ୟ ସଂଗୀତ ଲେଖକର ଏ କ୍ଷୁଦ୍ର ପୁସ୍ତିକା ଉପରୋକ୍ତ (ଯୁଗବାଣୀ ଓ ମଧୁପ ଗୁଞ୍ଜନ) ପୁସ୍ତିକା ମାନଙ୍କର ସମକକ୍ଷ ହେବ ନାହିଁ ସତ୍ୟ + + + ।" ପୁଣି 'ଉତ୍କଳ ବୀଣା'ର ଦ୍ୱିତୀୟ ଝଙ୍କାରରେ ଲେଖିଛନ୍ତି—"'ଉତ୍କଳବୀଣା'' ବିଭିନ୍ନ ରାଗ ରାଗିଣୀର ଜାତୀୟ ସଂଗୀତରେ ପୂର୍ଣ୍ଣ ।" ଓଡ଼ିଆ ସାହିତ୍ୟର ସଙ୍ଗୀତ ଯୁଗ ପଦ୍ୟାବଳୀ ପରି (ଗୋପାଳ କୃଷ୍ଣ ପଦ୍ୟାବଳୀ, ବନମାଳୀ ପଦ୍ୟାବଳୀ) ଏଥିରେ ସଙ୍ଗୀତର ଅମୃତ ଧାରା ପ୍ରବାହିତ ହୋଇ ଯାଇଛି । ଏହାର ମୁଖ୍ୟ କାରଣ ହେଲା – ତାଙ୍କର ସ୍ୱାଧୀନତା - ସନ୍ଦେଶ ଲୋକ ମୁଖରେ ସୁଦୂର ପ୍ରସାରୀ ହେବ । ସେଥିପାଇଁ ସେ ତାଙ୍କର ସ୍ୱରଚିତ ସଙ୍ଗୀତ-ଗୁଚ୍ଛ 'ଉତ୍କଳ ବୀଣା'ର ଦ୍ୱିତୀୟ ଝଙ୍କାରର ପ୍ରାରମ୍ଭରେ ଇଚ୍ଛା ପ୍ରକାଶ କରି ଲେଖିଛନ୍ତି –

"ବାଜି ଉଠୁ ମୋ ବୀଣା ଉତ୍କଳର ଘରେ ଘରେ
ବାଜି ଉଠୁ ମୋ ଗାନ ଉତ୍କଳୀ ଅନ୍ତର ସ୍ତରେ ।

---

(୨୪) ଜାତୀୟ କବି ବାଞ୍ଛାନିଧି -- ବାଲେଶ୍ୱର ଜିଲ୍ଲା ସାହିତ୍ୟ ସମ୍ମିଳନୀର ସ୍ମରଣିକା-- ୧୯୭୫-ପୃ ୪ ।

ବାଜ ଉଠ଼ ଦେଶ ପ୍ରୀତ-ସୁନ୍ଦର-ମଧୁର-ଗାନ
ଝଙ୍କାରି ଉଠ଼ ମୋ ବୀଣା ଗାଇ ସେ ମଧୁର ଗାନ ।''

ସେଥିପାଇଁ ତାଙ୍କ ଗୀତ କବିତା ଗୁଡ଼ିକ ଯେପରି ସରଳ ସେହିପରି ସାବଲୀଳ ଓ ସହଜ ରାଗରାଗିଣୀରେ ରଚିତ । ଏହାଦ୍ୱାରା ସାଧାରଣ ଲୋକ ନିର୍ବିଘ୍ନରେ ଏହି ଜାତୀୟ ସଂଗୀତକୁ ଗାନକରି ପାରିବେ । 'ଉତ୍କଳ ବୀଣା'ର ପ୍ରଥମ ଝଙ୍କାରର 'ଭୂମିକା' ଶୀର୍ଷକରେ ସ୍ପଷ୍ଟ ସେ ଲେଖିଥିଲେ—'' + + + କିନ୍ତୁ ମୋର ଗାନ ଗୁଡ଼ିକୁ ଯେପରି ଗ୍ରାମର ସାଧାରଣ ଲୋକେ ସହଜରେ ବୁଝି ପାରିବେ ଓ ଗାଇ ପାରିବେ, ସେହି ଉଦ୍ଦେଶ୍ୟରେ ସରଳ ଭାଷାରେ ଓ ସରସ ସ୍ୱର ଓ ତାଳଯୋଗେ ରଚିତ ହୋଇଥିବାରୁ, ଆଶାକରେ ଏହା ଦେଶରେ ଆଦୃତ ହେବ ।''

ସୁଗାୟକ

ଏହି ସଙ୍ଗୀତ କଳା ପ୍ରତି ବାଞ୍ଛାନିଧି ବାଲ୍ୟାବସ୍ଥାରୁ କିପରି ଅନୁରକ୍ତ ଥିଲେ, ତାହା ପୂର୍ବରୁ କୁହାଯାଇଛି । ସ୍କୁଲ ଜୀବନରେ ବନ୍ଧୁ ଔପନ୍ୟାସିକ ନୈଷ୍ଣବ ଚରଣ ଦାସଙ୍କ ସହିତ ଲୁଚି ସଂଗୀତ ଶିକ୍ଷା କରିବା ଠାରୁ କଲେଜରେ କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁଙ୍କ ସହିତ ମିଶି ସଂଗୀତ ଗାନ ଅଭ୍ୟାସ କରିବା ଏବଂ କଲେଜ ନାଟ୍ୟ ସଂସଦ ଆନୁକୂଲ୍ୟରେ ଅନୁଷ୍ଠିତ ନାଟକରେ ସଂଗୀତ ଗାନକରି ବନ୍ଧୁ ସ୍ୱର୍ଣ୍ଣ ପଦକ ଲାଭକରିଥିଲେ । ତେଣୁ ତାଙ୍କୁ ଦର୍ଶକମାନେ 'କଳା କୋକିଳ' ଉପାଧିରେ ଭୂଷିତ କରିଥିଲେ ।

୧୯୧୬ ମସିହାରେ ଯେତେବେଳେ ( ଜୁଲାଇ ମାସ ) ଭଞ୍ଜମଣ୍ଡ ରାଧାମୋହନ ଥିଏଟର ପାର୍ଟି ଦ୍ୱାରା 'ଅହଲ୍ୟା' ଓ 'ନନ୍ଦକେଶ୍ୱରୀ' ନାଟକର ଅଭିନୟ ପାଇଁ ଅଭିନୟ, ନୃତ୍ୟ ଓ ସଂଗୀତର ଅଭ୍ୟାସ ଚାଲିଥିଲା, ସେତେବେଳେ ଜମିଦାର ରାଧାକାନ୍ତ ପାଢ଼ୀ ଓ ମୁକ୍ତକାନ୍ତ ପାଢ଼ୀ ଦୁହେଁ ପ୍ରସିଦ୍ଧ ସଂଗୀତ ଓ ନୃତ୍ୟ ଶିକ୍ଷକ ଶ୍ରୀ ସାରଦା ପ୍ରସାଦ ଦଳବେହେରାଙ୍କୁ ନିମନ୍ତ୍ରଣ କରିଥିଲେ । ସେତେବେଳେ ହସି ହସି କହି ପକେଇଥିଲେ—''ବାଞ୍ଛାନିଧି ବାବୁଙ୍କ ଘରେ 'ପ୍ରେମ ସୁଧାନିଧି,' 'ବିଦଗ୍ଧ ଚନ୍ଦ୍ରାମଣି' ଅଛନ୍ତି । ଯେଉଁ ଘରେ ଏ ଦୁଇଗ୍ରନ୍ଥ ଅଛନ୍ତି, ସେଠାର କାହିଁକି ବାଞ୍ଛାନିଧି ଭଲ ଗୀତ ବୋଲିବେ ନାହିଁ ।'' (୨୫) ଅର୍ଥାତ୍ ବାଞ୍ଛାନିଧିଙ୍କ କନିଷ୍ଠ ଭ୍ରାତାଙ୍କ ନାମ-'ପ୍ରେମାନନ୍ଦ' ଓ କନିଷ୍ଠା ଭଗ୍ନୀଙ୍କ ନାମ-'ସୁଧା' । ପୁଣି ପିତାଙ୍କ ନାମ 'ଚନ୍ଦ୍ରାମଣି' ।

କବି ବାଞ୍ଛାନିଧିଙ୍କ ସଂଗୀତ କଳାର ପରିଚୟ ମିଳେ 'ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ'ର ପ୍ରଥମ ଅଧିବେଶନରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଓ ଗୋପବନ୍ଧୁ ଯୋଗ ଦେଇଥିଲେ । ଏହା ପୂର୍ବରୁ ବର୍ଣ୍ଣନା କରାଯାଇଛି ।

(୨୫ ) ଓଡ଼ିଶା ରଙ୍ଗମଞ୍ଚ ଇତିହାସ - ଶ୍ରୀ ସାରଦା ପ୍ରସାଦ ଦଳବେହେରା- ପୃ. ୧୬୪ ।

ପୁଣି ୧୯୧୭ ମସିହାରେ ଯେତେବେଳେ ତାଙ୍କର ଭବାନୀପୁର ଚତୁର୍ଥ ଉତ୍ସବରେ ଧାରାବାହିକ ନାଟ୍ୟାଭିନୟର ବ୍ୟବସ୍ଥା ଉପସ୍ଥ 'ରାଧାମୋହନ ଥିଏଟର ପାର୍ଟି' ତରଫରୁ ହୋଇଥିଲା, ସେତେବେଳେ ମଞ୍ଚ ଓ ସାଜସଜ୍ଜାର ବିଭିନ୍ନ ଉପକରଣ ପାଇଁ ବାଞ୍ଛାନିଧିଙ୍କ ସମେତ ସଂଗୀତ ଓ ନୃତ୍ୟ ଶିକ୍ଷକ ଶ୍ରୀ ସାରଦା ପ୍ରସାଦ ଦଳବେହେରା • ମାଇନର ସ୍କୁଲର ହେଡମାଷ୍ଟର ଶ୍ରୀ ଉପେନ୍ଦ୍ର ପାତ୍ରୀ, ଶିରଥା ଏବଂ ଜମିଦାର ଦୁଇ ଭାଇ ରାଧାକାନ୍ତ ଓ ମୁକ୍ତିକାନ୍ତ ପାତ୍ରୀ କଲିକତା ଯାଇ କରିଥିଲେ । ସେମାନେ କଲିକତାରେ ଜମିଦାର ରତ୍ନାକର ମହାପାତ୍ରଙ୍କ କୋଠାରେ ରହିଥିଲେ । ସେ ସମୟର ପ୍ରଖ୍ୟାତ ଶିଳ୍ପୀ ଡକ୍ଟର କୋନ୍‌ର ଶଶୀ ଭୂଷଣଙ୍କ ଦୋକାନକୁ ବାଞ୍ଛାନିଧି ଯାଇଥିଲେ ଏହି ପ୍ରସଙ୍ଗରେ । ପେଣ୍ଟର ଶଶୀଭୂଷଣଙ୍କର ଓଡ଼ିଆ ନାଟ୍ୟକଳା ସଂପର୍କରେ ଆଦୌ ଧାରଣା ନ ଥିଲା । ସେ ବାଞ୍ଛାନିଧିଙ୍କୁ ଅନୁରୋଧ କଲେ ଓଡ଼ିଆରେ ଏକ ସଙ୍ଗୀତ ଗାନ କରିବାକୁ । ବାଞ୍ଛାନିଧି ସ୍ୱଜାତିର ସମ୍ମାନ ରକ୍ଷାପାଇଁ ବାଦ୍ୟଯନ୍ତ୍ରର ବିନା ସାହାଯ୍ୟରେ ସେ ଯେଉଁ ସୁମଧୁର ସଂଗୀତ ଗାନକଲେ । ସେଥିରେ ଶିଳ୍ପୀ ଶଶୀଭୂଷଣ ମୁଗ୍ଧ ହୋଇଗଲେ । ତାଙ୍କ ଅନୁରୋଧ କ୍ରମେ ସେ କେତୋଟି ଗୀତ ଗାନ କରିଥିଲେ । ଏଥିରେ ଶଶୀଭୂଷଣ ବାବୁ ପ୍ରୀତ ହୋଇ ପ୍ରାୟ ଦୁଇହଜାର ଟଙ୍କାର ସାମଗ୍ରୀକୁ ପାଞ୍ଚଶହ ଟଙ୍କାରେ ଦାନକରି ଦେଇଥିଲେ ।

ବାଲେଶ୍ୱରର ଇଞ୍ଚୁଡ଼ି ଠାରେ ଲୁଣ ମାରିବା ବେଳେ ଯେତେବେଳେ ଶହଶହ ନର-ନାରୀ, ବାଳକ ବାଳିକା ଶୋଭାଯାତ୍ରାରେ ବାଞ୍ଛାନିଧିଙ୍କ 'ଗଅ ସ୍ୱାଧୀନ ଭାରତ' ଗୀତଟି ଗାନ କରୁଥିଲେ, ସେତେବେଳେ ପଣ୍ଡିତ ନୀଳକଣ୍ଠ ଦାସ କହିଥିଲେ - "ମୋର ରୋମାଞ୍ଚ ଜାତ ହେଉଛି ।" (୨୭) ଡକ୍ଟର ହରେକୃଷ୍ଣ ମହତାବ ଏହାଙ୍କ ସଂଗୀତ ରଚନା ଓ ଗାନରେ ମୁଗ୍ଧ ହୋଇ ଲେଖିଛନ୍ତି - "ବାଞ୍ଛାନିଧି ବାବୁ ଜଣେ ସୁଗାୟକ ଓ ସୁଲେଖକ ମଧ ଥିଲେ । ନାନା ପ୍ରକାର ସୁର, ନାନା ପ୍ରକାର ଗୀତ ରଚନାକରି ସେ ସଂଗୀତ ଦଳମାନ ସୃଷ୍ଟି କରିଥିଲେ । ଜିଲ୍ଲାସାରା ଗୃରଆଡ଼େ ବାଞ୍ଛାନିଧି ବାବୁଙ୍କ ଗାନ ବୋଲି ହେଉଥାଏ । ସେ ଗାନ ସବୁ ଏକ ଅଦ୍ଭୁତ ଉନ୍ମାଦନା ଆଣୁଥାଏ ।"(୨୭)

ବାଲେଶ୍ୱର ଜିଲ୍ଲାର ଜଳେଶ୍ୱର ସମ୍ମିଳନୀରେ ସଭାପତି ଆସନ ଅଳଙ୍କୃତ କରିଥାନ୍ତି ଶ୍ରୀଯୁକ୍ତ ଶ୍ୟାମ ସୁନ୍ଦର ଚକ୍ରବର୍ତ୍ତୀ । ସେ ଭାରତ ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ଆଦି ପ୍ରଗତିଶୀଳ ବିକାଶୋନ୍ମୁଖୀ ଦେଶମାନଙ୍କରେ ଏକ ଶୃଙ୍ଖଳ୍ୟ ସୃଷ୍ଟିକରି ଦେଇଥିବା ଇଂରାଜୀ ପତ୍ରିକା "Servent"ର ପ୍ରତିଷ୍ଠାତା । ଏହି ମଣ୍ଡପରେ ଗୋପବନ୍ଧୁ

(୨୭) କବି ବାଞ୍ଛାନିଧି - ଡଃ ହରେକୃଷ୍ଣ ମହାତାବ, ଜାତୀୟ କବି ଅଭିନନ୍ଦନ : ୧୯୭୩-ପୃ ୧୧

(୨୭) ସାଧନାର ପଥେ - ପୃ. ୪୭ ।

ଚୌଧୁରୀ, ହରେକୃଷ୍ଣ ମହତାବ ଆଦି ବହୁ ନେତା ଏକତ୍ର ହୋଇଥା'ନ୍ତି । ସଭାମଣ୍ଡପରେ ବାଞ୍ଛାନିଧି କନକା ଅତ୍ୟାଚାର ଉଲ୍ଲେଖ ଥିବା ଗୀତ 'କେତେଦିନ ଆଉ ଦୁଃଖିନୀ କନକା' ବୋଲିଲେ । ଏହି ସଂଗୀତରେ ଶ୍ରୀଯୁକ୍ତ ଚଉଧୁରୀ ଉତ୍ତେଜିତ ହୋଇ ଉଠି ବାଞ୍ଛାନିଧିଙ୍କୁ ଆଲିଙ୍ଗନ କରି ପକାଇ କହି ଉଠିଲେ—"ବାମନ୍ ବାବୁର (ବାଞ୍ଛାନିଧି ବାଙ୍ଗର ଆକୃତିର ) ଗାନ୍ ଶୁନେ ଅମାର ହୃଦୟ ଫାଟେ ଗେଛେ ।" ସେ ଉପସ୍ଥିତ ନେତୃବୃନ୍ଦଙ୍କୁ ଲକ୍ଷ୍ୟକରି କହିଲେ– "କହେ, ତୁ ମାଦେର୍ ଗାୟେକ ରକ୍ତ ନାହିଁ ? ତୁମାଦେର୍ ମାନୁଷ୍ ନା ମଡ଼ା ? ତୁମାଦେର୍ ଗାୟେର ରକ୍ତ ଥାକ୍‌ଲେ ତୁମାର ଝାଙ୍କେ ଝାଙ୍କେ ଗିୟେ ଅତ୍ୟାଚାରୀ କନକା ରାଜା କୋଠାକେ ଭଙ୍ଗେଚୁରେ ଗଙ୍ଗା-ନଦୀର ଜଲେ ଫେଲେଦିତ୍ତା । ତୁମାଦେର୍ ଗାୟେର ରକ୍ତ ନାହିଁ । ତୁମାଦାର୍ ମାନୁଷ ନାହିଁ ।"

ପ୍ରକୃତରେ ଅଧ୍ୟାପକ ଶ୍ରୀ ଗୌରୀ କୁମାର ବ୍ରହ୍ମାଙ୍କ ଭାଷାରେ—"ସେ ସ୍ୱରଚିତ ଉକ୍ତ ଜାତୀୟବାଦୀ କବିତା ଗୁଡ଼ିକୁ ଆବୃତ୍ତି କରି ଶ୍ରୋତାମାନଙ୍କ ଅନ୍ତର ମଧ୍ୟରେ ଆଗ୍ନେୟଗିରିର ଭୀଷଣ ଉଦ୍‌ଗୀରଣ ଘଟାଉଥିଲେ ।" (୨୮) ପଟ୍ଟୁଆର, ଶୋଭାଯାତ୍ରା, ପତାକା ବନ୍ଦନା, ସଭା ସମ୍ମିଳନୀରେ ତାଙ୍କର ସଂଗୀତ କର୍ମୀ, ସେବକ ଓ ଜନତା ମଧ୍ୟରେ ପ୍ରବଳ ଉତ୍ତେଜନା ସୃଷ୍ଟି କରିଥିଲା । ବିଶେଷତଃ, ତାଙ୍କର–"ଗାଅ ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ, ସ୍ୱାଧୀନ ସ୍ୱାଧୀନ, ସ୍ୱାଧୀନ ରେ"— ସଂଗୀତଟିର ବହୁ ପ୍ରଚଳନ ଥିଲା । "ସହସ୍ର ସହସ୍ର ଜନତା ଏହି ଗୀତ ଗାଇ ସତେ ଓଡ଼ିଶାର ଗଗନ ପବନକୁ ମୁଖରିତ କରିଥିଲେ, ବିଦେଶୀ ଶାସକର ବହୁ ନିର୍ମମ ନିର୍ଯାତନା ସହ୍ୟ କରିଥିଲେ ଜାତୀୟ ଚେତନାର ଗୌରବ ରକ୍ଷାଲାଗି ପଣକରି ଲଢିଥିଲେ ।" (୨୯)

ବାଞ୍ଛାନିଧିଙ୍କର ଜାତୀୟ ସଂଗୀତ ଗୁଡ଼ିକ ଭାରତର ଜାତୀୟତା ବିକାଶ ପଥରେ ଯେ ବହୁ ସହାୟକ, ଏଥିରେ ସନ୍ଦେହର ଅବକାଶ ନାହିଁ । ଭାରତର ମୁକ୍ତି ଆନ୍ଦୋଳନକୁ ଆହୁତି ଯୋଗାଇବା ପାଇଁ ତାଙ୍କ ସଂଗୀତ ଗୁଡ଼ିକ ଯେ ଚିରସ୍ମରଣୀୟ, ଏହାକୁ ଅସ୍ୱୀକାର କରିହେବ ନାହିଁ । (୩୦)

---

(୨୮) ବାଞ୍ଛାନିଧି ପଦ୍ୟାବଳୀ - ଆଦ୍ୟ କଥନ - ପୃ. ୧

(୨୯) ଆଧୁନିକ ଓଡ଼ିଆ ସାହିତ୍ୟ - ଓଡ଼ିଆ ଜାତୀୟବାଦୀ କବିତା - [୧ମ ସଂସ୍କରଣ ] - ଡକ୍‌ଟର ଜାନକୀ ବଲ୍ଲଭ ମହାନ୍ତି - ପୃ. ୧୪୦

(୩୦) [କ] ଆଧୁନିକ ଓଡ଼ିଆ ସାହିତ୍ୟର ଗତିପଥ - ଭାରତର ଜାତୀୟତା ବିକାଶ ପଥରେ ଓଡ଼ିଆ ସାହିତ୍ୟର ଅବଦାନ- ଡକ୍‌ଟର ଗୋପାଳ ଚନ୍ଦ୍ର ମିଶ୍ର- ପୃ:୧୬୩
[ଖ] ଭାରତ ସ୍ୱାଧୀନତା ଆନ୍ଦୋଳନକୁ ଓଡ଼ିଆ କବିଙ୍କ ଦାନ - ଅଧ୍ୟାପିକା ଲବଣ୍ୟ ନାୟକ - ଝଙ୍କାର - ୧୯୬୩ - ମଇ- ପୃ: ୯୭-୧୯୬ ।

ତାଙ୍କ ଗୀତ କବିତା ଗୁଡ଼ିକରେ ସମକାଳୀନ ସମ୍ବାଦ ବା ବାର୍ତ୍ତା ପୁଙ୍ଖାନୁପୁଙ୍ଖ ଭାବରେ ପରିସ୍ଫୁଟ । କେବଳ ସେତିକି ନୁହେଁ, ତନ୍ମଧ୍ୟରେ ଅନ୍ତଃ ସଲିଳା ଫଲଗୁପରି ବ୍ୟଙ୍ଗ ବିଦ୍ରୂପର ସ୍ରୋତ ମଧ୍ୟ ନିର୍ବିଘ୍ନରେ ପ୍ରବାହିତ ହୋଇ ଯାଇଛି । ଡକ୍ଟର ମହତାବଙ୍କ ଭାଷାରେ - "ଓଡ଼ିଶାର ଗଗନ ପବନ ପୂରିଥାଏ କବି ବାଞ୍ଛାନିଧିଙ୍କ ରୋମାଞ୍ଚକାରୀ ଗାନ ।" (୩୧)

## ଅଗ୍ନି-ପରୀକ୍ଷା

କବି ବାଞ୍ଛାନିଧିଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପରିଚାଳିତ 'ଦି ନ୍ୟୁ ଓଡ଼ିଶା ଥିଏଟର' ଯେତେବେଳେ ନୟାଗଡ଼ଲୀ ଷ୍ଟେସନରେ ଅଭିନୟ ପ୍ରଦର୍ଶନ କରୁଥିଲା, ସେତେ-ବେଳେ ଅତ୍ୟାଚାରୀ ଶାସକ ଢେଙ୍କାନାଳର ରାଜା ଶ୍ରୀ ଶଙ୍କର ପ୍ରତାପ ଦେଓ ଏବଂ ସହଧର୍ମିଣୀ ଶ୍ରୀମତୀ ଚନ୍ଦ୍ରପ୍ରଭା ଦେବୀ ତାଙ୍କ ସଂଗୀତର ପ୍ରଶଂସା ଶୁଣି ନିଜ ଗଡ଼ ମଧ୍ୟରେ ନାଟକାଭିନୟ କରିବାକୁ ନିମନ୍ତ୍ରଣ କରିଥିଲେ । ରାଣୀ ଶ୍ରୀମତୀ ଚନ୍ଦ୍ରପ୍ରଭା ଦେବୀ ଥିଲେ ଜଣେ ଧର୍ମ ପରାୟଣା ସ୍ୱଦେଶୀ କଲ୍ୟାଣୀ ନାରୀ । ଯଥା ସମୟରେ ଥିଏଟର ପାର୍ଟି ଢେଙ୍କାନାଳ ଗଡ଼ ମଧ୍ୟରେ ଅଭିନୟ ପରିବେଷଣ କରାଗଲା । ମଝିରେ ମଝିରେ କବି ବାଞ୍ଛାନିଧି ଢେଙ୍କାନାଳ ରାଜାଙ୍କ ଅନ୍ୟାୟ ଅତ୍ୟାଚାର ଆଦି ବିଷୟକୁ ଉପଜୀବ୍ୟ କରି ନିଜେ ସଂଗୀତ ରଚନା କରି ନିର୍ଭୟ ଚିତ୍ତରେ ଗାନ କରିଥିଲେ, ଅସଂଖ୍ୟ ଦର୍ଶକ/ଦର୍ଶିକାଙ୍କ ସମ୍ମୁଖସ୍ଥ ରଙ୍ଗମଞ୍ଚରେ । ଏଥିରେ ତାଙ୍କର ସହକର୍ମୀ ମାନେ ପ୍ରମାଦ ଗଣିବାରେ ଲାଗିଲେ । କାରଣ, ଢେଙ୍କାନାଳର ରାଜା କିପରି ଅତ୍ୟାଚାରୀ ସେକଥା କାହାରିକୁ ଅବିଦିତ ନଥିଲା । ପୁଣି ରାଜାଙ୍କ ଗଡ଼ ମଧ୍ୟରେ ତାଙ୍କ ବିରୁଦ୍ଧରେ ଓଜସ୍ୱିନୀ ସଂଗୀତଗାନ କରିବା ଯେ କେତେ ବିପଦ ପୂର୍ଣ୍ଣ, ତାହା ଚିନ୍ତା କରି ସେମାନେ ଅସ୍ଥିର ହୋଇ ଉଠିଲେ । କିନ୍ତୁ ବାଞ୍ଛାନିଧି ଥିଲେ ପୂର୍ବପରି ଅଚଳ, ଅଟଳ ଓ ନିର୍ଭୀକ ।

ଅଭିନୟ ଶେଷ ହେବାରେ ରାଜାଙ୍କର ଜଣେ ଅନୁଚର ଆସି ସମ୍ବାଦ ଦେଲେ ଯେ ବାଞ୍ଛାନିଧିଙ୍କୁ ଟିକେ ପ୍ରାସାଦରେ ସ୍ମରଣ କରୁଛନ୍ତି । ଏହି ସମ୍ବାଦ ଥିଏଟର ପାର୍ଟିର ସଦସ୍ୟ ମାନଙ୍କ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ବାତାବରଣ ସୃଷ୍ଟି କରିଦେଲା । ଗଡ଼ ଛାଡ଼ି ଶୀଘ୍ର ପଳାଇବାକୁ ସେମାନେ ନିଜ ନିଜର ଉପକରଣମାନ ବନ୍ଧାବନ୍ଧି କରିବାରେ ଲାଗିଗଲେ । ମାତ୍ର କର୍ମବୀର ବାଞ୍ଛାନିଧି ପୂର୍ବପରି ଅବିଚଳିତ ଥାଇ ସେମାନଙ୍କୁ ଅଭୟବାଣୀ ଶୁଣାଇ ବ୍ୟସ୍ତ ନହେବାକୁ ପରାମର୍ଶ ଦେଲେ । ବାଞ୍ଛାନିଧିଙ୍କୁ ତାଙ୍କର ବନ୍ଧୁବାନ୍ଧବ ଓ ସହକର୍ମୀ ମାନେ ଏକାକୀ ରାଜ ପ୍ରାସାଦ ମଧ୍ୟକୁ ଛାଡ଼ିବାକୁ

(୩୧) ଗାନ୍ଧିଜୀ ଓ ଓଡ଼ିଶା— ଡ: ହରେକୃଷ୍ଣ ମହତାବ (୧୯୩୦-୧୯୩୪)-ପୃ. ୮୧ ।

ସମ୍ଭବ ହେଲେ ନାହିଁ । ବାଞ୍ଛାନିଧି ସେମାନଙ୍କୁ ଅନେକ ସାନ୍ତ୍ୱନା ଦେଲେ । ପରିଶେଷରେ ସ୍ଥିର ହେଲା ଯେ ତାଙ୍କ ବନ୍ଧୁ ନାଟ୍ୟଗନ୍ଧର୍ବ ଶ୍ରୀଯୁକ୍ତ ଗୌରାଙ୍ଗ ଚନ୍ଦ୍ର ଦାସ ତାଙ୍କ ସହିତ ରାଜପ୍ରାସାଦକୁ ଯିବେ । ତାହା ମଧ୍ୟ ହେଲା । ଥିଏଟର ପାର୍ଟିର ସଦସ୍ୟ ମାନେ ଛଳଛଳ ଆଖିରେ ବାଞ୍ଛାନିଧିଙ୍କୁ ବିଦାୟ ଦେଲେ । ମାତ୍ର ତାଙ୍କ ମୁଖ ମଣ୍ଡଳରେ ଲକ୍ଷି ରହିଥାଏ ସେହି ପବିତ୍ର ବ୍ୟକ୍ତିତ୍ୱର ହସ ଟିକେ ରାଜକ ।

ପଥ ମଧ୍ୟରେ ବନ୍ଧୁ ଗୌରାଙ୍ଗ ଚନ୍ଦ୍ର ଦାସ ଦୁଃଖରେ ଭାଙ୍ଗିପଡ଼ି ନୀରବ ରହିଥାନ୍ତି । ଦୁହେଁ ଯେତେବେଳେ ରାଣୀହଂସପୁରର ଦ୍ୱାର ନିକଟରେ ପହଞ୍ଚିଲେ, ସେତେବେଳେ ଅନୁଚର ଜଣକ ଜଣାଇଲେ-ରାଣୀହଂସପୁର ମଧ୍ୟକୁ କେବଳ ବାଞ୍ଛାନିଧି ଯାଇପାରିବେ । ତେଣୁ ଗୌରାଙ୍ଗ ବାବୁଙ୍କୁ ସେହିଠାରେ ରହିବାକୁ ପଡ଼ିଲା । ଅଶ୍ରୁଳ ନେତ୍ରରେ ଶେଷଥର ପାଇଁ ବନ୍ଧୁ ଗୌରାଙ୍ଗ ବାଞ୍ଛାନିଧିଙ୍କୁ ଆଲିଙ୍ଗନ କରି ପକାଇ କାନ୍ଦି ଉଠିଲେ । ବାଞ୍ଛାନିଧି କିନ୍ତୁ ତାଙ୍କୁ ପୂର୍ବପରି ନିର୍ଭୀକ ଚିତ୍ତରେ ବନ୍ଧୁଙ୍କୁ ଧୈର୍ଯ୍ୟଧରି ଯେ କୌଣସି ଅବସ୍ଥାର ସମ୍ମୁଖୀନ ହେବାକୁ ସାହସ ଧରିବାକୁ ପରାମର୍ଶ ଦେଇ ସସ୍ମିତ ବଦନରେ ରାଣୀହଂସପୁରକୁ ଗମନ କଲେ ।

ଅନୁଚର ଜଣକ ବାଞ୍ଛାନିଧିଙ୍କୁ ରାଣୀହଂସପୁରର ବହୁ ପ୍ରକୋଷ୍ଠ ଅତିକ୍ରମ କରାଇ ନେଇ ଶେଷକୁ ଏକ ବିରାଟ ସୁସଜ୍ଜିତ ପ୍ରକୋଷ୍ଠରେ ପ୍ରବେଶ କରାଇଲା । ସେ ଦେଖିଲେ ସ୍ୱୟଂ ରାଜା ଶ୍ରୀ ଶଙ୍କର ପ୍ରତାପ ଦେଓ ତାଙ୍କୁ ଅପେକ୍ଷା କରିବସିଛନ୍ତି । ସେ ସେଠାରେ ପହଞ୍ଚିବା କ୍ଷଣି ରାଜା ତାଙ୍କୁ ସସମ୍ମାନେ ସ୍ୱାଗତ ଜଣାଇ ଆସନ ଗ୍ରହଣ କରିବାକୁ ଅନୁରୋଧ କଲେ । ଏପରି ଅତର୍କିତ ସତ୍କାରରେ ସେ ବିସ୍ମିତ ହୋଇଗଲେ ।

ରାଣୀ ରତ୍ନପ୍ରଭା ଦେବୀ ଅନତି ଦୂରରେ ଏକ ଝିନ୍ନପର୍ଦ୍ଦାର ଅନ୍ତରାଳରେ ଉପବେଶନ କରିଥାନ୍ତି । ତାପରେ ରାଣୀଙ୍କର ଅନୁରୋଧ କ୍ରମେ କବି ବାଞ୍ଛାନିଧିଙ୍କୁ କେତୋଟି ସଂଗୀତ ଗାନ କରିବାକୁ ପଡ଼ିଥିଲା । ସେ ସଂଗୀତ ଶ୍ରବଣ କରି ରାଣୀ ମୁଗ୍ଧ ହୋଇଗଲେ । ପରିଶେଷରେ ରାଣୀଙ୍କ ନିର୍ଦ୍ଦେଶ କ୍ରମେ ସୁମିଷ୍ଟ ଖାଦ୍ୟମାନ ତାଙ୍କୁ ପରିବେଷଣ କରାଯାଇଥିଲା । ଅସମୟରେ କିଛି ନଖାଇବାରୁ ରାଣୀ ନିଜେ ଉଠି-ଆସି କିଛି ମିଷ୍ଟାନ୍ନ ତାଙ୍କ ସମ୍ମୁଖରେ ଧରି କହିଲେ-"ଏ ମିଷ୍ଟାନ୍ନ କିଛି ତୁମକୁ ଖାଇବାକୁ ହେବ । ନଚେତ୍ ମୋ ମନରେ କମ୍ ଦୁଃଖ ହେବ ନାହିଁ ।" ସେହି ମହୀୟସୀ ନାରୀଙ୍କର ଏପରି ଆଶାତୀତ ସ୍ନେହ ସମ୍ମାନରେ ବାଞ୍ଛାନିଧି ସ୍ତମ୍ଭୀଭୂତ ହୋଇ ଯାଇଥିଲେ । ଶେଷକୁ ରାଣୀଙ୍କ ମନ ରକ୍ଷା ପାଇଁ କିଛି ମିଷ୍ଟାନ୍ନ ଗ୍ରହଣ କଲେ ।

ମିଷ୍ଟାନ୍ନ ଭୋଜନ ପରେ ରାଣୀ ରତ୍ନପ୍ରଭା ଦେବୀ ତାଙ୍କୁ ପାଟଯୋଡ଼ା ଦେଇ

ରାଜକୀୟ ସମ୍ମାନରେ ସମ୍ମାନିତ କରାଇଲେ । ବାଞ୍ଛାନିଧି ପ୍ରଥମେ ଏହାକୁ ଗ୍ରହଣ କରିବେ ନାହିଁ ବୋଲି କହିଲେ । ସେ କହିଲେ - "ନାହିଁ ରାଣୀ ମା, ଏ ଗୀନ, ଦରିଦ୍ର ସେବକ ପ୍ରତି ଏତିକ ସ୍ନେହ, ସମ୍ମାନ କିଛି କମ୍ ନୁହେଁ ।" କିନ୍ତୁ ରାଣୀମା କଅଣ ସହଜରେ ଛାଡ଼ନ୍ତି ? ସେ କହିଲେ - "ବାଞ୍ଛାନିଧି । କେବଳ ତୁମକୁ ପୁରସ୍କାର ଦେଇ ସମ୍ମାନିତ କରିବା ପାଇଁ ମୁଁ ଏ ପାଟଯୋଡ଼ା ମଗାଇଥିଲି ।"

ରାଣୀମାଙ୍କର ସ୍ନେହାର୍ଦ୍ରଭରା ଅନୁରୋଧରେ ବାଞ୍ଛାନିଧି ପାଟବସ୍ତ୍ର ଗ୍ରହଣ କରି ପରିଧାନ କଲେ ଓ ହସ ହସ ବଦନରେ ରାଣୀ ଓ ରାଜା ତାଙ୍କୁ ରାଜ ପ୍ରାସାଦରୁ ବିଦାୟ ଦେଲେ ।

ବନ୍ଧୁ ଗୌରାଙ୍ଗ ଚନ୍ଦ୍ର ଦାସ କେତେ ଦେବଦେବୀଙ୍କୁ ସ୍ମରଣ କରି ଯାଉଥାଆନ୍ତି- ବାଞ୍ଛାନିଧି ବାବୁ ଯେପରି ଜୀବିତ ଅବସ୍ଥାରେ ଫେରି ଆସନ୍ତୁ । ରାଜପ୍ରାସାଦରୁ ସେହି ନିଭୃତ ସ୍ଥାନରେ ଅପେକ୍ଷା କରି ରହିଥାନ୍ତି ବାଞ୍ଛାନିଧିଙ୍କ ଫେରନ୍ତା ବାଟକୁ । ହଠାତ୍ ପାଟବସ୍ତ୍ରାବୃତା ଅବସ୍ଥାରେ ବାଞ୍ଛାନିଧିଙ୍କ ପ୍ରତ୍ୟାବର୍ତ୍ତନକୁ ସେ ସ୍ୱଚକ୍ଷୁରେ ଦେଖି ବିଶ୍ୱାସ କରି ପାରିଲେ ନାହିଁ । ବାଞ୍ଛାନିଧିଙ୍କୁ ପୁଣି ଥରେ ସେଆନନ୍ଦ ଗଦ୍‌ଗଦ୍ ଚିତ୍ତରେ ଆଲିଙ୍ଗନ କରି ପକାଇ କାନ୍ଦି ଉଠିଲେ ।

ଦୁହେଁ ଯେତେବେଳେ ଆସି ଥିଏଟର ପାର୍ଟିର ବିଶ୍ରାମ ସ୍ଥଳରେ ପହଞ୍ଚିଲେ, ସେତେବେଳେ ସେଠାରେ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଗଲା, ତାହା ଅବର୍ଣ୍ଣନୀୟ । ସମସ୍ତେ ମହାନନ୍ଦରେ ପରସ୍ପରଙ୍କୁ ଆଲିଙ୍ଗନ କରିବାରେ ଲାଗିଗଲେ । ଏକ ମହାନନ୍ଦର ସ୍ରୋତ ଚତୁର୍ଦ୍ଦିଗେ ଖେଳିଗଲା ।

ଗ୍ରାମଫୋନ ରେକର୍ଡ଼

୧୯୩୭ ମସିହାରେ କଲିକତାସ୍ଥିତ Meghaphone Company ଦ୍ୱାରା ସେ ଚାରିଗୋଟି ରେକର୍ଡ଼ରେ ଆଠଗୋଟି ସଂଗୀତ ନିଜେ ଗାନକରି ରେକର୍ଡ଼ିଂ କରିଥିଲେ । ସେଗୁଡ଼ିକର ନମ୍ବର ହେଲା—

J. N. G. 300— (କ) ସାଇମନ୍ ରିପୋର୍ଟ ଲେଖା-
(ଖ) କହକହ କେଉଁ ଜାତି—

J. N. G. 431— (କ) କାହୁଁ ଅଇଲେ ବିଦେଶରୁ ବେପାରୀ-
(ଖ) ଇଣ୍ଡିଆନ୍ ବୁରୋକ୍ରେସିକୁ -

J. N. G. 480— (କ) କି ହେବ ସେ ସ୍ୱରାଜ୍ୟ ଘେନି -
(ଖ) କି ହେବ ଏ ମୁଣ୍ଡକଟା ଦେଶକୁ ଘେନି -

ଅନ୍ୟ ଏକ ରେକର୍ଡ ଦୁଃଷ୍ପ୍ରାପ୍ୟ । ତାଙ୍କ ରଚିତ ଅନ୍ୟ ତିନିଗୋଟି ସଂଗୀତ ନଟ-ନନ୍ଦିନୀ ଶ୍ରୀମତୀ ଚନ୍ଦ୍ର ଦାସ His Masters Voice Companyରେ ଗୀତ ରେକର୍ଡିଂ କରିଥିଲେ । ସେଗୁଡ଼ିକ ହେଲା—

N 17411 — (କ) କମ୍ପା ଦେଲ ହେ ବିଧି ବୁଦ୍ଧି ମାନବେ -

N. 7463 — (କ) ଆଜ୍ଞା ଗୋଲଟେବୁଲ ପାଲା ଲଗିଲାରେ -

(ଖ) ସ୍ୱରାଜ୍ୟ ସ୍ୱରୂପ -

ଏହିପରି ବହୁ ଦୃଷ୍ଟାନ୍ତରୁ କବି ବାଞ୍ଛାନିଧିଙ୍କର ସଂଗୀତ କଳା ପ୍ରତିଭାର ପରିଚୟ ମିଳେ । ତେଣୁ ଯଥାର୍ଥରେ ଉତ୍କଳର "କଳା କୋକିଳ", ପ୍ରିୟ ଉତ୍କଳବାସୀଙ୍କର ଏହି ଉପାଧି ପାଇଁ ସଂପୂର୍ଣ୍ଣ ଭାବରେ ଯୋଗ୍ୟ ।

॥ ପନ୍ଦର ॥

## ନାଟ୍ୟପ୍ରେମୀ ବାଞ୍ଛାନିଧି

### ଛାତ୍ର ଜୀବନରେ

ନାଟ୍ୟକଳାର ସର୍ବ ପ୍ରଥମ ଏବଂ ସର୍ବଶ୍ରେଷ୍ଠ ଉପାଦାନ ହେଲା - ଅନୁକରଣ ପ୍ରବୃତ୍ତି । Aristotle ଏହାକୁ Imitation ବୋଲି ନାମିତ କରିଛନ୍ତି । ବାଲ୍ୟାବସ୍ଥାରୁ ବାଞ୍ଛାନିଧିଙ୍କର ଏହି ଅନୁକରଣ ପ୍ରବୃତ୍ତିଟି ଲକ୍ଷ୍ୟ କରାଯାଇଥିଲା । ପୂର୍ବରୁ ଉଲ୍ଲେଖ ହୋଇଛି ଯେ ସେ କିପରି ପିଲାଦିନେ ଶ୍ରୀକୃଷ୍ଣଙ୍କ ରୂପରେ ନିଜକୁ ସୁଶୋଭିତ କରୁଥିଲେ । ଚଟଶାଳୀରେ ଗୋପୀଭାଷା, ରାସକ୍ରୀଡ଼ା, ଭାଗବତ ଆଦିକୁ ନିଜେ ଗାନ କରି ନାଚୁଥିଲେ ।

ଭଦ୍ରକ ହାଇସ୍କୁଲରେ ଛାତ୍ର ଅବସ୍ଥାରେ ସେ ବୈଷ୍ଣବ ଚରଣ ଦାସଙ୍କ ସହିତ ଏକତ୍ର ହୋଇ ଲୁଚି ଲୁଚି କିପରି ସଂଗୀତ ଅଭ୍ୟାସ କରୁଥିଲେ, ତାହା ପୂର୍ବରୁ କୁହାଯାଇଛି । କଲେଜ ଜୀବନରେ କବି ମଞ୍ଜୁଳ କୃଷ୍ଣ ପ୍ରସାଦ ବସୁ ଏବଂ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସଂସ୍ପର୍ଶରେ ତାଙ୍କର ନାଟକ ପ୍ରତି ଅନୁରକ୍ତି ଅଧିକ ସୁସ୍ପଷ୍ଟ ହୋଇଉଠେ । କାନ୍ତକବିଙ୍କ ସହିତ ତାଙ୍କର କିପରି ସଂପର୍କ ଥିଲା ତାହାର ଉଦାହରଣ ସ୍ୱରୂପ ପ୍ରବୀଣ ସାମ୍ବାଦିକ ଓ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ନନ୍ଦକିଶୋର ଦାସ 'ବନ୍ଧୁ ସ୍ମୃତି' ଲେଖାର କିଛି ଅଂଶ ଉଦ୍ଧାର କରାଯାଇପାରେ । ସେଥିରେ ଶ୍ରୀଯୁକ୍ତ ଦାସ ଲେଖିଛନ୍ତି– "୧୯୧୩ ମସିହା ମାର୍ଚ୍ଚ ମାସ ମୁଁ ପ୍ରଥମେ ତାଙ୍କର [ବାଞ୍ଛାନିଧି] ସାକ୍ଷାତ୍ ଓ ପରିଚୟ ଲାଭ କରିଥିଲି । କଟକ କଲେଜର ପାର୍ଶ୍ୱବର୍ତ୍ତୀ ପ୍ରାଚୀନ

ରେଭେନ୍‌ସା କଲେଜ ସ୍ମୃତିବାର ପ୍ରାଙ୍ଗଣରେ ସେ ବର୍ଷର ମେଟ୍ରିକୁଲେସନ୍ ପରୀକ୍ଷାର୍ଥୀଙ୍କର ଏକ ସମ୍ବର୍ଦ୍ଧନା ଉତ୍ସବର ସଭା ଆରମ୍ଭରେ ବାଞ୍ଛାନିଧି ବାବୁ କାନ୍ତକବିଙ୍କ ରଚିତ "ମଙ୍ଗଳ ମୟୀ ଦେବୀ ଜନନୀ ବନ୍ଦ୍ୟା, ମଙ୍ଗଳ କର ଆଜି ଏ ଶୁଭସନ୍ଧ୍ୟା" ସଂଗୀତ ଗାନ କରିଥିଲେ । କବିତାର ଭାବ ଓ ଭାଷା, ତତ୍‌ସଂଗେ ବାଞ୍ଛାନିଧି ବାବୁଙ୍କ ପୁଲକିତ କଣ୍ଠ ସମସ୍ତଙ୍କୁ ମୁଗ୍‌ଧ କରିଦେଇଥିଲା ।" (୩୨)

## ରାଧାମୋହନ ଥିଏଟର ପାର୍ଟି

ଛତ୍ରମ ପାଡ଼ୀ ଆବାସରେ ତାଙ୍କର ଉଦ୍ୟମରେ 'ରାଧାମୋହନ ଥିଏଟର ପାର୍ଟି' ଗଠନ କରାଯାଇଥିଲା । ଜମିଦାର ଶ୍ରୀ ରାଧାକାନ୍ତ ପାଢ଼ୀ ଓ ଶ୍ରୀ ମୁକ୍ତିକାନ୍ତ ପାଢ଼ୀ ଏହାର ପୃଷ୍ଠପୋଷକତା କରୁଥିଲେ । ଏଥିରେ ସର୍ବଶ୍ରୀ କୃଷ୍ଣ ଚନ୍ଦ୍ର କର (ଶଙ୍ଖାରୁ), ଲକ୍ଷ୍ମୀନାରାୟଣ ପାଢ଼ୀ, ଉପେନ୍ଦ୍ର ମହାପାତ୍ର, ରାଧାକାନ୍ତ ପାଢ଼ୀ ଓ ମୁକ୍ତିକାନ୍ତ ପାଢ଼ୀ ଓ ନିଜେ ବାଞ୍ଛାନିଧି ଅଭିନୟ କରୁଥିଲେ । ଏହି ଥିଏଟର ପାର୍ଟି ଆନୁକୂଲ୍ୟରେ ରାମ ଶଙ୍କର ରାୟଙ୍କର 'କାଞ୍ଚିକାବେରୀ' କାମପାଳ ମିଶ୍ରଙ୍କର 'ସୀତା ବିବାହ', ଅଶ୍ୱିନୀ କୁମାର ଘୋଷଙ୍କର 'ସତୀ-ସାବିତ୍ରୀ', 'ସମଲେଶ୍ୱରୀ' ଆଦି ବହୁ ନାଟକ ମଞ୍ଚସ୍ଥ କରାଯାଇଥିଲା । 'ସୀତା ବିବାହ'ରେ କେଉଟୁଣୀ ଜଣ୍ଟମା ଭୂମିକାରେ ନିଜେ ବାଞ୍ଛାନିଧି ଉଚ୍ଚକୋଟିର ଅଭିନୟ କରି ସ୍ୱର୍ଣ୍ଣ ପଦକ ଓ ଟଙ୍କା ପୁରସ୍କାର ଲାଭ କରିଥିଲେ । ତାଙ୍କର ବୈଶିଷ୍ଟ୍ୟ ହେଲା-ନାରୀ ଭୂମିକାରେ ସେ ନିଚ୍ଛକ ଓ ଉଚ୍ଚ କୋଟିର ଅଭିନୟ କରିପାରନ୍ତି । ସୁତରାଂ, ସେ ଯେତେ-ଗୁଡ଼ିଏ ନାଟକରେ ଅଭିନୟ କରିଛନ୍ତି, ପ୍ରାୟ ଅଧିକାଂଶ ନାରୀ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି ସେ । ଏହି ଥିଏଟର ପାର୍ଟିକୁ ସଂଗୀତ ଓ ନୃତ୍ୟ ନିର୍ଦ୍ଦେଶନା ପାଇଁ ପ୍ରଖ୍ୟାତ ସଂଗୀତ ଶିଳ୍ପୀ ମନମୋହନ ସାବତ, (ଗୋଲା ପୋଖରୀ) ଏବଂ ସାରଦା ପ୍ରସାଦ ଲାଲ ବେହେରା (ସାଧୁ ବାବୁ-କଟକ) କେତେ ଥର ଆସିଥିଲେ ।

## 'କଳା-କୋକିଳ' ଉପାଧି

ସେ ରେଭେନ୍‌ସା କଲେଜରେ ଅଧ୍ୟୟନ କଲା ବେଳେ କଲେଜର ନାଟ୍ୟ ସଂସଦରେ ଜଣେ କ ସକ୍ରିୟ ସଦସ୍ୟ ଥିଲେ । ୧୯୧୪ ମସିହାରେ ରେଭେନ୍‌ସା କଲେଜର ନାଟ୍ୟ ସଂସଦ ଆନୁକୂଲ୍ୟରେ 'ବୃତ୍ତାସୁର ବଧ' ଅଭିନୀତ ହୋଇଥିଲା । ଏଥିରେ ବାଞ୍ଛାନିଧି ଶ୍ରେଷ୍ଠାଂଶରେ ଅବତୀର୍ଣ୍ଣ ହୋଇଥିଲେ । ସେ ସହଚରୀ 'ଶଚୀ' ଭୂମିକାରେ ଅଂଶ ଗ୍ରହଣ କରି ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କ ରଚିତ ଗୁରୁ/ପାଞ୍ଚଟି ସଂଗୀତ ସୁଲଳିତ କଣ୍ଠରେ ଯେପରି ଚିତ୍ତାକର୍ଷକ କରି ଗାନ କରିଥିଲେ, ସେଥିରେ

(୩୨) ଚିତ୍ର ସ୍ମୃତି - ଶ୍ରୀ ନନ୍ଦ କିଶୋର ଦାସ- ପୃ- ୧ ।

ଦର୍ଶକ ମାନେ ତାଙ୍କୁ 'କଳା-କୋକିଳ' ଉପାଧିରେ ଭୂଷିତ କରିଥିଲେ । ଓଡ଼ିଶା ରଂଗମଂଚ୍ ଇତିହାସର ଲେଖକଙ୍କ ଭାଷାରେ—"ସେ ସନ୍ନ୍ୟାସୀ ଭୂମିକାରେ ଅଂଶ ଗ୍ରହଣ କରି ଯେଉଁ ଗୁରୁ ପାଞ୍ଚ ଟି କବି ଗୋବିନ୍ଦ ଚନ୍ଦ୍ର ଶୂରଦେଓଙ୍କ ରଚିତ ଗୀତ ଗାଇଥିଲେ, ସେଥିରେ ଦର୍ଶକ ମାନେ ତାଙ୍କୁ 'କଳା-କୋକିଳ' ଉପାଧି ଦେଇଥିଲେ" (୬୩) । ବସ୍ତୁତଃ, ବାଞ୍ଛାନିଧିଙ୍କ ଦେହର ବର୍ଣ୍ଣ ଥିଲା—କଳା । ତେଣୁ ଏହି ଉପାଧି ଯେ ତାଙ୍କ ପ୍ରତି ପୂର୍ଣ୍ଣତଃ ଉପଯୁକ୍ତ ଏଥିରେ ସନ୍ଦେହର ଅବକାଶ ନାହିଁ । କବି ଗୋବିନ୍ଦ ଚନ୍ଦ୍ର ଶୂରଦେଓ ଏବଂ କଲେଜର ଅଧ୍ୟାପକ ମାନଙ୍କ ତରଫରୁ ରୌପ୍ୟ ଓ ସ୍ୱର୍ଣ୍ଣ ପଦକ କେତୋଟି ଲାଭ କରିଥିଲେ ।

## ଶାଳଗାଁ ଥିଏଟର

ସେ ରେଭେନ୍ସା କଲେଜର ନାଟ୍ୟ ସଂସଦରେ ଅଭିନୟ କରି ଏପରି ପ୍ରସିଦ୍ଧ ହୋଇଗଲେ ଯେ ନାଟକ ଅଭିନୟ କରିବା ପାଇଁ ବହୁ ନିମନ୍ତ୍ରଣ ପାଇଥିଲେ । 'ଶାଳଗାଁ ଥିଏଟର ପାର୍ଟି' ତରଫରୁ ନିମନ୍ତ୍ରଣ ପାଇ ଆଠଦିନ ପୂର୍ବରୁ ଅଭିନୟ ଅଭ୍ୟାସରେ ଯୋଗ ଦେଲେ । ଏହା ୧୯୧୫ ରୁ ୧୯୨୦ର କଥା । ବଂଗଳାରେ ରଚିତ 'ଅହଲ୍ୟା' ନାଟକକୁ ଓଡ଼ିଆରେ ଅନୁବାଦ କରିଥାନ୍ତି ବଳରାମ କାନୁନ୍ଗୋ । ମାତ୍ର ସଂଗୀତ ଗୁଡ଼ିକ ପ୍ରସିଦ୍ଧ ସଙ୍ଗୀତଜ୍ଞ ସାରଦା ପ୍ରସାଦ ବଲବେହେରା ରଚନା କରିଥିଲେ । କଟକରୁ ମଧ୍ୟ ଆଉ ଦୁଇଜଣ ହରମୋହନ ଆଚାର୍ଯ୍ୟ, ଜଗନ୍ନାଥ ମିଶ୍ର ଏଥିରେ ଅଭିନୟ କରିବା ପାଇଁ ଆସିଥିଲେ । ବାଞ୍ଛାନିଧି ଏଥିରେ ନାୟିକା 'ଅହଲ୍ୟା' ଭୂମିକାରେ ଅଭିନୟ କରି ସମସ୍ତଙ୍କର ପ୍ରଶଂସା ଭାଜନ ହୋଇଥିଲେ । ଜଗନ୍ନାଥ ମିଶ୍ର ଗୌତମ ଏବଂ ହରମୋହନ ଆଚାର୍ଯ୍ୟ ହାସ୍ୟ ଶିଳ୍ପୀ ଭାବରେ ଅଭିନୟ କରିଥିଲେ ।

## ବିବାହ ଚତୁର୍ଥୀ

ତା ପରେ ୧୯୧୭ ଜୁଲାଇ ଶେଷ ସପ୍ତାହରେ ବାଞ୍ଛାନିଧିଙ୍କ ବିବାହର ଚତୁର୍ଥୀ ଉତ୍ସବ ଉପଲକ୍ଷେ ଧାରାବାହିକ ନାଟକ 'ଶ୍ରୀରାମ ରାଧା ମୋହନ ଥିଏଟର ପାର୍ଟି' ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିଲା । ବାଞ୍ଛାନିଧି ଏହି ଥିଏଟର ପାର୍ଟିକୁ କିପରି ନବ ଜୀବନ ପ୍ରଦାନ କରିଥିଲେ, ତାହା ତାଙ୍କର ବିବାହ ପ୍ରସଂଗରେ ବିଶଦ୍ ବର୍ଣ୍ଣନା କରାଯାଇଛି । ଏଥି ଉପଲକ୍ଷେ ବଂଗଳାରୁ 'ଅହଲ୍ୟା' ଏବଂ 'ନନ୍ଦ ବିଦାୟ' ନାଟକମାନ

(୬୩) ଓଡ଼ିଶା ରଙ୍ଗମଞ୍ଚ ଇତିହାସ—ଶ୍ରୀ ସାରଦା ପ୍ରସାଦ ବଲବେହେରା—ପୃଷ୍ଠ-୧୧୬ ।

ଅଭିନୟ ହୋଇଥିଲା । ପ୍ରାୟ ଏକ ମାସ ଧରି ଅଭିନୟ ଓ ସଂଗୀତର ଅଭ୍ୟାସ ଚାଲିଥିଲା । 'ଅହଲ୍ୟା' ନାଟକରେ ନାୟିକା 'ଅହଲ୍ୟା' ଏବଂ ନନ୍ଦକେଶରୀ' ନାଟକରେ ନାୟିକା 'ନନ୍ଦନା' ଭୂମିକାରେ ନିଜେ ବାଞ୍ଛାନିଧି ଅଭିନୟ କରିଥିଲେ ।

ଦି ନ୍ୟୁ ଓଡ଼ିଶା ଥିଏଟର

ଭଦ୍ରକ ନିକଟସ୍ଥ ମଧୁପୁରରେ ଏକ ଅପେରା ପାର୍ଟି ଥିଲା । ତାହାର ନାମ—"ଗଣେଶ ଅପେରା ପାର୍ଟି" ! ଏହାକୁ ଏକ ଥିଏଟର ପାର୍ଟି ରୂପେ ପରିଣତ କଲେ ବାଞ୍ଛାନିଧି । ଏହାର ନାମ ହେଲା—"ଦ ନ୍ୟୁ ଓଡ଼ିଶା ଥିଏଟର" ଭଦ୍ରକର ଦକ୍ଷିଣ ଦିଗରେ ଅବସ୍ଥିତ ଗେଲପୁର ନିବାସୀ ଶ୍ରୀ ଗୌରାଙ୍ଗ ଚନ୍ଦ୍ର ଦାସଙ୍କ ଏହାର ନିର୍ଦ୍ଦେଶନା ଦାୟିତ୍ୱରେ ରଖିଲେ ! ଗୌରାଙ୍ଗ ବାବୁ କଲିକତାର ଏକ ସିନେମା କଂପାନୀରେ ଚାକିରି ପାଇ ଯାଇଥିଲେ । ସେଥିରେ ଯୋଗ ଦେବା ପାଇଁ ବାଞ୍ଛାନିଧିଙ୍କ ଠାରୁ ବିଦାୟ ନେଇଗଲେ । ବାଞ୍ଛାନିଧି ତାଙ୍କୁ ସେତେବେଳେ ବିଷାଦ ଚିତ୍ତରେ କହିଲେ "ହାୟ, ହାୟ, ତୁମେ କରୁଛ କ'ଣ ? ଦୀର୍ଘ ବାରବର୍ଷ ଓଡ଼ିଶାର ସଂଗୀତ ରାଜ୍ୟରେ ବିଚରଣ କରି ସଂଗୀତଜ୍ଞ ହୋଇ ଶେଷରେ ବଙ୍ଗ ଦେଶରେ ଚାକିରି କରିବାକୁ ବାହାରିଲ ? ସେ ଦେଶର ଗାୟକ ଅଭାବ ଅଛନ୍ତି ନା ଅଭିନେତା ଅଭାବ ଅଛନ୍ତି । ତୁମେ ସେଠାରେ ଯାଇ ସେମାନଙ୍କ ଗହଣରେ ରହି ବିଶେଷ କିଛି କରି ପାରିବ ବୋଲି ମୋର ମନେ ହେଉନାହିଁ । ଯଦିବା ଭଗବାନଙ୍କ କୃପାରୁ ତମର ବିଶେଷ କିଛି ଖ୍ୟାତି ହୁଏ ତହିଁରେ ଓଡ଼ିଶାର କ'ଣ ଯାଏ ଆସେ-ତମ ଦ୍ୱାରା ଓଡ଼ିଶାର କିଛି ଗୌରବ କରିପାରିବ ନାହିଁ । ଆମ ଏ ଓଡ଼ିଶା ମୁଲକଟା ବହୁ ପଛରେ ପଡ଼ିଛି । ଯଦି ତୁମେ କଷ୍ଟ ସ୍ୱୀକାର କରି କିଛି ଗୁଣ ହାସଲ କରିଛ, ତାହା ଏହି ଓଡ଼ିଆ ପୁଅଙ୍କ ମଧ୍ୟରେ ବିତରଣ କର । ଯହିଁରେ ତୁମର କୀର୍ତ୍ତି କାଳ କାଳକୁ ରହିଯିବ । ତା' ନକରି ପଳାତକଙ୍କ ପରି ଏକବାର ଦେଶ ତ୍ୟାଗ କରି ବିଦେଶକୁ ପଳେଇବ ?" ଗୌରାଙ୍ଗ ଚନ୍ଦ୍ର ଦାସ ତା'ର ଉତ୍ତରରେ କହିଲେ— "ଦୁଇଟି ନାମଯାଦା ଥିଏଟରରେ ରହି ସେମାନଙ୍କ ପରିଣତି ଦେଖିଲି । ଆଉ ଏଠାରେ ସେପରି କୌଣସି ଥିଏଟର ଦଳ ନାହିଁ, ଯହିଁରେ ମୁଁ ରହିପାରିବି ।" ବାଞ୍ଛାନିଧି ତେଣୁ ସାନ୍ତ୍ୱନା ଦେଇ କହିଲେ – "ଆରେ ତୁମକୁ ଆଉ କୌଣସି ଯାତ୍ରା ଥିଏଟର ଦଳରେ ଚାକିରି କରିବାର ଦରକାର ନାହିଁ । ତୁମେ ନିଜେ ଗୋଟିଏ ଅଭିନୟ ଦଳ ଗଠନ କର ଏବଂ ସେମାନଙ୍କୁ ଭଲ ଭାବରେ ତିଆରି କରି ଓଡ଼ିଶାର ପୁରପଲ୍ଲୀରେ ଅଭିନୟ ଦେଖାଅ—ତହିଁରେ ଦେଶ ଲୋକଙ୍କର ଆଖି ଖୋଲିବ ଓ ତୁମର ମଧ୍ୟ ସୁନାମ ହେବ ।"

ଗୌରାଙ୍ଗ ବାବୁ କହିଲେ—"ମାଫ୍ କରନ୍ତୁ । ଏ ରାଜ୍ୟରେ ସଙ୍ଗୀତ ଦଳ ଦୁଇ ତିନି ବର୍ଷରୁ ଅଧିକ ତିଷ୍ଠିବ ନାହିଁ । ବାଦ୍ୟମାନ ହାଇଜାଟ ହରକତ ହେବାକୁ ପଡ଼ିବ ।" ବାଞ୍ଛାନିଧି ପୁଣି ସାନ୍ତ୍ୱନା ଦେଇ କହିଲେ—"ଆଚ୍ଛା, ତୁମେ ବୁଝୁନାହିଁ କାହିଁକି ? ତୁମେତ ଦୁଇ ତିନି ବର୍ଷ ଗୋଟିଏ ଦଳକୁ ତିଷ୍ଠି ରହିବା ଆଶା କରୁଛ । ନା- ମୁଁ କହେ- ବର୍ଷେ କିମ୍ବା ଦୁଇ ବର୍ଷ ଗୋଟିଏ ଦଳ ରହୁ ସେ ଭାଙ୍ଗୁ । ଅନ୍ୟ ଠାରେ ହେଉ, ଏ ପ୍ରକାର ଯେତେ ଅଧିକ ସ୍ଥାନରେ ତମ ଶିକ୍ଷାନୁଷ୍ଠାନ ଗଠିତ ହୁଏ, ତେବେ ମଙ୍ଗଳ, କାରଣ ଆମ ରାଜ୍ୟରେ ଏ ଯାଏଁ ମାର୍ଗ ସଙ୍ଗୀତ ଓ ଉଚ୍ଚସ୍ତରର ଅଭିନୟ ଆଦୌ ଦେଖିବାକୁ ମିଳୁନାହିଁ । ତୁମେ ଯେଉଁ ସ୍ଥାନରେ ସଂଗୀତାନୁଷ୍ଠାନ ଗଢ଼ିବ । ସେଠାରେ ଶୁଦ୍ଧ ସଂଗୀତର ଶିକ୍ଷା ଦିଆହେବ । ଉଚ୍ଚ-କୋଟୀର ଅଭିନୟ ମଧ୍ୟ ଶିକ୍ଷା ଦିଆହେବ । ବେଶୀ ଦିନ ନରହୁ । କିନ୍ତୁ ସେଠାରେ ଯେଉଁ ଶୁଦ୍ଧ ମଞ୍ଜି ବୋଟା ହେବ ତା'ର ଫଳ ପାଞ୍ଚ ବର୍ଷରେ ନହେଲେ ମଧ୍ୟ ପଚିଶ ବର୍ଷ ପରେ ଫଳିବ । ରାଜ୍ୟରେ ସଂଗୀତ ଉଚ୍ଚ ସ୍ତରକୁ ଆସିହେବ । ବର୍ତ୍ତମାନ ଆମ ରାଜ୍ୟର ଅଭିନୟ ଦଳକୁ ଅନ୍ୟ ଦେଶର ଲୋକେ ଯେପରି [illegible] କରୁଛନ୍ତି ସେ ସଗଠନକୁ ଆଉ ସେ ସବୁ ଶୁଣିବାକୁ ବା ଦେଖିବାକୁ ହେବ ନାହିଁ । ତୁମେ ଅବଶ୍ୟ ଅନ୍ୟ ଦେଶରେ ସମ୍ମାନିତ ହେବ । ଏ ପର୍ଯ୍ୟନ୍ତ ନିଜର ଜୀବନ ପାଇଁ ଲାଗି ପାରୁ ଦୁଃଖ କଷ୍ଟ ସହି ମନୁଷ୍ୟ ହୋଇ ହେବାରେ ଗୁଣିଙ୍କ ତାଳିକାରେ ନାମ ଲେଖେଇଛି କର । ବହୁତ ସାର୍ଟିଫିକେଟ୍, ମେଡାଲ୍ ଓ ସିଲ୍ଡ ପର୍ଯ୍ୟନ୍ତ ପାଇ ସାରିଛ । ମାତ୍ର ଏବେ ଠାରୁ ଟିକିଏ ଦେଶକୁ ଚାହିଁ ଆମ ଦେଶର ଲକ୍ଷ ଲକ୍ଷ ଅଶିକ୍ଷିତ ନିରାହ ନର-ନାରୀ ମାନଙ୍କ ପତି ଦୃଷ୍ଟି ଦିଅ । ସେମାନଙ୍କୁ ଚେଷ୍ଟା ନକଲେ ଅଉ କିଏ ଏଥିପାଇଁ ଚେଷ୍ଟା କରିବ । ନଚେତ୍ କାଲି ଆମ ନିରୀହ ଗରିବ ଭାଇ ମାନେ ଅନ୍ଧାରରେ ପଡ଼ି ଅଚିହ୍ନା ହୋଇ ରହିଥିବେ ।"

ଏଥିରେ ଗୌରାଙ୍ଗ ବାବୁ ସମ୍ମତ ହୋଇଥିଲେ । ବାଞ୍ଛାନିଧିଙ୍କ ପରିଚାଳନାରେ ଥିଏଟର ପାର୍ଟିଟିଏ ଆରମ୍ଭ କରିବାକୁ । ତେଣୁ ଗୌରାଙ୍ଗ ବାବୁଙ୍କ ନିକଟକୁ ଆସିଥିବା ପତ୍ରକୁ ବାଞ୍ଛାନିଧି ଟିକିଟିକି କରି ଚିରି ପକାଇଲେ । ଗୌରାଙ୍ଗ ବାବୁଙ୍କୁ ବାରମାଣ ଜମି ମଇତାପୁର ଠାରେ ଦିଆଗଲା । ଏହି ଥିଏଟର ପାର୍ଟି ଥିଲା ଏକ ଭ୍ରାମ୍ୟମାଣ ନାଟ୍ୟ ସଂସ୍ଥା । ଶ୍ରୀ ଲକ୍ଷ୍ମୀଧର ମିଶ୍ର ଥିଲେ ଏହାର ସତ୍ତ୍ୱାଧିକାରୀ ।

ନଟନନ୍ଦନ ଗୌରାଙ୍ଗ ଚନ୍ଦ୍ର ଦାସଙ୍କ ସହିତ ବାଞ୍ଛାନିଧିଙ୍କର ଘନିଷ୍ଠ ସଂପର୍କ ଥିଲା । ତେଣୁ ଗୌରାଙ୍ଗ ବାବୁ ଏପରି ଏକ ତ୍ୟାଗ କରିବାକୁ ପ୍ରସ୍ତୁତ ହେଲେ । ଏଠାରେ ଗୌରାଙ୍ଗ ଚନ୍ଦ୍ର ଦାସଙ୍କର ସମ୍ୟକ ପରିଚୟ ଦେଲେ ଅସମୀଚୀନ ହେବ ନାହିଁ ।

୧୯୦୭ ଡିସେମ୍ବର ୨୫ ତାରିଖରେ ଭଦ୍ରକର ଦକ୍ଷିଣ ଦିଗସ୍ଥ ଗୋଲପୁରର

ଶ୍ରୀ ଦୀନବନ୍ଧୁ ଦାସଙ୍କ ପରିବାରରେ ଜନ୍ମ ହୋଇଥିଲା । ଶ୍ରୀମତୀ ରୁକ୍ମିଣୀ ଦାସ ଥିଲେ ତାଙ୍କ ମାଆ । ପିତା ତାଙ୍କର କୋଠାର ଜମିଦାରଙ୍କ ପାଖରେ ପତ୍ରବାହକ ରୂପେ କାର୍ଯ୍ୟ କରୁଥିଲେ । ସେ ମେଲପୁର ସ୍କୁଲ, ବାଗ୍ରବାଇ ଓ ପରେ ଭଦ୍ରକ ହାଇସ୍କୁଲରେ ଅଧ୍ୟୟନ ଶେଷ କରିଥିଲେ । ବାଗ୍ରବାଇ ହାଇସ୍କୁଲ୍‌ରେ ଛାତ୍ର ଅବସ୍ଥାରେ ସେ ବାଞ୍ଛାନିଧିଙ୍କ ସହିତ ପରିଚିତ ହେଲେ । ପରିବାରର ଦାରିଦ୍ର୍ୟ ହେତୁ ସେ ଅଷ୍ଟମ ଶ୍ରେଣୀରେ ପଢ଼ା ବନ୍ଦ କରି କବି ମଣ୍ଡଳ କୃଷ୍ଣ ପ୍ରସାଦ ବସୁଙ୍କ ନିର୍ଦ୍ଦେଶିତ ଓଡ଼ିଶାର ଶ୍ୟାମସୁନ୍ଦର ଥିଏଟର ପାର୍ଟିରେ ଯୋଗଦେଲେ । ସେଠାରେ ସେ ପାଞ୍ଚ ବର୍ଷ ପ୍ରାୟ ରହି ବିଭିନ୍ନ ବାଦ୍ୟଯନ୍ତ୍ର ବାଦନ ଓ ଅଭିନୟ କଳା ଆଦି ଶିକ୍ଷା କରିଥିଲେ ।

କଟକର ଅର୍ଟ ଥିଏଟର ରେ ୧୯୨୫ ମସିହାରେ ସଂଗୀତ ନିର୍ଦ୍ଦେଶକ ରୂପେ କାର୍ଯ୍ୟ କରିଥିଲେ । ଗ୍ରାମଫୋନ କମ୍ପାନୀ His Master Voice ତରଫରୁ କଲିକତାରେ ୧୯୩୦ ମସିହାରେ ତାଙ୍କର ସଂଗୀତ ପାଇଁ ତାଙ୍କୁ 'ନଟଗନ୍ଧର୍ବ' ଉପାଧି-ରେ ଭୂଷିତ କରିଥିଲେ ।

ସେ ୧୯୪୪ ମସିହାରେ କଲିକତା ଏବଂ ୧୯୪୭ରେ ଆକାଶବାଣୀ କଟକ କେନ୍ଦ୍ରରେ ଜଣେ ସଂଗୀତଜ୍ଞ ଥିଲେ ଏବଂ ୧୯୫୭ ପର୍ଯ୍ୟନ୍ତ ସେ ବିଭିନ୍ନ କାର୍ଯ୍ୟକ୍ରମରେ ବୋଲୁଥିଲେ । ସେ କବି ମଣ୍ଡଳ କୃଷ୍ଣ ପ୍ରସାଦ ବସୁ, ବାଞ୍ଛାନିଧି ମହାନ୍ତି ଏବଂ କବି ଗୋପାଳକୃଷ୍ଣଙ୍କ କେତୋଟି ଗୀତ ଗ୍ରାମଫୋନ ରେକର୍ଡରେ ବୋଲିଥିଲେ । ସେ କେନ୍ଦୁଝର, ଖଡେଇକଳା, ନୀଳଗିରି ଏବଂ ମୟୂରଭଞ୍ଜ ମହାରାଜାଙ୍କ ପାଖରୁ ପ୍ରଶଂସା ସୂଚକ ପ୍ରମାଣ ପତ୍ର ସଂଗୀତ ଓ ଅଭିନୟ ପାଇଁ ପାଇଥିଲେ । ଏହା ବ୍ୟତୀତ ପ୍ରାୟ ଡେଢ଼ଶହ ରୂପା ମେଡ଼ାଲ ଓ ୨୫ଟା ସୁନା ମେଡାଲ ମଧ୍ୟ ପାଇଥିଲେ । ବାଲେଶ୍ୱର ସ୍ଥିତ କଳାମନ୍ଦିର ଆନୁକୂଲ୍ୟରେ ତାଙ୍କୁ ମଧ୍ୟ ସମ୍ମାନିତ କରାଯାଇଥିଲା । ଶେଷ ବେଳକୁ ସେ କେତେକ ଗୀତ କବିତା ଓ ନାଟକ ମଧ୍ୟ ରଚନା କରିଯାଇଛନ୍ତି । ୧୯୮୨ରେ ତାଙ୍କର ମଇତାପୁର ସ୍ଥିତ ବାସଭବନରେ ସେ ଇହଧାମ ତ୍ୟାଗ ପରେ ତାଙ୍କ ଧର୍ମ ପତ୍ନୀ ଶ୍ରୀମତୀ ଉଷାମଣି ଦାସ ଘର ପୁଅ ଓ ନାତି ନାତୁଣୀ ମାନଙ୍କ ଗହଣରେ କାଳାତିପାତ କରୁଛନ୍ତି ।

ନାଟ୍ୟ ସଂସ୍ଥା ଗଢ଼ିବାରେ ବାଞ୍ଛାନିଧିଙ୍କର ମୂଳ ଲକ୍ଷ୍ୟଥିଲା-ସାଧାରଣ ଜନତା ମଧ୍ୟରେ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିବା । ଅଭିନୟ ମଞ୍ଚରେ ବାଞ୍ଛାନିଧିଙ୍କ ରଚିତ ଜାତୀୟ ସଂଗୀତ ଗାନ କରାଯାଉଥିଲା । ତାଙ୍କ ଅନୁପସ୍ଥିତିରେ ଅନ୍ୟ କେହି ତାଙ୍କ ରଚିତ ସଂଗୀତ ଗାନ କରୁଥିଲେ ।

ମଇତାପୁରରେ ଅଭିନୟ ଅଭ୍ୟାସ ଚାଲୁଥିବା ବେଳେ ବାଞ୍ଛାନିଧି ଭଦ୍ରକରୁ ଆସି ସପ୍ତାହରେ ଥରେ ଲେଖାଏଁ ଦେଖିଯାଆନ୍ତି ଓ ସମସ୍ତ ଅଭାବ ଅସୁବିଧା ଦୂରକରି

ହୋଇ ଆସନ୍ତି । ଏହିପରି ସାତ, ଆଠ ମାସ ଅଭିନୟ ଅଭ୍ୟାସ ଚାଲିବା ପରେ ରଂଗମଞ୍ଚରେ ଅଭିନୟ କରିବାର ଦକ୍ଷତା ଆସିଲା । ତେଣୁ ପ୍ରଥମେ ସେହି ମଇତା-ପୁରରେ ଅଭିନୟ ପ୍ରଦର୍ଶନ ହେଲା । ଏହି ଅଭିନୟରେ ବହୁ ଅଭିନେତା ଉଚ୍ଚ କୋଟିର ଅଭିନୟ ପ୍ରଦର୍ଶନ କରିଥିବାରୁ ବହୁ ପୁରସ୍କାର ଲାଭ କରିଥିଲେ । ତେଣୁ ବାହାରେ ଅଭିନୟ ପ୍ରଦର୍ଶନ କରିବାକୁ ପରିକଳ୍ପନା ଚାଲିଲା । ସ୍ଥିର ହେଲା-ପ୍ରଥମେ ନୀଳଗିରି ରାଜାଙ୍କ ଦରବାରରେ ଅଭିନୟ ପ୍ରଦର୍ଶନ କରାଯିବ ।

ତେଣୁ ନୀଳଗିରି ରାଜାଙ୍କ ସହିତ କଥାବାର୍ତ୍ତା ଏହି ପ୍ରସଂଗରେ କରିବା ପାଇଁ ବାଞ୍ଛାନିଧି, ମୌଳିକ ବାବୁ ଓ ଉଦିଆନ୍ନା ତିନି ଜଣ ନୀଳଗିରି ରାଜାଙ୍କ ଠାକୁ ସରସ୍ୱତୀ ପୂଜାର କିଛୁଦାନ ପୃଷ୍ଟ ଲେ । ଏଠାରେ ଉଦିଆନ୍ନା ବା ଉଦୟ ନାଥ ଦାଶଙ୍କ ସଂପର୍କରେ କିଞ୍ଚିତ ପରିଚୟ ଦେବା ଅସମୀଚୀନ ହେବନାହିଁ ।

ସେ ୧୮୯୮ ମସିହା (ଶ୍ରାବଣ ମାସ ୧୩ ଦିନ) ବାଲେଶ୍ୱର ଜିଲ୍ଲା ଭଦ୍ରକ ସବ୍‌ଡିଭିଜନ ଅନ୍ତର୍ଗତ ଭଣ୍ଡାରୀ ପୋଖରୀ ବ୍ଲକ୍‌ର ରୁଚିଡ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିତାଙ୍କ ନାମ ଶ୍ରୀ ନନ୍ଦ ଦାଶ । ସେ କଲିକତାରେ ପ୍ରଥମେ ଯାଦୁକର ଆବଦୁଲ ଖାଁଙ୍କ ପାଖରେ ସହକାରୀ କାର୍ଯ୍ୟ କରୁଥିଲେ । ପରେ ଘରକୁ ଫେରିବା ପରେ ମହେନ୍ଦ୍ର ଚକ୍ରବର୍ତ୍ତୀଙ୍କୁ ଗୁରୁ କରି ବେହେଲା, ହାରମୋନିୟମ ଓ ତବଲା ଆଦି ଶିକ୍ଷା କଲେ । ସେ କଟକର କାଳୀ ଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର ଓ ପୁରୀ କଳିଙ୍ଗ ଥିଏଟରରେ ମଧ୍ୟ ଅଭିନେତା ରୂପେ କାର୍ଯ୍ୟ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇ ସେ ଜେଲ୍ ବରଣ ମଧ୍ୟ କଲେ । ସେ ମଧ୍ୟ ଜଣେ ହାସ୍ୟାଭିନେତା ଥିଲେ । ତାଙ୍କ ନିର୍ମିତ ରେକର୍ଡ 'ବାହାଘର' 'କାବୁଲି', 'ସବାଖିଆ କେଳା' ଆଦି ହାସ୍ୟରସାତ୍ମକ ପରିବେଶ ସୃଷ୍ଟି କରିଥିଲା । ସେ ୧୯୫୯ ମସିହାରେ ମୃତ୍ୟୁବରଣ କରିଥିଲେ । (୩୪)

ଏହା ୧୯୩୩ ମସିହା ଡିସେମ୍ବର ମାସର କଥା । ସେଠାରେ ନୀଳଗିରି ରାଜାଙ୍କ ଦରବାରରେ ତିନିଘଣ୍ଟା କାଳ ସଂଗୀତ ଆସର ଚାଲିଲା । ରାଜା ଖୁବ୍ ପ୍ରୀତ ହୋଇଗଲେ ଏବଂ ନିଜେ ସେମାନଙ୍କର ରହିବା ଓ ଖାଇବାର ବନ୍ଦୋବସ୍ତ କରିଦେଲେ । ପରଦିନ ସକାଳେ ଏହି ତିନିଜଣଙ୍କୁ ଟଙ୍କା ଓ ପରିଧେୟ ଆଦି ଦେଇ ବିଦାୟ

---

(୩୪) ଶିଳ୍ପୀ ଉଦୟ ନାଥ — ଏକ ଅନାଲୋଚିତ ପ୍ରତିଭା — ଶ୍ରୀ ବିମ୍ବାଧର ମହାପାତ୍ର ଓଡ଼ିଆ ଯୁବ ଲେଖକ ସମ୍ମିଳନୀ ସ୍ମରଣିକା — ବିଶେଷ ଅଧିବେଶନ — ୧୯୮୧ — ଭଣ୍ଡାରୀ ପୋଖରୀ ।

ଦେଖି ବେଳେ ଏମାନଙ୍କ ଅଭିନୟ ପ୍ରଦର୍ଶନ କଥା କହିଲେ । ରାଜା ଏଥିରେ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଆଗାମୀ ସରସ୍ୱତୀ ପୂଜା ଉପଲକ୍ଷେ ଅଭିନୟ ପ୍ରଦର୍ଶନ କରିବାକୁ ଅନୁମତି ଦେଲେ ।

ନିର୍ଦ୍ଦିଷ୍ଟ ଦିବସରେ ନୀଳଗିରି ରାଜ ଦରବାରରେ ବାଞ୍ଛାନିଧିଙ୍କ ପରିକଳ୍ପିତ କୃଷ୍ଣଚନ୍ଦ୍ର ଥିଏଟର ପାର୍ଟି ପହଞ୍ଚିଲା । ଏହି ଅଭିନେତା ଦଳରେ ସେତେବେଳେ ବତିଶ ଜଣ ସଦସ୍ୟ ଥାଆନ୍ତି । ଗୋଟିଏ ଦିନ ଗୋଟିଏ ରାତି ପଥକ୍ଲାନ୍ତି ବିଶ୍ରାମ ପରେ ଅଭିନୟ ଆରମ୍ଭ ହେଲା । ସେଦିନ 'ଧ୍ରୁବ' ନାଟକଟି ଅଭିନୀତ ହେଲା । ଦିନେ ବିଶ୍ରାମ ପରେ ପୁଣି ଦ୍ୱିତୀୟ ଅଭିନୟ ଆରମ୍ଭ ହେଲା । ରାଜା ନିଜେ ବେଶ ଘରକୁ ଆସି ନିଜ ଇଚ୍ଛାନୁଯାୟୀ ଅଭିନେତା ମାନଙ୍କୁ ବେଶ ପିନ୍ଧାଇ ଦେଉଥିଲେ । ନୀଳଗିରି ରାଜାଙ୍କ ସିନ୍, ସ୍କ୍ରୀନ୍ ଆଦି ମଧ୍ୟ ଏମାନେ ବ୍ୟବହାର କଲେ । ରାଜା ରାଣୀହଂସପୁରରୁ କେତେକ ଅଳଂକାର ମଧ୍ୟ ବେଶ ହେବା ପାଇଁ ଆଣେଇ ଦେଇ ଦେଲେ । ନାଟକ ପ୍ରଦର୍ଶନର ପ୍ରାରମ୍ଭରେ ବାଞ୍ଛାନିଧି ସେତେବେଳକାର ରାଜନୈତିକ ପରିସ୍ଥିତି ଓ ଆନ୍ଦୋଳନର ରୂପରେଖ ଆଦି ବିଷୟରେ ବକ୍ତୃତା ଦେଉଥିଲେ । ପରେ ପରେ ତାଙ୍କ ରଚିତ ଜାତୀୟ ସଂଗୀତ ଗାନ କରାଯାଉଥିଲା ।

ରାଜା ଯେତେବେଳେ ଅଭିନୟ ଦର୍ଶନ କରୁଥିଲେ, ସେତେବେଳେ ତାଙ୍କ ଡାହାଣ ପାଖରେ ବାଞ୍ଛାନିଧି ଓ ବାମ ପାଖରେ ଗୌରାଙ୍ଗ ବସି ବିଷୟ ବସ୍ତୁ ଆଦି ବୁଝାଇ ଦିଅନ୍ତି । ଏହି ଦ୍ୱିତୀୟ ଅଭିନୟ ଖୁବ୍ ଚିତ୍ତାକର୍ଷକ ଓ ଲୋକପ୍ରିୟ ହୋଇ ପାରିଥିଲା । ତେଣୁ ତୃତୀୟ ଅଭିନୟ ଦର୍ଶନ କରିବା ପାଇଁ ରାଜା ଜିଦ୍ ଧରି ବସିଲେ । କିନ୍ତୁ ଏମାନେ ଆଉ ଅଧିକ ନାଟକ ଶିକ୍ଷା କରିନଥିଲେ । ତେଣୁ ରାଜା ଆଦେଶ ଦେଲେ । ଯେତେ ଦିନ ତୃତୀୟ ନାଟକ ଅଭିନୟ ଶିକ୍ଷା କରିବାକୁ ଲାଗିବ, ସେତେଦିନ ପର୍ଯ୍ୟନ୍ତ ଏଠାରେ ରହି ଶିକ୍ଷା କର ଏବଂ ଏଠାରେ ମଞ୍ଚସ୍ଥ କରି ଅନୁଷ୍ଠିତ ହିବ । ତାହା ମଧ୍ୟ ହେଲା । ରାଜା ଦୀର୍ଘ ଏକମାସ କାଳବ୍ୟାପି ଖାଦ୍ୟ ପେୟ ଦେଇ ସେମାନଙ୍କୁ ଗଡ ମଧ୍ୟରେ ରଖିଲେ । ତୃତୀୟ ନାଟକ ମଧ୍ୟ ଅଭିନୟ ସେଠାରେ ହେଲା । ରାଜା ପ୍ରତିଗୋଟି ଅଭିନୟ ପାଇଁ ଗୋଟିଏ ପ୍ରସ୍ଥ ଷ୍ଟେଜ୍-ପାଇଁ ଆବଶ୍ୟକୀୟ ସିନ୍ ସିନେରୀ ଆଦି ପ୍ରଦାନ କରିବା ସଙ୍ଗେ ସଙ୍ଗେ ଯଥେଷ୍ଟ ପାଥେୟ ମଧ୍ୟ ଦେଲେ । ସେ ମଧ୍ୟ ମୟୂରଭଞ୍ଜ ରାଜାଙ୍କ ପାଖକୁ ଏକ ସୁପାରିଶ କରିଦେଲେ ଏହି ନାଟ୍ୟଦଳକୁ ସ୍ୱଦରବାରରେ ଅଭିନୟ କରିବାକୁ । ବାଞ୍ଛାନିଧି ତେଣୁ ତାଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ —

"କିଶୋର ଚନ୍ଦ୍ର ନୃପତି ମଣ୍ଡନ
ଶ୍ୟାମ ନନ୍ଦନହେ ହରିଚନ୍ଦନ,

ଭଞ୍ଜ କୂଳେ ନୀଳ ମଞ୍ଜୁ କୁଞ୍ଜ ଗୋଟି
ଖଞ୍ଜିଛ ଧ୍ରୁବତାରା ଉଜ୍ଜ୍ୱଳ ଗଗନ ହେ ।
ନୀଳଗିରି ରହିଲେ ସୁନା ଶିଖର ମୂଳେ
ବରଦ୍ଵନ୍ଦ୍ୱର ବସି କର ଦରପ ଖେଳେ

\+ \+ \+

ରାମଚନ୍ଦ୍ର ଯେଉଁ ଦେଶର ଗରବ
ସେ ଦେଶେ ଜନ୍ମିଛ ପ୍ରଜାରଞ୍ଜନ ।
ସେ ପଥେ କର ଗମନ
କାଳକାଳକୁ ସୁନାମ କର ସ୍ଥାପନ
ସୁଖେ ପାଳିବ-ପରଜା ଏ ନିବେଦନ ।''

(୧୯୩୪/ଜାନୁଆରୀ/୨୪)

ସେଠାରୁ ଅଭିନୟ ଶେଷ କରି ବାଞ୍ଛାନିଧି ଓ ଗୌରାଙ୍ଗ ଚନ୍ଦ୍ର ମୟୂରଭଞ୍ଜ ରାଜାଙ୍କ ପାଖକୁ ଯାଇ ନୀଳଗିରି ରାଜାଙ୍କ ଚିଠି ଦେଖାଇଲେ ଓ ଅଭିନୟ ପ୍ରଦର୍ଶନ କରିବାକୁ ଅନୁମତି ମାଗିଲେ । ରାଜା ମଧ୍ୟ ଆନନ୍ଦରେ ସମ୍ମତ ହୋଇ ସମସ୍ତ ସୁବିଧା କରି ଦେଲେ ବାଞ୍ଛାନିଧିଙ୍କ ବକ୍ତୃତା ଓ ଜାତୀୟ ସଂଗୀତ ଗାନ ପରେ ଆରମ୍ଭ ହେଲା ଅଭିନୟ । ଦ୍ୱିତୀୟ ଦୃଶ୍ୟରେ ଗୀତ ସେ ଗାଇଲେ—

"କାହୁଁ ଅଇଲେ ବିଦେଶରୁ ବେପାରୀ,
ସବୁ ଯାଇଲେ ହେଲୁ ଆମେ ଭିକାରୀ । ୦ ।

ଇଂରାଜୀ-- ଇରାନୀ-- ଜର୍ମାନୀ-- ଜାପାନୀ,
ଚିନା କାବୁଲି ଏ ଦେଶ ସେ ପାରି । ୧ ।

ଚକଚକ ଗୁଇନା ମାଟିର ବାସନ,
ସାରଦେଲା ବୃତ୍ତି ଦେଶ କଂସାରି । ୨ ।

ଫରାସୀର ଫେନ୍‌ସି କାମ
ଜାପାନର ଶସ୍ତା ଦାମ
କଣ୍ଟେଲର ଦୁଇ ସେର ସୁଇଟ୍ ସେଣ୍ଟ୍ ପର୍‌ଫ୍ୟୁମେରି
କାଚ ଶଙ୍ଖା ମାରଦେଲା ଶଙ୍ଖାରୀ । ୩ ।

ନକଲ ଖଦର ଜାପାନୀ ଚଦର,
ଗାନ୍ଧି ଲୁଗାକୁ ହେଲା ଭଗାରି । ୪ ।"

ସେ ନାଟକ ପୋଲିସ୍ ବିଭାଗର ସର୍ବୋଚ୍ଚ କର୍ତ୍ତା ଏମ୍. ପି. ମହାଶୟ ଦର୍ଶନ କରୁଥିଲେ । ଏହି ଗୀତ ଶୁଣି ସେ ଉତ୍କ୍ଷିପ୍ତ ହୋଇ ଥିଏଟର ବନ୍ଦ୍ କରିବାକୁ ନିର୍ଦ୍ଦେଶ ଦେଇ ଷ୍ଟେଜ୍ ଉପରକୁ ଉଠିଆସିଲେ । ଏ ସବୁ ରାଜ ଦ୍ରୋହୀ କାର୍ଯ୍ୟବୋଲି ରକ୍ତାଭ ଚକ୍ଷୁ ଦେଖାଇ ଅଭିନୟ ବନ୍ଦ କରିବାକୁ ଆଦେଶ ଦେଲେ । ସେଦିନ ଅଭିନୟ ବନ୍ଦ ହେଲ ମଧ୍ୟ । ତା' ପରଦିନ ଏସ୍ ପି. ଏବଂ ବାଞ୍ଛାନିଧି ଦୁହିଁଙ୍କ ମଧ୍ୟରେ ରାଜୀ ନାମେ ସମାଧାନ କରିଦେଲେ ଓ ସେଦିନ ରାତିରେ ଅଭିନୟ ପ୍ରଦର୍ଶନ କରିବାକୁ କହିଲେ । ତାହା ମଧ୍ୟ ହେଲା । ଏହି ଅଭିନୟରେ ପ୍ରାୟ ପଚିଶ ଟଙ୍କାରୁ ଏକଶହ ଟଙ୍କା ପର୍ଯ୍ୟନ୍ତ ପୁରସ୍କାର ମିଳିଲା । ଚାରିଦିନ ଅଭିନୟ ପରେ ବାରିପଦାରୁ ଅଭିନୟ ଦଳ କରଞ୍ଜିଆ ଅଭିମୁଖେ ଚାଲିଲେ ।

ଦୋଳ ପୂର୍ଣ୍ଣିମା ଉପଲକ୍ଷେ ନାଟକ ଅଭିନୟ କରିବାକୁ ଅଭିନୟ ଦଳ ଏକ ବସ ରିଜର୍ଭ କରି ଚାଲିଲା କରଞ୍ଜିଆ ଅଭିମୁଖେ । କରଞ୍ଜିଆରେ ଅଭିନୟ କାର୍ଯ୍ୟ ଶେଷ କରି ଟାଟା ଯିବାକୁ ଲକ୍ଷ୍ୟ ରଖି ବାଦାମ ପାହାଡ ଷ୍ଟେସନ ଅଭିମୁଖେ ଚାଲିଲେ । ବାଦାମ ପାହାଡରେ ବଂଗାଳୀମାନଙ୍କର ଏକ କ୍ଲବ ଥାଏ । ସେଠାରେ ସଂଗୀତ ଆସର ପାଇଁ ଥିଏଟର ପାର୍ଟିକୁ ନିମନ୍ତ୍ରଣ ଆସିଲା । ତା ପରଦିନ ଟ୍ରେନ୍ ସମୟକୁ ଅନେକ ବିଳମ୍ବ ଥିଲା । ତେଣୁ ନିମନ୍ତ୍ରଣ ରକ୍ଷା କଲେ । ବଂଗାଳୀମାନଙ୍କ ମୁହଁରେ ସେହି ଗୋଟିଏ କଥା—"ଉଡ଼େର୍ ଆବାର୍ ଗାନ୍ କରେ କି ? କଡ଼ମଡ଼୍ ରାଜାଓ ନାଚେ, ରାଣୀ ଓ ନାଚେ—ଏହା ଯେଇ ଯାତ୍ରା ଦଳତ ? ଦେଖାଯାଉ !" ମାତ୍ର ସଂଗୀତ ଆସରରେ ସେହି ବଂଗୀୟ ଭଦ୍ରବ୍ୟକ୍ତି ମାନେ ଏମାନଙ୍କ ସଙ୍ଗୀତ ଦକ୍ଷତା ଦେଖି ଏପରି ମୁଗ୍ଧ ହୋଇଗଲେ ଯେ ତା' ପରଦିନ ଅଭିନୟ ପ୍ରଦର୍ଶନ ପାଇଁ ରାତା-ରାତ ଟଙ୍କା ଅଦାୟ କରିଦେଲେ । ତେଣୁ ସେଠାରେ ତା' ପରଦିନ ରାତିରେ ରାତିକ ପାଇଁ ଅଭିନୟ କରିବାକୁ ପଡ଼ିଲା ।

ଠିକ୍ ଅଭିନୟ ଶେଷ ବେଳକୁ ସୁଲେଇ ପାଟ ଲୁହା ଖଣିରୁ କେତେ ଜଣ ଭଦ୍ରବ୍ୟକ୍ତି ଆସି ସେଠାରେ ନାଟକାଭିନୟ କରିବାକୁ ଅନୁରୋଧ କଲେ । ସେଠାରୁ ଟ୍ରଲି ଯୋଗେ ସମସ୍ତ ଜିନିଷ ଓ ଅଭିନେତାମାନେ ସୁଲେଇପାଟ ଗଲେ । ସେଠାରେ ତିନି, ଚାରି ରାତି ଅଭିନୟ ଚାଲିଲା । ଏଠାରେ ପ୍ରଥମେ କାର୍ତ୍ତିକ କୁମାର ଘୋଷଙ୍କର 'ମାତୃପୂଜା' ନାଟକ ଅଭିନୟ ଆରମ୍ଭ ହେଲା । ବାଦାମ ପାହାଡର ଯେଉଁ ବଂଗୀୟ ଭଦ୍ରବ୍ୟକ୍ତି ମାନେ ବିଦ୍ରୂପ କରି ନାନାଦି କଥା କହିଥିଲେ, ସେମାନେ ଅନୁତାପ କରି ଏଠାକୁ ଆସି ଓଡ଼ିଆ-ମାନଙ୍କ ମଧ୍ୟରେ ପ୍ରକୃତରେ ବହୁ ଗୁଣୀ କଳାକାର ଥିବାର ଜାଣି କ୍ଷମା ପ୍ରାର୍ଥନା କଲେ । ବାଞ୍ଛାନିଧି ଓ ଗୌରାଙ୍ଗ ସେମାନଙ୍କୁ ଆଶ୍ୱାସନା ଦେଇ କହିଲେ—ଏହା ସେମାନଙ୍କର ଦୋଷ ନୁହେଁ । ସେମାନେ ଥିଏଟର ଅଭିନେତା ମାନଙ୍କୁ

ଆଦର ଯତ୍ନର ସହିତ ଗୋଟିଏ ରାତି ଭୋଜନରେ ଆପ୍ୟାୟିତ କଲେ ।

ସୁଟ୍‌କେଇପାଟରୁ ରାଇରଂଗପୁର ଯିବା ପାଇଁ ନିମନ୍ତ୍ରଣ ମିଳିଗଲା । ଏଠାରେ ମିଷ୍ଟର ନେହୁରଅଙ୍କ ନିମନ୍ତ୍ରଣ ଓ ଆଦର ଯତ୍ନ ଏକ ବିଶେଷ ଘଟଣା । ସେମାନେ ଟାଟାକୁ ବାହାରିଛନ୍ତି, ଏହି ସମୟରେ ଷ୍ଟେସନରେ ଗୋରୁ ମହିଷାଣୀରୁ ତିନି/ ଚାରିଜଣ ଭଦ୍ର ବ୍ୟକ୍ତି ନିମନ୍ତ୍ରଣ ପତ୍ରଧରି ପହଞ୍ଚିଲେ । ସେଠାରେ ତିନିରାତି ଅଭିନୟ ପାଇଁ ଅନୁରୋଧ କଲେ । ତେଣୁ ଟାଟା ନଯାଇ ଗୋରୁ ମହିଷାଣୀ ଟ୍ରେନ୍ ଧରିଲେ । ଗୋରୁ ମହିଷାଣୀ ଷ୍ଟେସନ୍‌କୁ ପ୍ରାୟ ପଚିଶ ଜଣ କୁଲି ଜିନିଷ ପତ୍ର ନେବା ପାଇଁ ଆସିଥାନ୍ତି । ମାତ୍ର ପନ୍ଦର ଜଣଙ୍କ ପାଇଁ ଏମାନଙ୍କ ଜିନିଷ ପତ୍ର ଯଥେଷ୍ଟ ।

ଏଠାରେ ବାଞ୍ଛାନିଧି ପ୍ରଥମେ ବକ୍ତୃତା ଦେଇ ବୋଲିଲେ—

"ଇଣ୍ଡିଆନ୍ ବୁରୋକ୍ରେସି ଓ ଇଣ୍ଡିଆନ୍ ମୋର ଜୁହାର
ଇଣ୍ଡିଆନ୍ କୁହେ ଆସି କି ଘନ ଗୁଣ ତାହାର । (ଧ୍ରୁବ)
ସିଭିଲ୍‌ଏନ୍ ଦେଶୀ ବୋଲି
କୁଣ୍ଟେ ଫୁଲିଯାଏ ମୋ ଛାତି
ବ୍ଲଡ୍, ଡେମ୍‌ଫୁଲ ବୋଲି ଓଲଟି ଗୋଇଠା ପ୍ରହାର । ୧ ।
ଆଇ ଏମ୍. ଏସ୍ ସିଭିଲ୍ ସର୍ଜନ କଲା ବୋଲି ଗଲେ ପାଖକୁ
ସାହେବୀ ଠାଣିରେ ବସି ହାକିମ୍ ମିଜାଜ୍ ନକଲେ ବାହାର । ୨ ।
ମୋ ଭାଇ ଆଇ. ପି. ଏସ୍
ଦୁଃଖ ମୋର ନହେଲା ଶେଷ୍
ଉଚ୍ଚାଧିକାରି ମଡର କେସ୍‌ରେ ନାହିଁ ତାର ତଳେ କେସ୍ଥାର । ୩ ।
ଆଇ. ଏ. ଏସ୍, ପ୍ରଫେସର୍
ବଡ଼ ବଡ଼ ଦରମା ବାଲା
ଘଣ୍ଟା ଦୁଇ ପଢେଇ ଦେଇ ଦିନ ଯାକ ତାସ୍-ପାଲା । ୪ ।
ଇଣ୍ଡିଆନ୍ ମିଲେଟାରି ହେଲେ ମୋ ଦେଶ-ଭାଇ ସ୍ୱାଧୀନ ହେବେ
ଦ୍ୱିକଶିରେ ହୁକୁମ ଚାକର ଭାଇଙ୍କୁ କରିବେ ଗୁଳି ଫାୟାର । ୫ ।
ଇଣ୍ଡିଆନ୍ ଗଭର୍ଣ୍ଣର
କେ. ସି. ଏସ୍. ଆଇ କେଟି ସାର୍
କଡ଼ା କଡ଼ା ଆଇନ ଲାଗି କାଳି, କାଗଜ, କଲମ ତୟାର । ୬ ।

ଦର୍ଶକ ଗ୍ୟାଲେରୀରୁ ବାରମ୍ବାର ପୁଣି ଥରେ ଏହି ଗୀତ ଶୁଣିବାକୁ ଅନୁରୋଧ

ଆସିଲା । ଏଠାରେ ସଫଳତାର ସହିତ ତିନ ରାତ୍ର ଅଭିନୟ ଚାଲିଲା । ଏହାପରେ ଟାଟା ଯାତ୍ରା ।

ଟାଟାରେ ଅସୁବିଧା ହେତୁ ଗୋଟିଏ ସିନ୍ ପକାଇ ଅପେରା ଢଙ୍ଗରେ ନାଟକାଭିନୟ କଲେ । ବାଞ୍ଛାନିଧି ପ୍ରଥମେ ଓଡ଼ିଆ ଓ ପରେ ଅନ୍ୟ ଭାଷା-ଭାଷୀଙ୍କ ପାଇଁ ଇଂରାଜୀରେ ବକ୍ତୃତା ଦେଲେ । ଅଭିନୟ ପାଇଁ ଅଭିନେତା ମାନେ ବହୁ ପୁରସ୍କାର ଲାଭ କରିଥିଲେ । ଏପରିକି ପୁରସ୍କାର ଦେବା ପାଇଁ ବେଶଧର ପର୍ଯ୍ୟନ୍ତ ବହୁ ଦର୍ଶକ ଉଠି ଆସିଥିଲେ । ଏଠାରେ ଏକ ମାସ ଅଭିନୟ ଚାଲିଲା । ବିଭିନ୍ନ ବଜାରରେ ବୁଲି ଏମାନେ ଅଭିନୟ ପ୍ରଦର୍ଶନ କରୁଥାନ୍ତି । ଏକ ଶହରୁ ଦେଡ଼ଶହ ପର୍ଯ୍ୟନ୍ତ ଏମାନେ କଣ୍ଟ୍ରାକ୍ଟ କରି ଅଭିନୟ ପ୍ରଦର୍ଶନ କଲେ ।

ଅଭିନେତା ମାନେ ଘର ଛାଡ଼ିବାର ପାଞ୍ଚମାସ ହୋଇ ଯାଇଥିଲା । ତେଣୁ ସମସ୍ତେ ଘରକୁ ଆସିବାକୁ ବ୍ୟାକୁଳ ହୋଇ ପଡ଼ିଲେ । ସେମାନେ ଖଡ଼୍‌ଗପୁର ଆସିଲେ ଏବଂ ଖଡ଼୍‌ଗପୁରରୁ ଭଦ୍ରକ ଆସିବେ । ମାତ୍ର ଠିକ୍ ଖଡ଼ଗ୍ ପୁର ରେଳ ଷ୍ଟେସନରେ ଘାଟଶୀଲା ଷ୍ଟେସନ ମାଷ୍ଟରଙ୍କ ଫୋନ ପାଇଲେ ବାଞ୍ଛାନିଧି । ଏହି ଫୋନ୍‌ରେ ସେ ଅନୁରୋଧ କଲେ ଘାଟଶୀଲା ଆସି ଅଭିନୟ କରିବାକୁ । ଷ୍ଟେସନ୍ ମାଷ୍ଟର ମଧ୍ୟ ସେଥିପାଇଁ ଲୋକ ପଠାଇଥିଲେ ଏମାନଙ୍କୁ ଘାଟଶୀଲା ନେଇ ଯିବାକୁ । ତେଣୁ ବାଞ୍ଛାନିଧି ଏପରି ନିମନ୍ତ୍ରଣକୁ ଉପେକ୍ଷା କରି ପାରିଲେ ନାହିଁ ।

ଏହି ଘାଟଶୀଲାରେ ଜନୈକ ବଂଗୀୟ ଭଦ୍ରବ୍ୟକ୍ତି "କାହୁଁ ଅଇଲେ ବିଦେଶରୁ ବେପାରୀ' ଗୀତଟିକୁ ବଂଗଳା ଅକ୍ଷରରେ ଲେଖି ରଖିଥିବାର ଦେଖିଲେ । ତାଙ୍କ ନିମନ୍ତ୍ରଣ କ୍ରମେ ଅଗତ୍ୟା ବାଧ୍ୟ ହୋଇ ବାଞ୍ଛାନିଧି ଗୌରାଙ୍ଗ ଓ ଭଦ୍ରଆନନ୍ଦ ଆସରରେ ଯୋଗଦାନ କରିଥିଲେ । ବାଞ୍ଛାନିଧି ପ୍ରାରମ୍ଭିକ ଭାଷଣ ଦେଇ ସେହି ବଂଗୀୟ ଭଦ୍ରବ୍ୟକ୍ତିଙ୍କ ଆଗରେ ତାଙ୍କର ବହୁଦିନର ଆକାଂକ୍ଷିତ ସଂଗୀତଟି ଗାନ କଲେ । ଏହି ଗାନରେ ବଂଗୀୟ ଭଦ୍ରଲୋକ ଜଣକେ ଭେ ଭେ କରି କାନ୍ଦି ଉଠିଲେ । ସେ କାନ୍ଦି କାନ୍ଦି କହୁଥାନ୍ତି—"ଆର ମିଶାୟ, ଆମାର ଧୈର୍ଯ୍ୟ ଥାକ୍ ଛେନା । ଆପନି ଦୀର୍ଘଜୀବୀ ହୋନ୍ ।" କହି ସଙ୍ଗେ ସଙ୍ଗେ ବାହାରିଗଲେ । ସେ ଏଥିପୂର୍ବରୁ ସଂଗୀତଟି ପାଠ କରିଥିଲେ ଓ ଶ୍ରବଣ କରିଥିଲେ, କିନ୍ତୁ ନିଜେ ରଚୟିତାଙ୍କ ମୁହଁରୁ ଶୁଣିନଥିଲେ । ଘାଟଶୀଲାରେ ଦୁଇ ଦିନ ଅଭିନୟ ଚାଲିଲା । ସେଠାରୁ ଫେରି ମୂଷାବଣିରେ ତିନରାତ୍ର ଅଭିନୟ ହେଲା ଓ ସେଠାରୁ ଖଡ଼ଗ୍‌ପୁର ନାଟକ ଦଳ ଯାତ୍ରା ଆରମ୍ଭକଲା ।

ଖଡ଼ଗ୍‌ପୁର ଷ୍ଟେସନରେ ଉତ୍କଳ ଇ ପୁରୀ ପାସେଞ୍ଜରକୁ ଅପେକ୍ଷା କରୁଥିବା ବେଳେ ବାଞ୍ଛାନିଧିଙ୍କ ପରିଚିତ ବନ୍ଧୁମାନେ ତାଙ୍କୁ ଡାକି ନେଇ ସେଠାରେ ଦିନେ

ଅଭିନୟ ପାଇଁ ବହୁ ଅନୁରୋଧ କଲେ । ତେଣୁ ଗୋଟିଏ ଦମ୍ପା ଘରକୁ ଥିଏଟର ପାର୍ଟିର ସମସ୍ତ ଗଲେ । ପରଦିନ ଖଡ଼ଗପୁରର ଗୋଲବଜାରରେ ଗୋଟିଏ ରାତି ଅଭିନୟ ହେଲା । ପରେ ପରେ ସେଠାରେ ଆଉ ଦୁଇରାତି ମଧ୍ୟ ଅଭିନୟ ଚାଲିଲା । ତା ପରଦିନ ସକାଳୁ ଟ୍ରେନ୍‌ରେ ଆସି ମାର୍କୋଣା ଷ୍ଟେସନ୍‌ରେ ହହେଲ୍‌ଇ ମଇତାପୁରକୁ ସମସ୍ତେ ଗଲେ । ଏଠାର ପ୍ରାୟ ପନ୍ଦରଦିନ ପରେ ପୁଣି ଟେମ୍ପି ବାହାରିବାର ସ୍ଥିର ହେଲା । ଏହି ସମୟରେ ବାଞ୍ଛାନିଧି ଓକିଲାତିର ଦ୍ୱିତୀୟ ଭାଗ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାନ୍ତି ।

ଝୁଲଣ ପୂର୍ଣ୍ଣିମା ପୂର୍ବରୁ କଣ୍ଟାପାଳରୁ ଚାରିରାତି ଅଭିନୟ ପାଇଁ ନିମନ୍ତ୍ରଣ ଆସିଲା । ଦୂର ପିଲାମାନଙ୍କୁ ତେଣୁ ବାଦ୍ ଦେଇ ନିକଟ ପିଲାମାନଙ୍କୁ ନେଇ ବାଞ୍ଛାନିଧି ଓ ଗୌରାଙ୍ଗ ଚାଲିଲେ କଣ୍ଟାପାଳ ! ଏମାନେ ବର୍ଷାରେ ଯାଇ କଣ୍ଟାପାଳର ଜଗନ୍ନାଥ ବାବୁଙ୍କ ବଂଗଳାରେ ପହଞ୍ଚିଲେ । ଘୋର ବର୍ଷା ମଧ୍ୟରେ ସେଠାରେ ଚାରିଦିନ ଅଭିନୟ କରି ସମସ୍ତେ ଭଦ୍ରକ ଫେରିଲେ । ତା' ପରେ ପରେ ଭଦ୍ରକ ନିକଟସ୍ଥ ବାଉଦପୁରରେ ଅଭିନୟ ହେଲା । କାଳୀପୂଜା ଉପଲକ୍ଷେ ଭଦ୍ରକ ଷ୍ଟେସନର ଟ୍ରାଫିକ୍‌ରେ ତିନିରାତି ଅଭିନୟ ଚାଲିଲା । ସ୍ଲିପର ଦିଆଯାଇ ଅଭିନୟ ମଞ୍ଚ ଦୁଇ ତିନି ଫୁଟ ଉଚ୍ଚ କରି ଦିଆଗଲା । ପଛରେ ଖଣ୍ଡେ ସିନ୍ ପଡ଼ିଥାଏ । ଠିକ୍ ତା' ପଛରେ ଯନ୍ତ୍ରପାତି ରଖି ବଜାଇବା ପାଇଁ ସ୍ଥାନ ଓ ବେଶ-ଘର । ପ୍ରଥମ ଦିନ 'ମାତୃପୂଜା' ନାଟକଟି ଉଚ୍ଚ ପ୍ରଶଂସାର ସହିତ ଅଭିନୀତ ହେଲା । ପ୍ରଥମ ଦିନର ଅଭିନୟ ପରେ ଷ୍ଟେସନ ମାଷ୍ଟର ଓ କର୍ମଚାରୀ ମାନେ ବାଞ୍ଛାନିଧି ଓ ଗୌରାଙ୍ଗବାବୁଙ୍କୁ ଆଲିଙ୍ଗନ କରି ପକାଇ ପ୍ରଶଂସା କଲେ । ଏହା ୧୯୩୨-୩୩ ମସିହାର କଥା । ପରବର୍ଷ ପାଇଁ ଏଠାରୁ ନିମନ୍ତ୍ରଣ ମିଳିଗଲା ।

କେନ୍ଦୁଝର ରାଜାଙ୍କର ପତ୍ର ପାଇ ଅଭିନୟ କରିବାକୁ ଥିଏଟର ପାର୍ଟି ଭଦ୍ରକ ଷ୍ଟେସନ୍‌ରେ ଟ୍ରେନ ଧରିଲେ । ଯାଜପୁର ରୋଡରେ ରାଜାଙ୍କର ଡାକବଂଗଳାରେ ରାତିରେ ରହି ପରଦିନ ସକାଳୁ ଜଣକପ ପତ୍ର ଟ୍ରକ୍ ଯୋଗେ ଓ ଅଭିନେତା ମାନେ ବସ୍ ଯୋଗେ କେନ୍ଦୁଝର ଅଭିମୁଖେ ଗଲେ । ରାଜାଙ୍କ ନିଜ କାର୍‌ରେ ବାଞ୍ଛାନିଧି, ଗୌରାଙ୍ଗ ଓ ଆଉ ଦୁଇଜଣ ଯାତ୍ରା କଲେ କେନ୍ଦୁଝର । ପ୍ରାୟ ଦିନ ବାରଟା ବେଳେ କେନ୍ଦୁଝରରେ ପହଞ୍ଚିଲେ । ପୂର୍ବରୁ ବନ୍ଦୋବସ୍ତ ହୋଇଥିବା ବସାଘରେ ଏମାନେ ବିଶ୍ରାମ ନେଲେ । ଏଠାରେ ତିନି ଚାରି ରାତି ଅଭିନୟ ଚାଲିଲା । ବାଞ୍ଛାନିଧି କେନ୍ଦୁଝର ରାଜାଙ୍କ ଉଦ୍ଦେଶ୍ୟରେ ଗାଉଥିଲେ—

"ଜୟ ବଳଦେବ ଦେବତା ଉତ୍ତମ
କେନ୍ଦୁଝର ନୃପତିଇଶ୍ୱ ନମୋ ନମ,

ନୀଳାଚଳ ତେଜି ଶୈଳ ମୂଳେ ମଞ୍ଚ

ରଜାରୁ ଏପୁଣି ପୁଣି ଧାମ ସମ ॥" (୧୯୭୫/ମେ'/୨୧)

ପୁଣି ସହରର ପ୍ରତିଷ୍ଠିତ ଭଦ୍ରବ୍ୟକ୍ତି ମାନଙ୍କ ନିମନ୍ତ୍ରଣ କ୍ରମେ ପନ୍ଦର/ଷୋହଳ ରାତି ନାଟକାଭିନୟ ଚାଲିଲା । ତା'ପରେ ଚମ୍ପୁଆ ଅଭିମୁଖେ ଥିଏଟର ପାର୍ଟି ଚାଲିଲା । କେନ୍ଦୁଝର ରାଜା ଯାତାର ସମସ୍ତ ବନ୍ଦୋବସ୍ତ କରିଦେଲେ । ଏହି ଚମ୍ପୁଆରେ ଆଠ/ଦଶ ରାତି ନାଟକ ଅଭିନୟ ଚାଲିଲା ।

ରାଇବସା ଅଭିମୁଖେ ଥିଏଟର ପାର୍ଟି ଚାଲିଲା । ରାଇବସାର ବିଶିଷ୍ଟ ଲୋକେ ରହିବାର ବନ୍ଦୋବସ୍ତ କଲେ । ମାତ୍ର ସେମାନେ ଟିକେଟ୍ ବିକ୍ରି ହେବ ବୋଲି ଭରସା ଦେଇ ପାରିଲେ ନାହିଁ । କାରଣ, ସେଠାରେ ଓଡ଼ିଆଙ୍କ ସଂଖ୍ୟା ଖୁବ୍ କମ୍ । ତେଣୁ ଦୁଇରାତି ପାଇଁ ତିନିଶହ ଟଙ୍କା ଦେଇ ସାଧାରଣରେ ଅଭିନୟ ପ୍ରଦର୍ଶନ କରିବାକୁ ସେମାନେ ପରାମର୍ଶ ଦେଲେ । ଏଥିରେ ବାଞ୍ଛାନିଧି ଅସମ୍ମତ ହେବାର କାରଣ ନଥିଲା । ପରଦିନ ରାତି ଆଠଟା ବେଳେ ଅଭିନୟ ସମୟ ଉପସ୍ଥିତ ହେବାରୁ ଷ୍ଟେସନ ବାଲା ଓ ବଜାରବାଲାଙ୍କ ମଧ୍ୟରେ କେଉଁଠି ଅଭିନୟ ହେବ—ଏହାକୁ ନେଇ ଗୋଳମାଳ ସୃଷ୍ଟି ହେଲା । ପରିଶେଷରେ ଷ୍ଟେସନ ଓ ବଜାରର ମଧ୍ୟବର୍ତ୍ତୀ ଏକ ସ୍ଥାନରେ ନାଟକ ମଞ୍ଚସ୍ଥ ହେଲା ।

ଫଟେଇକଳା ଅଭିମୁଖେ ଥିଏଟର ପାର୍ଟି ଚାଲିଲା । ସେଠାରେ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ମହାଶୟଙ୍କ ଓଡ଼ିଆ ସ୍କୁଲର ଦୁଇଟି କୋଠରି ଦେଲେ ରହିବାକୁ । ଏଠାରେ ପ୍ରଶଂସାର ସହିତ ସାତ ରାତି ନାଟକ ମଞ୍ଚସ୍ଥ ହୋଇଥିଲା । ଆଚାର୍ଯ୍ୟ ମହାଶୟଙ୍କ ପୁତ୍ରମାନଙ୍କ ବନ୍ଧୁତା ଅଭିନେତା ମାନଙ୍କୁ ମୁଗ୍ଧ କରିଦେଇଥିଲା । ଅଭିନୟ ଶେଷରେ ଶଗଡ଼ ଯୋଗେ ଷ୍ଟେସନ ଆସି ସେଠାରୁ ଖଡଗପୁର ଗଲେ ।

ଖଡଗପୁରରେ ପହଞ୍ଚିଲା ପରେ ସେଠାକାର ଗୋଲବଜାରରେ ଦୁଇ/ତିନିରାତି ନାଟକ ମଞ୍ଚସ୍ଥ ହେଲା । ତା'ପରେ ଟେଙ୍ଗାଇଲ୍ ଷ୍ଟେସନ ମାଷ୍ଟର ଥିଏଟର ପାର୍ଟିକୁ ନିମନ୍ତ୍ରଣ କଲେ । ବହୁ ବଙ୍ଗୀୟ ବ୍ୟକ୍ତିଙ୍କ ସାହାଯ୍ୟ, ସହାନୁଭୂତି ମଧ୍ୟରେ ସେଠାରେ ନାଟକ ମଞ୍ଚସ୍ଥ ଚାଲିଲା, ଏବଂ ସମସ୍ତେ ପରାମର୍ଶ ଦେଲେ କଲିକତା ଯିବାକୁ । ସେହି ପରାମର୍ଶ କ୍ରମେ ଥିଏଟର ପାର୍ଟି ଚାଲିଲା କଲିକତା ଅଭିମୁଖେ ।

### ଉତ୍କଳ ନାଟ୍ୟନିକେତନ

କଲିକତା ସ୍ଥିତ ବୈଠକଖାନା ବଜାରରେ ଖୋଲିଥିବା ଗୋଟିଏ ସ୍ଥାନ ଅଭିନୟ ପାଇଁ ନିର୍ଦ୍ଦିଷ୍ଟ କରାଗଲା । ବହୁ ଦର୍ଶକଙ୍କ ଜନସମାଗମ ମଧ୍ୟରେ ନାଟ୍ୟାଭିନୟ ଚାଲିଲା ।

ପରେ ପରେ ଏହି ଥିଏଟର ପାର୍ଟିର ଅଭୂତପୂର୍ବ ଉନ୍ନତି ସାଧନ ଘଟିଲା । ପ୍ରଥମ ଦିନର ଅଭିନୟ ପରେ ନିଶାକର ପଣ୍ଡା ନାମକ ଏକ ବ୍ୟକ୍ତି ବାଞ୍ଛାନିଧିଙ୍କୁ ଦେଖାକଲେ । ଏହି ପଣ୍ଡାଙ୍କ ଘର ବାଞ୍ଛାନିଧିଙ୍କ ଜନ୍ମପୀଠ ଈରମ ଗ୍ରାମରେ । ସେ ଥିଲେ ଜଣେ ଜମି ଦଲାଲ । ତେଣୁ ସେ ଥିଲେ ଲକ୍ଷପତି । ନିଶାକର ପଣ୍ଡା ସାକ୍ଷାତ କରି ବାଞ୍ଛାନିଧି ବାବୁଙ୍କୁ କହିଲେ ଯେ ବାହ୍ୟାଡ଼ମ୍ବର, ପୋଷାକ, ସିନ୍ ଆଦି ଚିତ୍ତାକର୍ଷକ ରୂପେ ନକଲେ କଲିକତାର ମିନର୍ଭା, ମନମୋହନ, ଷ୍ଟାର୍, କୋରିଏନ୍ ଆଦି ଥିଏଟର ପାର୍ଟି ସହିତ ସମତାଳରେ ଗତି କରିପାରିବ ନାହିଁ । ସୁତରାଂ, ଏହାର ନବକଳେବର ଦରକାର । ପ୍ରସ୍ତାବ ହେଲା ଯେ ସବୁକିଛି ନୂଆ ତିଆରି କରିବାକୁ ହେଲେ ଅନ୍ୟୂନ ପାଞ୍ଚ ହଜାର ଟଙ୍କା ଆବଶ୍ୟକ । କଥା ସ୍ଥିର ହେଲା ଯେ- ନିଶାକର ପଣ୍ଡା ପାଞ୍ଚ ହଜାର ଟଙ୍କା ଦେବେ । କିନ୍ତୁ ସେ ଗୋଟିଏ ସର୍ତ୍ତ ରଖିଲେ । ତାହା ହେଲା- ଥିଏଟର ପାର୍ଟିର ନାମ 'କୃଷ୍ଣ ଚନ୍ଦ୍ର ଥିଏଟର ପାର୍ଟି' ନରଖି 'ଉତ୍କଳ ନାଟ୍ୟ ନିକେତନ' ରଖାଯିବ । ସେଥିରେ ଓଡ଼ିଶାର ନାମ ରହିବ । ସମସ୍ତେ ଓଡ଼ିଶାର ଥିଏଟର ପାର୍ଟି ବୋଲି ଜାଣିବେ । ଦ୍ୱିତୀୟତଃ ଅଭିନେତା/ଅଭିନେତ୍ରୀ ଆଣି ନୂଆ ରଖିବାକୁ ହେବ । ଅଭିନେତ୍ରୀ ରଖିଲେ ନାନାଦି ଅସୁବିଧା ହେତୁ ସେ ପ୍ରସ୍ତାବ ପରିତ୍ୟାଗ କରାଗଲା ।

କଥା ହେଲା-ନିଶାକର ପଣ୍ଡା ପ୍ରତି ରାତି ଦେଢ଼ଶହ ଟଙ୍କା ଥିଏଟର ପାର୍ଟିକୁ ଦେବେ । ବଳକା ପଇସା ତାଙ୍କର ନିଜର । ଏଥିରେ ବାଞ୍ଛାନିଧି ଆଦି ସମସ୍ତେ ସମ୍ମତ ହେଲେ । ପରିଣାମରେ ଏହା ନୂତନ କଳେବର ଧାରଣ କଲା । ରାମଚନ୍ଦ୍ର ମାଣିଆଁ, କାର୍ତ୍ତିକ କୁମାର ଘୋଷ, କାଶୀନାଥ ସାହୁ ଆଦି ବହୁ ପ୍ରତିଷ୍ଠିତ ଅଭିନେତା ଆସି ଏଥିରେ ଯୋଗ ଦେଲେ ।

କଲିକତାର ବୈଠକଖାନା ବଜାରରେ ତିନି/ଚାରିମାସ ଧରି ଅତି ଉଚ୍ଚ କୋଟିର ଅଭିନୟ ପ୍ରଦର୍ଶନ କରି ବହୁ ଲାଭବାନ ହେଲେ । ଚତୁର୍ଦ୍ଦିଗରେ ଏହି 'ଉତ୍କଳ ନାଟ୍ୟ ନିକେତନ' ର ନାମ ବ୍ୟାପିଗଲା । ଏହାର ପରିଚାଳନା କାର୍ଯ୍ୟାଳୟ ଥାଏ—22 . Fordyce Lane-Calcutta ରେ ।

ପ୍ରୋପ୍ରାଇଟର ଶ୍ରୀ ନିଶାକର ପଣ୍ଡାଙ୍କ ପରାମର୍ଶ କ୍ରମେ ଥିଏଟର-ପାର୍ଟି ଟିଟାଗଡ ଗଲା । ସେଠାରେ ଅଭିନେତା ଦଳ ରାଣୀ ରସମଣିଙ୍କ ବଗିଚା ଘରେ ରହିଲେ । ଏଠାରେ ପ୍ରାୟ ପନ୍ଦର କୋଡ଼ିଏ ରାତି ଅଭିନୟ ଚାଲିଥିଲା । ତା' ପରେ ପାର୍ଟି ଗଲା- ଚାପଦାନୀକୁ । ଏଠାରେ ଅଭିନୟ ବେଳେ ପ୍ରତ୍ୟହ ସନ୍ଧ୍ୟାରେ ବର୍ଷା ହେବାରୁ ଥିଏଟର ପାର୍ଟିର ଆର୍ଥିକ ମାନଦଣ୍ଡ ଭାଙ୍ଗି ପଡ଼ିଲା । ପ୍ରାୟ ପନ୍ଦର ଦିନ ସମସ୍ତେ ବସି ବସି ଖାଇଲେ । କେତେକ ପୋଷାକ ପତ୍ର ବନ୍ଧା ଦେଇ ବଜାରରେ ଧାର ପରିଶୋଧ କରି ଘରକୁ ସମସ୍ତେ ପଳାଇ ଆସିଲେ ।

## ଦି ନିଉ ଓଡ଼ିଶା ଥିଏଟର

ଏହି ସମୟରେ ବାଞ୍ଛାନିଧି 'ଲ' ପରୀକ୍ଷାର ତୃତୀୟ ଭାଗ ପରୀକ୍ଷା ଦେଲେ । ପରେ ପରେ ପୁଣି ନୂତନ ପର୍ବ ଆରମ୍ଭ ହେଲା—ଭଦ୍ରକ ଚରମ୍ପା ପାଖ ଅସୁରା ମଠରେ । ଅସୁରା ମଠ ମହନ୍ତଙ୍କ ଗୁମାସ୍ତା ଭଗବାନ ମହାନ୍ତି ଏଥିରେ ମୁଖ୍ୟ ଅଂଶ ଗ୍ରହଣ କଲେ । ଭଗବାନ ବାବୁ ମଠ ଘର ଗ୍ରାଣ୍ଟ ଦେଲେ ଅଭିନୟ ଅଭ୍ୟାସ କରିବା ପାଇଁ ପୁଣି ଅଭିନେତା ମାନଙ୍କୁ ଏଠାରେ ଏକାଠି କରାଗଲା । କଟକର 'ଆର୍ଟିସ୍ ଥିଏଟର' ଏହା ପୂର୍ବରୁ ଠିକ୍ ଭାଙ୍ଗି ଯାଇଥାଏ । ତେଣୁ ସେଠାରୁ ଅଶ୍ୱିନୀ କୁମାର ଘୋଷଙ୍କ ସାନ ଭାଇ ଅଜୟ ବାବୁଙ୍କ ମାର୍ଫତ୍‌ରେ ଯେଉଁ ସିନ୍ ସିନେରୀ ଆଦି ଥିଲା, ତାକୁ ନାମକୁ ମାତ୍ର ମୂଲ୍ୟ ଦେଇ ଗୌରାଙ୍ଗ ବାବୁ ଅସୁରା ମଠକୁ ଆଣିଲେ । ଭଦ୍ରକର କାଳୀପୂଜା ଓ ଗଡ଼ ପୁରର ଦୁର୍ଗା ପୂଜାରେ ନାଟକ ମଞ୍ଚସ୍ଥ ପାଇଁ ନିମନ୍ତ୍ରଣ ଆସିଗଲା । ଏହି ନବ ଗଠିତ ଥିଏଟର ପାର୍ଟିର ନାମ ହେଲା – The New Orissa Theatres । ଏହି ପାର୍ଟିରେ ସେତେବେଳେ ଯେଉଁ ମାନେ ଅଭିନୟ କରୁଥିଲେ ସେମାନେ ହେଲେ—ଅସୁରାର ଲକ୍ଷ୍ମୀଧର ଦାସ, ଉପେନ୍ଦ୍ର ସାହୁ, ଫକୀର ନାୟକ, ଜଗବନ୍ଧୁ କର, ଯଦୁ ଚରଣ ରାଉତ, ଦାଶରଥି ମହାନ୍ତି, କୁରୁଡ଼ାଁର ବିନୋଦ ମହାନ୍ତି, ପାଳିଆବନ୍ଧାର ହରିହର ମଲିକ, ଅଣ୍ଡାରାଇରୁ କମଳଲୋଚନ ମହାନ୍ତି, ମଇତାପୁରରୁ ଗୋବିନ୍ଦ ମିଶ୍ର, ଶ୍ରୀଧର ମିଶ୍ର, ନଗାଁ (କଟକ)ରୁ ରାମ ଚରଣ ଦାସ, ଭରତ ବାରିକ, ବାବାଜୀ ଚରଣ ନାୟକ, ଭଦ୍ରକ ଜଗନ୍ନାଥ ପୁରରୁ କାଶୀନାଥ ମହାନ୍ତି, ଭଣ୍ଡାରୀପୋଖରୀର ଉଦୟ ନାଥ ଦାଶ (ଉଦିଆନ୍ନା) ପ୍ରଭୃତି ।

ତା'ପରେ ଥିଏଟର ପାର୍ଟି କେନ୍ଦୁଝର ଯାତ୍ରା ଆରମ୍ଭ କଲା । ରାଜାଙ୍କ ସୁବିଧାରେ ପଦ୍ମଚନ୍ଦନ ସେଠାରେ ନାଟକ ମଞ୍ଚସ୍ଥ ହେଲା । ତା' ପରେ ଆଠମଲ୍ଲିକ ରାଜାଙ୍କ ଅନୁରୋଧ କ୍ରମେ ସେଠାରେ ଅଭିନୟ ଚାରି ରାତି କଲେ । ଆଠମଲ୍ଲିକ ରାଜା କଲିକତାରେ ଏମାନଙ୍କ ଅଭିନୟ ଦେଖିଥିଲେ । ତେଣୁ ନିଜ ଗଡ଼ ମଧ୍ୟରେ ନାଟକ ମଞ୍ଚସ୍ଥ କରିବାକୁ ମନ ବଳାଇଥିଲେ, ଏବଂ ସମସ୍ତ ସୁବିଧା କରି ଦେବାକୁ ଦେବାନଙ୍କୁ ଆଦେଶ ଦେଇଥିଲେ ।

ଏହାପରେ 'ଓଲସି'ରେ ଥିଏଟର ପାର୍ଟି ତିନି ଚାରି ରାତି ଅଭିନୟ ପ୍ରଦର୍ଶନ କଲା । ଏଠାରେ ଦାଶରଥି ପଟ୍ଟନାୟକ ସମସ୍ତ ବନ୍ଦୋବସ୍ତ କରିଥିଲେ । ଖୋର୍ଦ୍ଧାରେ ଦଶ ପନ୍ଦର ଦିନ ନାଟକ ମଞ୍ଚସ୍ଥ ହେଲା । ପୁଣି ଖୋର୍ଦ୍ଧାରୁ କଟକ ଆସିଲେ । ଚନ୍ଦନ ଯାତ୍ରା ଉପଲକ୍ଷେ ମଣି ସାହୁ ଛକରେ ନାଟକ ଅଭିନୟ କଲା ପରେ ପାଖ ମଫସଲ ଅଞ୍ଚଳକୁ ତିନି ଚାରି ରାତି ଅଭିନୟ କରିବାକୁ ଗଲେ ।

ଚଳ ସଂକ୍ରାନ୍ତି ଉପଲକ୍ଷେ ଭୈରବ ପୁର ଗାଁରେ ଯାତ୍ରା ଶେଷକରି ସମସ୍ତେ ଘରକୁ ଫେରିଲେ। ଝୁଲଣ, ଦୋଳ, ଦୁର୍ଗାପୂଜା ଓ କାଳି ପୂଜା ଆଦି ପର୍ବ ମାନଙ୍କରେ ଅଭିନୟ କରିବାକୁ। ମାତ୍ର ସେଠାରେ ମେଲେରିଆ ଓ କଳାଜ୍ୱରରେ ଆକ୍ରାନ୍ତ ହେବାର ଆଶଙ୍କା ଯୋଗୁଁ ତିନି ଦିନ ଅଭିନୟ ପରେ ଢେଙ୍କାନାଳ ଆସିଲେ।

ଢେଙ୍କାନାଳର ରାଜା ସେତେବେଳେ ବଡ଼ ଅତ୍ୟାଚାରୀ ଥିଲେ। ସେକଥା ତାହାଙ୍କୁ ଅବିଦିତ ନଥିଲା। ମାତ୍ର ରାଜକର୍ମୀ ମାନଙ୍କ ଠାରୁ ସାହାଯ୍ୟ ପାଇବାର ଆଶା ଥିବାରୁ ସେଠାରେ ଥିଏଟର ପାର୍ଟି କେମ୍ପ୍ ପକାଇଲା। ଗୋଟିଏ ବିରାଟ ପ୍ରାସାଦର ଏକତାଲା କୋଠାରେ ଅଭିନେତା ମାନେ ବାସ କଲେ। ପ୍ରଥମ ରାତିରେ 'କୃଷ୍ଣ-ସୁଦାମା' ନାଟକ ଅଭିନୟ ହେଲା। ରାଜା ଗୋଟିଏ ଘଣ୍ଟା ଦେଖି ବିଶ୍ରାମ କରିବାକୁ ଚାଲିଗଲେ। କିନ୍ତୁ ରାଣୀ ପ୍ରତ୍ୟେକ ନାଟକ ଆମୂଳଚୂଳ ଦର୍ଶନ କରୁଥିଲେ। ଏଠାରେ ସେମାନେ ଆଶାତୀତ ଭାବରେ ଅର୍ଥ ଓ ସମ୍ମାନ ଲାଭ କରିଥିଲେ।

ଏହା ପରେ ତାଳଚେରର ରାଜାଙ୍କ ରାଜ ଦରବାରରେ ଚାରି ରାତି ଅଭିନୟ ଚାଲିଥିଲା। ନିଜ ଗଡ଼ ମଧ୍ୟରେ ରାଜା ସେମାନଙ୍କୁ ରହିବାକୁ ସ୍ଥାନ ଦେଇଥିଲେ ଏବଂ ନିଜେ ଆସି ସେମାନଙ୍କ ଅଭାବ ଅସୁବିଧା ବୁଝୁଥାଆନ୍ତି।

ଠିକ୍ ତା' ପରେ ପରେ ବାଞ୍ଛାନିଧି ଗଲେ ଡେଲାଙ୍ଗକୁ 'ଗାନ୍ଧୀ ସେବା ସଂଘ' ଅନୁକୂଲ୍ୟରେ ଆୟୋଜିତ ସଭାରେ ଯୋଗ ଦେବାକୁ। ଡେଲାଙ୍ଗରୁ ଫେରି ବାଞ୍ଛାନିଧି ଅସୁସ୍ଥ ହୋଇ ରୋଗ ଶଯ୍ୟାରେ ପଡ଼ି କିପରି ଇହଧାମ ତ୍ୟାଗ କଲେ ତାହା ପରେ ବର୍ଣ୍ଣିତ ହେବ।

ତାଳଚେରରେ ଅଭିନୟ ପ୍ରଦର୍ଶନ ପରେ ଦଶପଲ୍ଲାରେ ଚାରିରାତି ଅଭିନୟ ଚାଲିଲା। ଏଠାରେ ଅଭିନେତା ମାନେ ପ୍ରଶଂସା ପତ୍ର ଲାଭ କରିଥିଲେ ଉଚ୍ଚ କୋଟିର ଅଭିନୟ ଯୋଗୁଁ। ଦଶପଲ୍ଲା ରାଜାଙ୍କ ସାହାଯ୍ୟରେ ଥିଏଟର ପାର୍ଟିର ଜିନିଷ ପତ୍ର ଟ୍ରକ୍ ଓ କାର୍ ଯୋଗେ ନୟାଗଡ଼ରେ ଆସି ପହଞ୍ଚିଲା। ସେଠାରେ ନୟାଗଡ଼ ରାଜାଙ୍କ ସାହାଯ୍ୟରେ ତିନି/ଚାରି ରାତି ଅଭିନୟ କଲେ। ସେଠାରୁ ରଣପୁର ଗଲା ପାର୍ଟି। ରଣପୁରର ରାଜା ସେତେବେଳେ ବଡ଼ ପ୍ରତାପୀ ଥିଲେ। ରାଜାଙ୍କ ଆଦେଶ କ୍ରମେ ଅଭିନେତା ମାନେ ଗୁଣ୍ଡିଚା ଘରେ ବିଶ୍ରାମ ନେଲେ। ସେଠାରେ ଦୁଇ ରାତି ଅଭିନୟ ହେବାକୁ ଆଦେଶ ମିଳିଲା। ପ୍ରଥମେ ରାତିଟି ରାଜା ଏକା ରାଜପରିବାର ସହିତ ଦେଖିଲେ ଓ ପରଦିନ ପ୍ରଜାମାନେ ନାଟକାଭିନୟ ଦର୍ଶନ କଲେ। ଦୁଇଦିନ ଅଭିନୟ ପରେ ତୃତୀୟ ଦିନ ବାରଟା ବେଳେ ଶଗଡ଼ ଧରି ବାହାରିଲା ବେଳେ

ପୋଷ୍ଟମେନ ଏକ ଟେଲିଗ୍ରାମ୍ ଗୌରାଙ୍ଗ ବାବୁଙ୍କୁ ଦେଲା । ସେଥିରେ ଲେଖାଥିଲା— "Banchhanidhi Expired" । ଗୌରାଙ୍ଗ ବାବୁ ଏହା ପଢ଼ି ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ।

ଯେପରି ହେଉ, ମୃତପ୍ରାୟ ଅବସ୍ଥାରେ କଟକର ମଣି ସାହୁଙ୍କ ଘରେ ପହଞ୍ଚିଲେ । ସେଠାରେ ଗୁରୁରାତ୍ର ଅଭିନୟ ପରେ ସମସ୍ତ ଟ୍ରେନ୍ ଯୋଗେ ଭଦ୍ରକ ପଳାଇ ଆସିଲେ । ତା' ପରେ ସେଇଠାରେ ହିଁ ଥିଏଟର ପାର୍ଟିର ଯବନିକା ପଡ଼ିଗଲା । ଓଡ଼ିଆ ନାଟ୍ୟକଳା ଓ ସାରସ୍ୱତ ପ୍ରତିଭା ଦଳର ଏକ ସ୍ମରଣୀୟ ଅବସାନ ଘଟିଲା ।

## ॥ ଦ୍ୱାଦଶ ॥

### ବାଞ୍ଛାନିଧିଙ୍କ ସାହିତ୍ୟ କୃତି

ଚାରଣ କବି ବାଞ୍ଛାନିଧି ଥିଲେ ଏକ ଧାରାରେ କବି, ସୁଦକ୍ଷ ସଂଗୀତଜ୍ଞ, ବକ୍ତା, ଦେଶ ସେବୀ, ପ୍ରାବନ୍ଧିକ ଓ ନାଟ୍ୟକାର । ତାଙ୍କର ସାହିତ୍ୟକୃତି ମଧ୍ୟରେ ଜାତୀୟତାବାଦୀ ସଂଗୀତ ଗୁଡ଼ିକ ମୁଖ୍ୟସ୍ଥାନ ଅଧିକାର କରିଛି । ଏଣୁ ସମୀକ୍ଷକ ଶ୍ରୀ ଗୌର ଗୋପାଳ ଜେନା ବାଞ୍ଛାନିଧି ସାହିତ୍ୟ ସଂପର୍କରେ ଯଥାର୍ଥରେ ଲେଖିଛନ୍ତି— "ମାତୃଭୂମିର ରାଜନୀତିକ ଓ ଆର୍ଥନୀତିକ ସ୍ୱାଧିନତା, ବ୍ୟକ୍ତି ଜୀବନରେ ଓ ଜାତୀୟ ଜୀବନରେ ସମସ୍ତ ଅକଲ୍ୟାଣ ଓ ଆଂଶିକ ବନ୍ଧନରୁ ମୁକ୍ତି ଏବଂ ଶାନ୍ତି, ମୈତ୍ରୀ ଓ ପ୍ରଗତି—ଏହାହିଁ ବାଞ୍ଛାନିଧି ସାହିତ୍ୟର ମୂଳଭିତ୍ତି ଓ ମର୍ମବାଣୀ" (୩୫) । ତାଙ୍କ ସାହିତ୍ୟକୃତିକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇ ପାରେ । ଯଥା-(କ) ସଙ୍ଗୀତ ବା ଗୀତି କବିତା, (ଖ) ନାଟକ (ଗ) ପ୍ରବନ୍ଧ ।

### (କ) ସଂଗୀତ ବା ଗୀତି କବିତା

ବାଞ୍ଛାନିଧି ମୁଖ୍ୟତଃ ଜଣେ ଗୀତ କବି ଓ ସୁଗାୟକ । ତାଙ୍କ ସଂଗୀତକୁ ଚାରିଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରେ । ଯଥା—(୧) ଜାତୀୟତାବାଦୀ ସଙ୍ଗୀତ (୨) ଭଜନ (୩) ବିଭିନ୍ନ ଅବକାଶରେ ରଚିତ ସଙ୍ଗୀତ (୪) ଅନୁବାଦ ସଂଗୀତ । ଏହି ଗୀତି କବିତା ଗୁଡ଼ିକରେ ସରଳ ପ୍ରତୀକ ଓ ତୁଳନାତ୍ମକ ଦୃଷ୍ଟାନ୍ତ ସହିତ ଭାରତର ଦରିଦ୍ର ଜନତାର ସମସ୍ୟା ପୂର୍ଣ୍ଣ ଦୈନନ୍ଦିନ ଜୀବନର କାହାଣୀକୁ ଯେ ରୂପ ଦେଇ ଶ୍ରୋତା ତଥା ପାଠକ ମାନଙ୍କର ବେଶ୍ ହୃଦୟଗ୍ରାହୀ ହୋଇ ପାରିଛନ୍ତି । ଓଡ଼ିଆ କବିତାର ଗବେଷକ ଡକ୍ଟର ନିତ୍ୟାନନ୍ଦ ଶତପଥୀ ଏହାଙ୍କୁ

(୩୫) କବି ବାଞ୍ଛାନିଧିଙ୍କ ଜୀବନ ଦର୍ଶନ—ଝଙ୍କାର ୧୯୭୧-ଅଗଷ୍ଟ-ପୃ: ୪୭୨

ସ୍ୱୀକାର କରିଛନ୍ତି । ସେ ତାଙ୍କର ଗବେଷଣା ଗ୍ରନ୍ଥ 'ସବୁଜରୁ ସାଂପ୍ରତିକ' ( ପ୍ରକାଶ ବର୍ଷର ଆଧୁନିକ ଓଡ଼ିଆ କବିତା-୧୯୨୦-୭୦ ) ରେ ଉଲ୍ଲେଖ କରିଛନ୍ତି । "ପୁଣି ତାଙ୍କ କବିତାର ତୁଳନାତ୍ମକ ଦୃଷ୍ଟାନ୍ତ ତଥା ସରଳ ପ୍ରତୀକ ଗୁଡ଼ିକ ସାଧାରଣ ଜନତାକୁ ବେଶ୍ ଉଦ୍‌ବୁଦ୍ଧ କରେ । କାରଣ ସେ ସେଇ ଦରିଦ୍ର ଭାରତୀୟ ଜନତାର ଦୈନନ୍ଦିନ ଦୁର୍ଗତି ପୂର୍ଣ୍ଣ କାହାଣୀକୁ ହିଁ ରୂପାୟିତ କରିଛନ୍ତି ।" (୩୬)

ଜାତୀୟତାବାଦୀ ସଂଗୀତ

କାନ୍ତାକବି 'ଉତ୍କଳବୀଣା' ନାମରେ ଦୁଇଟି ଝଙ୍କାର (ଭାଗ) ପ୍ରକାଶ କରିଥିଲେ । ଏହି ଦୁଇଖଣ୍ଡ ପୁସ୍ତକ ଜାତୀୟ ସଂଗୀତରେ ପରିପୂର୍ଣ୍ଣ । ଓଡ଼ିଆ ସାହିତ୍ୟର ଦେଶାତ୍ମ-ବୋଧ ପର୍ଯ୍ୟାୟରେ ତାଙ୍କର ଏହି ଗୀତି କବିତା ଗୁଡ଼ିକ ଚିର ସ୍ମରଣୀୟ ହୋଇ ରହିବ ବୋଲି ସମାଲୋଚକ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି ତାଙ୍କ 'ଓଡ଼ିଆ ସାହିତ୍ୟରେ ଦେଶାତ୍ମବୋଧ' ପ୍ରବନ୍ଧରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି ।" (୩୭) ପ୍ରଥମ ଝଙ୍କାରଟିକୁ ସେ ଉତ୍କଳ ମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ଉତ୍ସର୍ଗ କରିଛନ୍ତି । ଏଥିରେ ଚବିଶଟି ସଂଗୀତ ସନ୍ନିବେଶିତ ହୋଇଥିଲା । ଏଥିରେ ଅନ୍ୟାନ୍ୟ ସଂଗୀତ ବ୍ୟତୀତ ବାଲେଶ୍ୱର ଜିଲ୍ଲା ସମ୍ମିଳନୀର ପ୍ରଥମ ଅଧିବେଶନ, ଦ୍ୱିତୀୟ ଅଧିବେଶନ ବସ୍ତା ଠାରେ ଗୀତ, ତୃତୀୟ ଅଧିବେଶନ ଜଳେଶ୍ୱର ଠାରେ ଗୀତ, ଚତୁର୍ଥ ଅଧିବେଶନ ଯୋଗୀ ଠାରେ ଗୀତ, ଭାରତୀୟ ମହାସଭା ବା କଂଗ୍ରେସ୍‌ର କୋକନଡ଼ା ଅଧିବେଶନର ଗୀତ ଏବଂ ଉତ୍କଳ ପ୍ରାଦେଶିକ ସମ୍ମିଳନୀର ପ୍ରଥମ ଅଧିବେଶନର କଟକଠାରେ ଗୀତ ଆଦି ସ୍ଥାନ ପାଇଛି । ଏହାର ପ୍ରଥମ ସଂଗୀତଟିରେ ଭାରତ ମାତାର ବନ୍ଦନା କରାଯାଇଛି—

"ଧନ-ଜନ-ମନ-ଶକ୍ତି-ଦାୟିନୀ ଭାରତ ମମ ଜନନୀ<br>
ସୁଖଦ-ଶୁଭ-ଶାନ୍ତି-ଦାୟିନୀ ଅମୂନ୍ଦାଂ ନମାମି ।- ଧ୍ରୁବ ।<br>
ହିମଗିରି-ସୀମନ୍ତିତ-ତୁଷାର-ଶୁଭ୍ର -କିରୀଟ-ଧାରିଣୀ,<br>
ନୀଳ ଫେନିଳ-ଅନନ୍ତ-ସିନ୍ଧୁ-ଧୌତ-ଚରଣ-ଜନନୀ । ୧ ।"

ପ୍ରାଚୀନ ଉତ୍କଳର ଗୌରବ ଗାଥା ସମ୍ବଳିତ ତାଙ୍କର ପ୍ରସିଦ୍ଧ ସଂଗୀତ ଏଥିରେ ସ୍ଥାନ ପାଇଛି । ଏଥିରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ବଳରାମ, ଜଗନ୍ନାଥ, ଲୀଳାବତୀ, ଶ୍ରୀ ଚନ୍ଦ୍ର ଶେଖର ସାମନ୍ତ, ଗୌରଗଙ୍ଗ, ପୁରୁଷୋତ୍ତମ ଦେବ, ଅନଙ୍ଗ

(୩୬) ସବୁଜରୁ ସାଂପ୍ରତିକ—ଗ୍ରନ୍ଥ ମନ୍ଦିର—୧୯୭୧—ପୃ ୪୯ ।

(୩୭) ଓଡ଼ିଆ ସାହିତ୍ୟରେ ଦେଶାତ୍ମବୋଧ--ସ୍ରୋତସ୍ୱିନୀ--ଅକ୍ଟୋବର—ଡିସେମ୍ବର—୧୯୪୮—ପୃ-୫ ।

ଭୀମ ଦେବ, ମର୍କତ କେଶରୀ, ମୁକୁନ୍ଦଦେବ, ଶ୍ରୀ ଚୈତନ୍ୟ ଆଦି ମହାନ୍ ପୁରୁଷ ଏବଂ କୋଣାର୍କ, ଭୁବନେଶ୍ୱର ଓ ପୁରୀ ମନ୍ଦିରର ପ୍ରସ୍ତର ଗାତ୍ରରେ କାରୁ କାର୍ଯ୍ୟର ଅପୂର୍ବ କୀର୍ତ୍ତିରାଜିକୁ ସ୍ମରଣ କରିଛନ୍ତି—

"ପଞ୍ଚ ନାହିଁକି ତଳେ ମନେ ସୋଦରରେ
ପୂରୁବ ମହିମା ପୂରୁବ ଗରିମା ଉତ୍କଳ ଅତୀତ
କାହାଣୀ ଶ୍ରବଣେ ।

+ + +

ସେହି ଜାତି ଜନମ ସ୍ଥାନ ଭାରତେ ପବିତ୍ର ଧାମ
ଯହିଁ ଜଗନ୍ନାଥ ବିଜେ ଜଗତ୍‌ତାତ୍,
ତା ସନ୍ତାନ କମ୍ପା ଆଜି ଅଧୋବଦନେ ।"

ବିଦେଶୀ ବସନ ବର୍ଜ୍ଜନ, ଅସ୍ପୃଶ୍ୟତା ନିବାରଣ, ନାରୀ ଜାଗରଣ, ମହାତ୍ମାଗାନ୍ଧୀ ଓ ଗୋପବନ୍ଧୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ଶୋକଗୀତ, କନିକା ଅତ୍ୟାଗ୍ନିର ସମ୍ପୃକ୍ତ ପ୍ରସିଦ୍ଧ ଐତିହାସିକ ସଂଗୀତ ("କେତେ ଦିନ ଆଉ ଦୁଃଖିନୀ କନିକା ଅମିତ ଯାତନା ସହିବ—") ମାନ ଏଥିରେ ସ୍ଥାନ ପାଇଛି । ପ୍ରସିଦ୍ଧ ବ୍ୟଙ୍ଗାତ୍ମକ କବିତାଟି ମଧ୍ୟ ସ୍ଥାନ ପାଇଛି—

"କହ କାମିନୀ କହ ମୋତେ
କମ୍ପା ବାବୁଆଣୀ ହୋଇଗଲୁ ଏତେ ।
କିଏ ତୋତେ କେଲା କୁହୁକ କରିଲା
କି ଦେଖି ବାଇଆ ହେଲୁ ଏତେ । ଘୋଷା ।

ବଜାରୁଣୀ ଢଙ୍ଗ କାହୁଁ ତୁ ଶିଖିଲୁ
ବିଲାତି ଫେସନ କାହୁଁ ତୁ ଶିଖିଲୁ
ବଡ଼ାବଡ଼ଙ୍କୁ ତୁ ବେଖାତିର କରି ଭୟ ଭକ୍ତି ନରଖିଲୁ ଚିତ୍ତେ ।

ସଉକିଆ ପଣ ଦେଲୁ ତୁ ବଢ଼ାଇ
ଘର କଉଡ଼ିକୁ ଦେଲୁ ତୁ ଉଡ଼ାଇ
ଆରସି ପାନିଆ ସାବନ ସେମିଜ ଅତରରେ ବନ୍ଧି ଦେଲୁ ଯେତେ ।

ସବୁ ପିନ୍ଧି ପିନ୍ଧି ହେଲୁ ପଛେ ବୁଢ଼ୀ
ନ ଛାଡ଼ିଲୁ କଲ ପିନ୍ଧା ପାଢ଼ ଶାଢ଼ୀ

ହେଉ ଯେତେ ବୁଢ଼ୀ ଖୋଜୁ ଯେତେ ଧଡ଼ି
ଫୁଲ ମିକନାର କଣ୍ଠ କେତେ ।

କଳସୂତା ପର୍ରି ଅଟେ ଅଶୁଦ୍ଧତ
ପିନ୍ଧ ତାକୁ କେତେ ହେଉଛ ଶଉଚ

ଅଶୁଚ କାର୍ଯ୍ୟରେ ଧରମ କରିଲେ ଫଳକି ପ୍ରାପତ ହେବ ତୋତେ ।

ଅରଟରେ ସୂତାକାଟି ଲୁଗାକର
କେତେ ଧନ ଆଉ ରହିଥିବ ପର

ବଜାର ହାଟରେ ଲୁଗା କିଣି ଗଲେ ଶସ୍ତାରେ ପାଇବୁକି ଯେତେ ।

ନିଜ ବାଡ଼ି କପା ନିଜ ହାତ କଟା
ଖଦୀ ସୁନ୍ଦର କୁରୁତା ଶାଢ଼ୀ ଯଟା

ତେଜେଇ ତୋଷକ ଚଦରିଆ ମସାଣ ସବୁ ସେ ଅରଟ ଦେବ ତୋତେ ।”

'ଉତ୍କଳ ବୀଣା'ର ଦ୍ୱିତୀୟ ଝଙ୍କାରଟିକୁ କବି ବାଞ୍ଛାନିଧି ତାଙ୍କର 'ପରଲୋକଗତା ଜନନୀ'ଙ୍କୁ ଉତ୍ସର୍ଗ କରିଛନ୍ତି । ୧୯୩୧ ମସିହା ଜୁଲାଇ ମାସରେ ପ୍ରକାଶ ପାଇଥିଲା । ଏଥିରେ ତାଙ୍କ ରଚିତ ସର୍ବମୋଟ ୩୮ଟି ସଂଗୀତ ସ୍ଥାନ ପାଇଛି । ପ୍ରଥମ ଝଙ୍କାରର ପ୍ରଥମ ସଂଗୀତଟିରେ 'ଭାରତ ବନ୍ଦନା' କରାଯାଇଥିବା ବେଳେ ଦ୍ୱିତୀୟ ଝଙ୍କାରର ପ୍ରଥମ ସଂଗୀତଟିରେ 'ଉତ୍କଳ ବନ୍ଦନା' କରାଯାଇଛି ।

"ଉତ୍କଳ ମମ କରମ ଦାୟିନୀ ଉତ୍କଳ ମମ ଜନନୀ
ଶୁଭଦେ ବରଦେ ସୁଖ ବିଧାୟିନୀ ଧନ୍ୟେ ପୁଣ୍ୟେ ନମାମି ।

ଗଢ଼ିଛି ମୋ ଦେହ ଉତ୍କଳ ମା'ଟି
ଅନ୍ତିମ ଶେଯ ହେବ ସେ ମାଟି

ଉତ୍କଳ ମମ କରମ-କ୍ଷେତ୍ର ଭକ୍ତି ମୁକ୍ତି ଦାୟିନୀ । ୧ ।

କେତେ କେତେ ବୀର ଜନମିଲେ କୋଳେ
ଭାରତ ଅରଜି ପୀରତ ଖେଳେ

ଦେଶ-ପୀରତ-ଧର୍ମ୍ମଶ୍ଳୋକେ, ଙ୍କର-ପୂତ-ଅବନୀ । ୨ ।"

ଏଥିରେ ଅନ୍ୟାନ୍ୟ ସଂଗୀତ ବ୍ୟତୀତ ବାଲେଶ୍ୱର ଜିଲ୍ଲା ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ବସ୍ତା ଠାରେ ଗୀତ, ଉତ୍କଳ ପ୍ରାଦେଶିକ ସମ୍ମିଳନୀର ପ୍ରଥମ ଅଧିବେଶନ କଟକ ଠାରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କୁ ଅଭ୍ୟର୍ଥନା ଉପଲକ୍ଷେ ରଚିତ ଗୀତ, କଟକରେ ଗୋପବନ୍ଧୁ ଦିବସ (୧୯୨୮) ରେ ପଢ଼ୁଆର ଗୀତ, ପଣ୍ଡିତ ମୋତିଲାଲ

ନେହେରୁଙ୍କ ବିୟୋଗରେ ଶୋକଗୀତ, ପତାକା ସଂଗୀତ, ପଟ୍ଟୁଆର ସଂଗୀତ, କେନ୍ଦୁପାଟଣା ସମ୍ମିଳନୀରେ ଗାନ କରିଥିବା 'ଉତ୍କଳ ବନ୍ଦନା' ଗୀତ, କଟକରେ ଗୋପବନ୍ଧୁ ଦିବସ ଉପଲକ୍ଷେ ଉପାସନା ସଂଗୀତ ଓ ପ୍ରାରମ୍ଭିକ ସଂଗୀତ, ବାଲେଶ୍ୱର ଜିଲ୍ଲା ସମ୍ମିଳନୀର ଚତୁର୍ଥ ଅଧିବେଶନ ସୋର, ଭଦ୍ରକ ସବଡ଼ିଭିଜନ ସମ୍ମିଳନୀର ତୃତୀୟ ଅଧିବେଶନ ଏବଂ ଭଣ୍ଡାରି ପୋଖରି ଠାରେ ଗୀତ, ଗୋଷ୍ଠାଷ୍ଟମୀ ଉପଲକ୍ଷେ ରଚିତ ଗୀତ, କଟକ ଜିଲ୍ଲା ସମ୍ମିଳନୀର କେନ୍ଦୁପାଟଣା ଅଧିବେଶନ (୧୯୨୮) ରେ ଅଭ୍ୟର୍ଥନା ସଂଗୀତ, ଉତ୍କଳ ସମ୍ମିଳନୀର ଖଦି ପ୍ରଦର୍ଶନୀରେ ଗୀତ, ଖଦି ସଂଗୀତ, ଏବଂ ନିଖିଳ ଉତ୍କଳ ସମାଜ ସଂସ୍କାର ସମ୍ମିଳନୀ ଉପଲକ୍ଷେ ରଚିତ ଗୀତମାନ ସ୍ଥାନ ପାଇଛି ।

ଏଥିରେ ପ୍ରସିଦ୍ଧ ପତାକା ସଂଗୀତ ସ୍ଥାନ ପାଇଛି—

"ରେ ପତାକା ଜାତିର ଗରବ ଜାତିର ଜୀବନ ପରାଣ ତୁହିରେ
ଏକତା-ପୀରତି-ଶାନ୍ତି-ମୂରତି ସୁନ୍ଦର ତୋହର ସମାନ ନାହିଁରେ"
ତୋହର ଲାଗି କେତେଯେ ସମର
ଲାଗିଛି ଜାଗିଛି କୀରତି ଅମର
ତୋହର ଲାଗି କେତେ କାରାଗାର ବରିଲେ ମରିଲେ ସମର ଭୂଇଁରେ । ୧ ।
ତୋହର ଲାଗି ଦେଶେ ଦେଶେ
ପୀରତି ହୋଇଛି ବଇରି ଶେଷେ
ତୋହର ଲାଗି ଅରିର ଖଡଗ ଶରୀର ରକତେ ଦେଲେ ରଙ୍ଗାଇରେ । ୨ ।
ଜାଣିଛୁ ଯେ ଥରେ ଜାତୀୟତା ସ୍ୱାଦୁ
ଚାଖିଛୁ ଯେ ଥରେ ସ୍ୱାଧୀନତା ମଧୁ
ପାରିଛୁ ଦେବାକୁ ଜୀବନ ଯୌବନ ମାନ ସନମାନ ବିମନ ତୋହରେ । ୩ ।
ଉଡ଼ୁଥିଲୁ ଉଡ଼ୁଥିବୁ, ଉଡ଼ୁଥିବ ପଟ୍ଟ
ଯାବତ ଏ ଦେଶ ଧରିଥିବ ଧଟ୍ଟ
ଯାବତ ଜାତିର ଜୀବିଏ ପରାଣେ ଥିବ ତୁ ବିରାଜିବୁ ଗଗନ ଭୂଇଁରେ । ୪ ।
ଧନ୍ୟ ଧନ୍ୟ ତୋହର ତିନି ରଙ୍ଗିଆରେ
ଧରିଛୁ ଅଙ୍କେ ସୁଖ ସାଙ୍ଗିଆରେ
ଚରଖା ଦରିଦ୍ର-ସେବା-ଅବତାର ବିକ୍ଷେରେ ସେ ଚିହ୍ନ ନମୁଛୁ ମୁହିଁରେ । ୫ ।

ସମଗ୍ର ଉତ୍କଳର ଗଗନ ପବନରେ ନିନାଦିତ ସେହି ସ୍ମରଣୀୟ ସଂଗୀତ— "ଗାଅ, ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ, ସ୍ୱାଧୀନ ସ୍ୱାଧୀନ ରେ"—ମଧ୍ୟ ଏଥିରେ ଗ୍ରଥିତ ହୋଇଛି ।

୧୯୬୩ରେ 'ଓଡ଼ିଆ ସାହିତ୍ୟ ଏକାଡ଼େମୀ' ବାଞ୍ଛାନିଧି ପଦ୍ୟାବଳୀ ନାମରେ ଦୀର୍ଘ ୧୯୦ ପୃଷ୍ଠାର ଗ୍ରନ୍ଥ ପ୍ରକାଶ କରିଛନ୍ତି । ଏହି ଗ୍ରନ୍ଥଟି ତିନୋଟି ପର୍ଯ୍ୟାୟରେ ବିଭକ୍ତ । ପ୍ରଥମ ପର୍ଯ୍ୟାୟରେ ( ପୃ: ୧ ଠାରୁ ପୃ: ୯୩ ) କବି ବାଞ୍ଛାନିଧିଙ୍କର ୮୬ଟି ଅପ୍ରକାଶିତ ସଂଗୀତ ପ୍ରକାଶ ପାଇଛି । ଦ୍ୱିତୀୟ ପର୍ଯ୍ୟାୟରେ ( ପୃ. ୯୯ ଠାରୁ ପୃ. ୧୩୭ ) 'ଉତ୍କଳବୀଣା'ର ପ୍ରଥମ ଝଙ୍କାର ଏବଂ ତୃତୀୟ ପର୍ଯ୍ୟାୟରେ ( ପୃ. ୧୪୩ ଠାରୁ ପୃ. ୧୯୦ ) 'ଉତ୍କଳବୀଣା' ର ଦ୍ୱିତୀୟ ଝଙ୍କାର ଗ୍ରନ୍ଥନ କରାଯାଇଛି ।

ବାଞ୍ଛାନିଧିଙ୍କ ଏହି ଜାତୀୟବାଦୀ ଗୀତି କବିତା ଗୁଡ଼ିକ ଆଧୁନିକ ଓଡ଼ିଆ କବିତା ରାଜ୍ୟରେ ବା ରାଧାନାଥ ପରବର୍ତ୍ତୀ ଓଡ଼ିଆ କବିତା ରାଜ୍ୟରେ ଏକ ସୁନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରିବା ନିଜସ୍ୱ ଗୀରମାରେ ମହିମାନ୍ୱିତ ଏହା ସମାଲୋଚକ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି 'ରାଧାନାଥ ପରବର୍ତ୍ତୀ ଓଡ଼ିଆ କାବ୍ୟ-କବିତା' ଶୀର୍ଷକରେ ସଦ୍ଦୃଷ୍ଟାନ୍ତ ଆଲୋଚନା କରିଛନ୍ତି (୩୮) ।

ଏହାର ପ୍ରାରମ୍ଭରେ ଓଡ଼ିଆ ସାହିତ୍ୟ ଏକାଡେମୀର ତତ୍କାଳୀନ ସଭାପତି ଶ୍ରୀ ସନ୍ତୋଷ କୁମାର ସାହୁ 'ଅଗ୍ରଲେଖ' ଲେଖିଛନ୍ତି ଏବଂ ତତ୍କାଳୀନ ସଂପାଦକ ଶ୍ରୀ ଗୌରୀ କୁମାର ବ୍ରହ୍ମା 'ଆଦ୍ୟ କଥନ' ଶୀର୍ଷକରେ ବାଞ୍ଛାନିଧିଙ୍କର ସାମାନ୍ୟତମ ପରିଚୟ ପ୍ରଦାନ କରିଛନ୍ତି । ତେବେ ସେ ଯାହା ହେଉ 'ବାଞ୍ଛାନିଧି ପଦ୍ୟାବଳୀ' ପ୍ରକାଶ କରି ଓଡ଼ିଆ ସାହିତ୍ୟ ଏକାଡେମୀ ଏକ କର୍ତ୍ତବ୍ୟୋଚିତ କାର୍ଯ୍ୟ କରିଛନ୍ତି । ସଂପାଦକ ଶ୍ରୀଯୁକ୍ତ ଗୌରୀ କୁମାର ବ୍ରହ୍ମାଙ୍କ ଭାଷାରେ—''ଓଡ଼ିଶା ସାହିତ୍ୟ ଏକାଡେମୀ ଦେଶର ବର୍ତ୍ତମାନ ଜରୁରୀ ପରିସ୍ଥିତି ସମୟରେ 'ବାଞ୍ଛାନିଧି ପଦ୍ୟାବଳୀ' ପ୍ରକାଶିତ କରି ସାହିତ୍ୟ ସାଧନାର ଏକ ଯୁଗୋଚିତ କର୍ତ୍ତବ୍ୟ ସଂପାଦନ କରିଅଛି ମାତ୍ର ।'' ପ୍ରକୃତରେ ଏହା ଯଥାର୍ଥ ।

ତାଙ୍କ ଗୀତି କବିତା ଗୁଡ଼ିକ କିପରି ଜନତା ହୃଦୟକୁ ସ୍ପର୍ଶ କରୁଥିଲା ଏବଂ ସେମାନଙ୍କ ପ୍ରାଣକୁ ଆଲୋଚନା କରୁଥିଲା, ତାହା ପ୍ରକାଶ କରିବାକୁ ଯାଇ ଡକ୍ଟର ହରେକୃଷ୍ଣ ମହତାବ୍ ଲେଖିଛନ୍ତି— ''ଅସହଯୋଗ ଆନ୍ଦୋଳନରେ ଆମ୍ଭେମାନେ ସମସ୍ତେ ମାତିଲୁଁ, ବାଞ୍ଛାନିଧିଙ୍କ ସଂଗୀତ ଜନତାର ହୃଦୟ ସ୍ପର୍ଶ କରି ସେମାନଙ୍କ ପ୍ରାଣକୁ ଯେପରି ଆଲୋଡ଼ନ କରୁଥିଲା, ସେଥିରେ ଆମେ ସମସ୍ତେ ମଧ୍ୟ ଆତ୍ମହରା ହୋଇ ଯାଇଥିଲୁଁ । ବାସ୍ତବିକ ସେ ଥିଲେ କବି ।'' (୩୯)

---

(୩୮) ରାଧାନାଥ—ପରବର୍ତ୍ତୀ ଓଡ଼ିଆ କାବ୍ୟ- କବିତା- ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି- ଅର୍ଘ୍ୟ (ଭଦ୍ରକ କଲେଜର ଓଡ଼ିଆ ସମାଜର ମୁଖପତ୍ର)-୧୯୬୮-୭୦ ପୃ. ୧୧-୧୩

(୩୯) ଜାତୀୟ କବି ଅଭିନନ୍ଦନ- ୧୯୬୩- ପୃ-୯

'ବାଞ୍ଛାନିଧି ପଦ୍ୟାବଳୀ'ର ଏହି ପ୍ରଥମ ପର୍ଯ୍ୟାୟରେ ( ଉତ୍କଳବୀଣା ଦୁଇଟି ଝଙ୍କାର ବ୍ୟତୀତ ) ବହୁ ପ୍ରସ୍ତୁତ, ଲୋକପ୍ରିୟ ସଂଗୀତ ସ୍ଥାନ ପାଇଛି । ସେଥି ମଧ୍ୟରୁ କେତୋଟି ପ୍ରଦତ୍ତ ହେଲା—

କି ହେବ ସେ ସ୍ୱରାଜ୍ୟ ନେଇ ଯେବେ ମୋର ନପୂରେ ପେଟ
ଖଟି ଖଟି ମଲେଣି ମୂଲିଆ ଚାଷୀ ଚଷି ଦାନା-କନା ନିଅଣ୍ଟ । ୦ ।
ଅଧମାଣେ ଜମି ଜଣକା
କୋରଖରେ ସେ ପୁଣି ବାକା
ଗାଁର ସଭିଏଁ କରଜ କରନ୍ତି ଜଣେ ଦୁଇଜଣ ବେମ୍ବେଇ ସେଠ । ୧ ।
ବସ ପଛେ ଲାଟ୍ ଆସନେ
ମନ୍ତ୍ରୀ ହୁଅ ନୂଆ ଶାସନେ—
ଚାଷୀ ଯେ ତମିରେ ଚାଷୀ ସେ ତମିରେ
ସୁଖ ସଙ୍ଗେ କେବେ ହେବନି ଭେଟ । ୨ ।
ଧଳା ସ୍ଥାନେ କଳା କରତା
ହୁଅ ପଛେ ଦୈବ ବିଧାତା
ଧନୀକ ଦରିଦ୍ର ଭେଦକ ଘୁଞ୍ଚିବ ବଡବଡ଼ିଆଙ୍କ ନଜର ହେଟ । ୩ ।
ମୋ ଭାଇର ବାଟୀକୁ ବାଟୀ
ଅମାରତ ପଡ଼ୁଛି ଫାଟି
ମୋର ଘରେ ନାହିଁ ଛପର କୁଟାଟି
ମୋ ଭାଇ ଶୋଇଛି ଛପର ଖଟ । ୪ ।

ଆଉ ଗୋଟିଏ—

କହ କହ କେଉଁ ଜାତ ପାଇଛୁ ମୁକତ
କରି ଦୁର-ଦ୍ୱାର ଗୁହାରି,
କହ ପାଇଛୁ କେ ସୁଖ ଲଭିଛୁ ଦୁଃଖ
ମାଗି ମାଗି ପଥ ଭିକାରି । ଧ୍ରୁବ ।
ଯେବେ ବାଘ ମୁହେଁ ପଡେ ଶିକାର
ମିନତିରେ ପାଏ କି ସେ ଉଦ୍ଧାର
ଛାଡ଼ିକି ଦିଏ କେବେ ଧୀବର ଜାଲରୁ
ନଗଲେ ମୀନ ଆପେ ବାହାରି । ୧ ।

ଦେଖ ଆଇରସ, ଚୀଇନା, ଜାପାନ
ଆମେରିକା, ଆଫଗାନ ପଠାନ,
ପର୍ଣ୍ଣ ପାତ ହେଲେ ମୁକତି ଜୀବନ-ମରଣ ନିବର୍ଗିର । ୨ ।
(ଆଜି) ଅଭିମନ୍ୟୁ ପରି ଘେରି ଚଉଦିଗୁଁ ଜନନୀ କୁ ମାରି
ଆତ୍ମଶକ୍ତି ସୁବିକାଶ ସୁଦର୍ଶନ
ଚକଟି କରିଦେବ ପାରି । ୩ ।

ତାଙ୍କ କବିତା କେବଳ ଓଡ଼ିଶା ଭିତରେ ଆବଦ୍ଧ ନଥିଲା, ତାହା ଭାରତୀୟ କ୍ଷେତ୍ରରେ କିପରି ଅଦ୍ଭୁତ ହୋଇଥିଲା, ତାହା ପ୍ରକାଶ କରିବାକୁ ଯାଇ ପ୍ରଖ୍ୟାତ ଜନନେତା ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ କହନ୍ତି--"ତାଙ୍କର ଆଉ ଏ ସଂଗୀତ କେବଳ ଓଡ଼ିଶା ଭିତରେ ସୀମାବଦ୍ଧ ନରହି ଭାରତୀୟ ଆଦର ପାଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହା ହେଉଛି "ସ୍ୱାଧୀନ ଭାରତ, ସ୍ୱାଧୀନ ଭାରତ, ସ୍ୱାଧୀନ, ସ୍ୱାଧୀନ, ସ୍ୱାଧୀନରେ" । ସଂଗୀତଟି ପୂର୍ଣ୍ଣ ଭାବରେ ସଂସ୍କୃତ ଶବ୍ଦାବଳୀରେ ପରିପୂର୍ଣ୍ଣ । ଥରେ କଂଗ୍ରେସ୍ ଅଧିବେଶନ ସମୟରେ ଗୁଜରାଟ କି ମଧ୍ୟପ୍ରଦେଶ କେଉଁଠି ମୋର, କେଉଁଠି ମୋର ଠିକ୍ ସ୍ମରଣ ନାହିଁ--ସବୁ ପ୍ରଦେଶର ସଂଗୀତ ବୋଲା ଯାଉଥିଲା ବେଳେ ଆମେ ଓଡ଼ିଆ ଡେଲିଗେଟ୍ ମାନେ ଯେତେବେଳେ ଏହି ସଂଗୀତଟି ଗାଇ ବୋଲିଲୁ, ବୋଧହୁଏ ପଞ୍ଜାବ ଛଡ଼ା ଭାରତର ସବୁ ଅଞ୍ଚଳର ଲୋକଙ୍କ ଏହାକୁ ବୁଝି ପାରିଲେ । ଖାଲି ସେତିକି ନୁହେଁ, ସମସ୍ତେ ସଂଗୀତପରି ଏହା ଗାଇବାକୁ ମଧ୍ୟ ଆରମ୍ଭ କରିଥିଲେ, ।"(୪୦)

ମୁଁ ଯଦି ମନ୍ତ୍ରୀ ହୁଏ ମୋହର ଜୀବନ ଧନ୍ୟ ହେବ
ଉଚ୍ଛା ଖାଲି ଶ୍ରେଷ୍ଠ ଉପାଧିରେ ଶ୍ରମ କି ମୋହର ସଫଳ ହେବ । ଧ୍ରୁବ ।
କଲିଣି ମୁଁ କେତେ ଗୋଳମି
ସହିଲିଣି ଦେଇ ସଲମି
ଖୋସାମତ କରି କରି ଖାଲି ମିଳିଛି ଗୋଟାଏ ରାଏ ସାହେବ । ୧ ।
ମନ୍ତ୍ରୀ ହେଲେ ଟଙ୍କା ହଜାର
ହେବ ସିନା ମୋ ରୋଜଗାର
ନଥାଉ କ୍ଷମତା ପଛେ ମନ-ସାଧ ମୋର ମେଣ୍ଟିନ ହେବ । ୨ ।
ହୋନ୍ତି ଯେବେ ସାର୍ ଅବା ନାଇଟ୍
ଢଲ୍ ମୋର ହୁଅନ୍ତା ଟାଇଟ୍

(୪୦) ଜାତୀୟ ଜୀବନର ଦୁଇଟି ଜ୍ୟୋତି--(ଜାତୀୟ କବି ଅଭିନନ୍ଦନ)-୧୯୭୩- ପୃ-୧୫-୧୬ ।

ଗଳାରେ ମୋ ପୋଷା କୁକୁରର ମଖମଲ ବକଲସ୍‌ ଖିରି ସାଜିବ । ୩ ।

ଲଟ ଘୋଡ଼ା ହଅନ୍ତୁ ଭଡ଼ି
ମାଗିବି ମୁଁ ଚରଣେ ପଡ଼ି
କ୍ଷମା ହଅ କ୍ଷମା ହଅ ଦାସେ ଆହେ ପ୍ରଭୁ ସ୍ୱର୍ଗ ଦେବ । ୪ ।

ଭଲ ମନ୍ତ୍ରଣା ଲଗିଲା ମନ୍ତ୍ରୀ ସଭାରେ
ବମ୍ବେଇ ବିହାର ଓଡ଼ିଶା ମାନ୍ଦ୍ରାଜ ଆମ ପଞ୍ଜାବ
ସ୍ୱରାଜ ଅବା ମଧ୍ୟ ଦେଶେ ମନ୍ତ୍ରଣା । ଧ୍ରୁବ ।

ଯେତେ ହାକମ ହୁକୁମା ଦପଟି
ମୋଟା ଦରମା ଗିବ ବୋଲି କଟି
ମନରେ ନାହିଁକି ସରଗ-ଜୀବନ ଥାଇକି ଲାଭ
ଆଜ୍ଞା ଫିକର କାଢ଼ିଲା ଗାଢ଼ । ୧ ।

ଭାଙ୍ଗ୍‌ ମଦ, ଅଫିମ, ଭାଙ୍ଗ ନିଶା,
ଶୁଣି ପଦାଧୀର ଉଡ଼େ ଦଂସା
ମାନ୍ଦ୍ରାଜନ ସୁଧ ପାଉଣା-କରଜ ଦେବାର କଟକଣା
ଆଇନ୍‌ ଖଣ୍ଡା ହେବ ଉଆଣ । ୨ ।

ଯନ୍ତ୍ରକ ମାହାଲ ଜମିଦାର ରଜା
ଧନ ରଖି ଗାନ୍ତୁ ଥିଲେ ପରଜା
ସବଟିକ ତାଙ୍କ ସ୍ୱଚ୍ଛନ୍ଦ-ଅଭ୍ୟାସର ଦାରକା
ସୃଷ୍ଟି ହେବ ବିନା ଦେଶୁ ମାଲିକ । ୩ ।

ଖଦ ପୋଷାକ ପିନ୍ଧି ଗ୍ରୁବରଆ
ନୂଆ ସାଜେ ସାଜିବେ କଚେରିଆ
ଜାତୀୟ ପତାକା ଫର ଫର ଉଡ଼ିବ କଚେରି ଘର ଘର
ସ୍ୱରାଜ ସଙ୍କେତ ବିରାଜମାନ ମନ୍ତ୍ରଣା । ୪ ।

ତାଙ୍କ ରଚନାରେ ସମାଜ ସଂସ୍କାରର ସ୍ପଷ୍ଟ ପଦଧ୍ୱନି ଶୁଣିବାକୁ ମିଳେ । ସମାଜରେ ଯେଉଁ ମାନେ ଅସ୍ପୃଶ୍ୟ, ପତିତ, ସେମାନଙ୍କୁ ସେ ଭାଇ ବୋଲି ସମ୍ବୋଧନ କରିଛନ୍ତି । ଏହାର ସମୀକ୍ଷା କରି ଅଧ୍ୟାପକ ଶ୍ରୀ ପଠାଣୀ ପଟ୍ଟନାୟକ ଲେଖିଛନ୍ତି---
"+ + + ପ୍ରଭୃତି କବିତା ସଂକଳନରେ ସ୍ୱାଧୀନତା ଆନ୍ଦୋଳନ କାଳୀନ ବିଦ୍ରୋହର ଝଙ୍କାର କେବଳ ପ୍ରତିଧ୍ୱନିତ ହୁଏ ନାହିଁ । ନାନା ସଂସ୍କାର ଧର୍ମୀ

ଅନୁଚନ୍ତାର ମଧ୍ୟ ସୂଚନା ମିଳିଥାଏ !'' ( ୪୧ )

ଅଛୁଆଁ କିଆଁ ବୋଲୁଛୁ, ସେ ପଗ ଆମରି ଭାଇ
ପଟେ ଯେ ଆମରି ଏକା ଧରମରେ ଥାଇ ।''

ଅପ୍ରାପ୍ତ ବୟସ୍କା ବାଳିକାର ବିବାହ ଓ ବିଧବା ଜନିତ ଦୁଃଖରେ ଦୁଃଖିତ ହୋଇ ସେ ଲେଖିଛନ୍ତି—

''କେତେ ଯେ ବିଧବା ନାରୀ କେତେ ଯେ ଗରଭଧାରୀ
ମନ୍ତ୍ରେ ମାରନ୍ତି ଶିଶୁ ସମାଜ ଭୟେ ବା ଲଜ
ମୁରତି ବିଧବା ପ୍ରାଣ କି ଦୁଃଖ ଭୋଗେ କି ଜାଣ
ଗଣିବ ଯେବେ ତାହାକୁ ସମାଜମୀତିକୁ ମାଜ ।''

ଉପରୋକ୍ତ ଦୁଇଟି ଗୀତରେ ପତିତ ମାନଙ୍କ ପ୍ରତି କବିଙ୍କର ଯେଉଁ ସହୃଦୟତା ପ୍ରକାଶ ପାଇଛି, ତାହା ଓଡ଼ିଆ କବିତା ଜଗତରେ ଏକ ସ୍ମରଣୀୟ ଭୂମିକା ଗ୍ରହଣ କରିଛି ( ୪୨ ) ।

''କଲି ଭାଙ୍ଗିଲି ଆମ ବେଳକୁ
ସାରଦେଲି କରି ପଙ୍ଗୁ କାଳ କାଳକୁ,
ଲୁଗାକଲ ବସି ଦେଶୀ ବା ବିଦେଶୀ
ମାରଦେଲି ଆମ ତନ୍ତ୍ରୀ କୁଳକୁ ।''

ଏହି ସବୁ ଗୀତି କବିତା ଗୁଡ଼ିକରେ ଜୀବନ କଦେଶ ନିଚ୍ଛକ ଭାବରେ ପ୍ରକାଶ ପାଇଛି ଏବଂ ସେ ସବୁ କ୍ଲିତ ପ୍ରଗତି ସାହିତ୍ୟରେ କପରି ଗର୍ଭିତ ହୋଇ ପାରିଛି ତାହା ସମ୍ଭାଲୋଚକ ଶ୍ରୀ ପଠାଣି ପଟ୍ଟନାୟକ ଉଲ୍ଲେଖ କରିଛନ୍ତି—''ଯେଉଁ କବିତାରେ ଜାତୀୟ ଆକାଙ୍‌କ୍ଷା ରୂପାୟିତ ହୁଏ ତାହା ହେଉଛି ଖାଣ୍ଟି କବିତା । ଯାହା ଜୀବନକୁ ଅନୁପ୍ରେରିତ କରେ ଏବଂ ଅନ୍ଧକାର ରାଜପଥରେ ଆଲୋକର ବର୍ତ୍ତିକା ଜାଳି ଥାଏ, ତାହା ହେଉଛି ପ୍ରକୃତ ପ୍ରଗତି ଧର୍ମୀ ସାହିତ୍ୟ । ଏହି ବିଚାରରେ ଆଲୋଚନା କଲେ ବାଞ୍ଛାନିଧି କବିତା ଅତ୍ୟନ୍ତ ଜୀବନଧର୍ମୀ ଓ ଜବୋତ୍ତୀର୍ଣ୍ଣ ମନେ ହେଉଥାଏ ।''(୪୩)

(୪୧) ଓଡ଼ିଆ ସାହିତ୍ୟର ଇତିହାସ- ଶ୍ରୀ ପଠାଣି ପଟ୍ଟନାୟକ-ନାଳନ୍ଦା-କଟକ-୨-୧୯୭୮-ପୃ: ୪୭୪ ।

(୪୨) ଆଧୁନିକ ଓଡ଼ିଆ କବିତାରେ ପତିତ ମାନଙ୍କ ପ୍ରତି ସହୃଦୟତା-ଡକ୍‌ଟର ଜାନକୀ ବଲ୍ଲଭ ମହାନ୍ତି-ଝଙ୍କାର-୧୯୭୩-ସେପ୍‌ଟେମ୍ବର-ପୃ: ୫୧୯ ।

(୪୩) ସାହିତ୍ୟରେ ଜାତୀୟତା ଧର୍ମ ଅନୁଚନ୍ତା ଓ ବାଞ୍ଛାନିଧି-(ଜାତୀୟ କବି ଅଭିନନ୍ଦନ) -୧୯୭୩-ପୃ-୪୩ ।

ଧନ ଜନ ଯୁକ୍ତା ଭାରତ ମାତା
　　　　　　　　ନମୋ ନମୋ ଜନନୀ ଶ୍ରୀଚରଣେ,
ସନ୍ତାନ ବନ୍ଦେ ସେମାନନ୍ଦେ
　　　　　　ଯା ଚଉ କରୁଣା ମା ଶରଣେ । ଧ୍ରୁବ ।
ବନ୍ଧନେ ଅନ୍ତର କାତର ଅତ
　　　　　　　　ମୁକତ କାମେ ଆମେ ଦେଇଛୁ ମତ
　　　　　　ଗୃହେଁ ସନ୍ତାନ ସନ୍ତତ ସଂଗ୍ରାମେ । ୧ ।
ସଂଗୀତେ ଇଂଗୀତେ ବିଷାଦ ଭ୍ରସ୍ତା
　　　　　　　　ଯାଉ ଗୋ ଦୂରେ ଗୁର ପରାଣ ମାସ୍ଥା
ପୁଲକିତ ଚଢ଼େ ସମରେ ପଶୁଁ
　　　　　　　　ତବ ମନ୍ତରେ ହିଂସା ହୃଦୁବିନାଶୁ
ଭେଦ ଭୁଙ୍ଗ ଗିରି ସିନ୍ଧୁ ସନ୍ତରଣେ
　　　　　　ନମୋ ନମୋ ଜନନୀ ଶ୍ରୀଚରଣେ । ୨ ।

'ଆଚ୍ଛା, ଗୋଲଟେବୁଲ୍ ପାଲି ଲଗିଲରେ'- ସଂଗୀତଟି ଓଡ଼ିଶାର ପୁରପଲ୍ଲୀରେ ଏପରି ଭାବରେ ସୁପ୍ରସାରିତ ହୋଇ ସାରିଥିଲା ଯେ କାନ୍ତ କବି ଲକ୍ଷ୍ମୀକାନ୍ତ ମହାପାତ୍ର 'ଚଟକ ଚନ୍ଦ୍ରାହାସ ଚମ୍ପୂ'ର ଆଠ ନମ୍ବର ଗୀତଟିକୁ ଏହି ଛନ୍ଦରେ ଲେଖିଥିଲେ । ଗୀତଟି ହେଲା—

"ଭଲି ଭୋଟ ତାମସା ଲଗିଲରେ
ନୂଆ ସ୍ୱାଧୀନତା ଦେଶେ ଜାଗିଲରେ—"

ଏହି ଗୀତର ପ୍ରାରମ୍ଭରେ କାନ୍ତକବି ସ୍ପଷ୍ଟ ଉଲ୍ଲେଖ କରିଛନ୍ତି – (ଆଚ୍ଛା, ଗୋଲ-ଟେବୁଲ ପାଲି ଲଗିଲରେ—ହିଳୁକରଣରେ—) ଏଥିରୁ ସେତେବେଳେ ଏହି ଗୀତଟିର ଜନପ୍ରିୟତା ସହଜରେ ଅନୁମେୟ ( ୪୪ ) ।

ମହାତ୍ମାଗାନ୍ଧି ଗୋରୁକୁ ମାତାରୂପେ ଗ୍ରହଣ କରିଥିଲେ । ସେ 'ହରିଜନ'ରେ ଲେଖିଥିଲେ—" Mother cow is in many ways better than the mother who gave us birth." (୧୯୪୦/ସେପ୍‌ଟେମ୍ବର/୧୫ତାରିଖ) ଗୋଜାତି ପ୍ରତି ଗୋପବନ୍ଧୁଙ୍କର ଭାରି ଶ୍ରଦ୍ଧା-ଥିଲା । ତେଣୁ ସେ ତାଙ୍କର ସେବା

(୪୪) କାନ୍ତ ସାହିତ୍ୟ ମାଳା- (୧ମ ଭାଗ ) ଓଡ଼ିଶା ବୁକ୍ ଏମ୍ପୋରିୟମ୍- କଟକ-୨
୧୯୬୪- ପୃ. ୨୫୬ ।

କରୁଥିଲେ । ଗୋରୁଙ୍କୁ ଆଘାତ କଲେ, ସେ ନିଜେ ଆଘାତ ପାଉଥିଲେ । ୧୯୨୨ ମସିହାରେ ସେ ଯେତେବେଳେ କାରାଗାରରେ ଥିଲେ, ସେତେବେଳେ 'ଗୋ-ମହାତ୍ମ୍ୟ' ରଚନା ଆରମ୍ଭ କରିଥିଲେ । ଏହା 'ଭାଗବତ'ର ନବାକ୍ଷରୀ ବୃତ୍ତରେ ରଚିତ । ସେ ଏଥିରେ ଲେଖିଛନ୍ତି—

''ଗୋ ସେବା ସର୍ବ ଧର୍ମ ସାର ।
ଏହା ବୁଝିଲେ ସର୍ବ ନର ॥
ହୋଇବ ଏ ସଂସାର ସ୍ୱର୍ଗ ।
ଲଭିବେ ଲୋକେ ଅପବର୍ଗ ॥ '

ଗାନ୍ଧୀଜୀଙ୍କ ମଧ୍ୟ ଦେଶ ତଥା ସମାଜ ପାଇଁ ଗୋ-ସେବା ଯେ ନିହାତି ଆବଶ୍ୟକ, ତାହା ତାଙ୍କ ରଚନା ମଧ୍ୟରେ ଉଲ୍ଲେଖ କରିଛନ୍ତି— ଗୋଷ୍ଠାଷ୍ଟମୀ ଉପଲକ୍ଷେ ଅନୁଷ୍ଠିତ ବଭିନ୍ନ ଉତ୍ସବରେ ଲେଖିଛନ୍ତି—

''ଦେଖି ନ ଦେଖୁଛ ଭାଇ ଗୋ-ଜାତି ଦୁଃଖ ଦଶାକୁ
ମାନବ-ଜୀବନ ଧନ ଉପକାରୀ ଭରସାକୁ ॥

\+ \+ \+ ×

ଯାର ପ୍ରେମ ରୂପେ ପୂର
ଦେବତା ରହନ୍ତି ବହୁତ
ତା'ର ପୂଜା ଆରାଧନା ଶୁଭ ଦିବସ ନିଶାକୁ ।''

(୧୯୩୨/ନଭେମ୍ବର ୫)

ପୁଣି ସେ ଲେଖିଛନ୍ତି—

''ମହା ଉପକାରୀ ଯେ ପ୍ରାଣୀ ଜଗତେ
ସେ ପ୍ରାଣ ବିନାଶେ ବିନାଶ ଭାରତେ
ସେ ଜାତି କ୍ରନ୍ଦନ ଖର ଶ୍ୱାସ ବାଣ
ଦେଉଛି ଦେଶକୁ ବେଦନା ।''

ଭଜନ

ଭଜନର ସଂଖ୍ୟା ଅଳ୍ପ ହେଲେ ମଧ୍ୟ ଏପରି ଭଜନରେ ଏକ ବିଶେଷତ୍ୱ ରହିଛି, ଯାହାକି ଅନ୍ୟତ୍ର ତାହା ବିରଳ । ତାହା ହେଲା—ଭଜନ ମଧ୍ୟରେ ଦେଶାତ୍ମବୋଧର ସ୍ପର୍ଶ । ଈଶ୍ୱରଙ୍କ ପ୍ରତି ଭକ୍ତି ମଧ୍ୟରେ ଦେଶଭକ୍ତି ତାଙ୍କ ଠାରେ

ଓତପ୍ରୋତଃ ଭାବରେ ଜଡ଼ିତ ହୋଇ ଯାଇଛି । ଦୃଷ୍ଟାନ୍ତ ସ୍ୱରୂପ—

"(ହେ) ଦୀନବନ୍ଧୁ, କୃପାସିନ୍ଧୁ, କୃପା ଊଣା କାହିଁକି ?
ଭାସିଲା ଭାରତ ଆକୂଳ ସାଗରେ ଯାଉଛି ।
ଦେଉଥିଲ ହେ ଯାହାକୁ କର୍ଣ୍ଣାଧାର ପାଇଁ କି,
ହରି ନେଲ, ଧରି ତାଙ୍କୁ କି ଉପାୟ ତହିଁକି ।"

× + + +

ହଅ ସେହି ଜ୍ଞାନ ଧ୍ୟାନ, ମାନଦାନ ପ୍ରୀତିକି
ମାଗୁଛି ସେ ଶକ୍ତି ସଦା ଶୁଭୁ ନାହିଁ ଶ୍ରୁତିକି ?"

ବିଭିନ୍ନ ଅବକାଶରେ ରଚିତ ଗୀତ କବିତା—

ବିଭିନ୍ନ ସଭା, ସମ୍ମିଳନୀ, ପର୍ବ ଆଦିର ଉପଲକ୍ଷେ ସେ ବହୁ ଗୀତ କବିତା ରଚନା କରିଥିଲେ । ଏ ବିଷୟରେ ପୂର୍ବରୁ ଉଲ୍ଲେଖ କରା ଯାଇଛି । ବିଶେଷତଃ ବିଶିଷ୍ଟ ବ୍ୟକ୍ତିଙ୍କ ମୃତ୍ୟୁବାସରେ ବା ଜନ୍ମବାସରେ କବିତା ଗୁଡ଼ିକ ଅତି ହୃଦୟଗ୍ରାହୀ ।

ଏହି ପ୍ରସଙ୍ଗରେ ତାଙ୍କ ରଚିତ ଏହି ଥିଏଟର ପାର୍ଟି ନିମିତ୍ତ ଉଦ୍ଦିଷ୍ଟ ବହୁ ଓଡ଼ିଶୀ ଆଦି ସଂଗୀତ ମଧ୍ୟ ବିଗ୍ରହ୍ୟ । ଥିଏଟରରେ ନୃତ୍ୟ ଛନ୍ଦରେ ସଂଗୀତ ବୋଲିବା ପାଇଁ ସଂଗୀତ ଆବଶ୍ୟକ ପଡ଼େ । ତେଣୁ, ସେ ନିଜେ ମଧ୍ୟ ରଚନା କରିଥିଲେ । ସେଥିରୁ କିଛି ନିର୍ବାଚିତ ଅଂଶ ନମୁନା ସ୍ୱରୂପ ନିମ୍ନରେ ଦିଆଗଲା ।

(୧) "ଗୃହଁ ସଜନୀ ଆଜି ରଜନୀ ସରଗ ଶିରୀ ସୁଷମା ସାଜେ
ମଧୁ ଯାମିନୀ ବଧୂ ଗୃହିନୀ ବିରହୀ ପ୍ରାଣେ କି ସୁର ବାଜେ ।"

( ଅପ୍ରକାଶିତ )

(୨) "କାହା ପ୍ରେମେ ହେଲୁ ଲୋ ବାଇ ସଙ୍ଗିନୀ କହ,
ସାରିଲୁ ସାରିଲୁ ସବୁ ଲଜମାନ ତୁହ
କାହୁରୁ ଲପନ ଦେଖି ତୁ ସପନ
କାହା ପ୍ରେମ ତରଣୀରେ ଦେଇ ତୁ ପ୍ରାଣ ଭସାଇ ।"

( ଅପ୍ରକାଶିତ )

(୩) "କୁଞ୍ଜବନେ, କିଏ ସେ ଗୋ ଗୃହଁ । ସଜନୀ ନବନୀତ ମୂରତି

ବାମେ ଗୋ ବାମା ନବ କିଶୋରୀ
କାଞ୍ଚନ ଗୋରୀ ଶୋହେ କି ଶିରୀ--- ”

( ଅପ୍ରକାଶିତ )

(୪) “ସୁନ୍ଦର ମୁଖ ବନୋଦଧୀ ନାଚେ ଥେଇ ଥେଇ
ନଟବର ନାଗର ଶ୍ୟାମ,
କଳା ମୁଖ ମୟୂଖ କଳା ଭ୍ରମର କ୍ଷଣି
ଗାଇ ଗାଇ ସୁମଧୁର ଗାନ ।” (ଅପ୍ରକାଶିତ )

(୫) “ଭେଟିଲୁ କି ବାଟେ ମନ୍ଦର ଧର୍‌କୁ ସଖି
କେବି ବସିଥିଲ କି ସେ ଯମୁନାର ଘାଟେ
କଦମ୍ବ ମୂଳେ ଉଭା
ଦେଖିଲୁ କି ଶୋଭା ଗୋ
ଭାଙ୍ଗିଦେଲ କି ଗୋ ଧୂର୍ତ୍ତ ତୋ ଦମ୍ଭ କବାଟେ ।

( ଅପ୍ରକାଶିତ )

## ଅନୁବାଦ ସଙ୍ଗୀତ

ତାଙ୍କ ସାହିତ୍ୟକୃତ ମଧ୍ୟରେ ଅନୁବାଦ ସଂଗୀତ ମଧ୍ୟ ଦେଖିବାକୁ ମିଳେ । ବଙ୍ଗଳା ଭାଷାରୁ ଏ ଗୁଡ଼ିକ ଅନୁଦିତ ହୋଇଛି । ଏଥିରୁ ତାଙ୍କର ବହୁମୁଖୀ ପ୍ରତିଭାର ସମ୍ୟକ୍ ପରିଚୟ ମିଳେ । ଏଥିରୁ ଦୃଷ୍ଟାନ୍ତ ଦୁଇଟିରୁ କିୟଦାଂଶ ନିମ୍ନରେ ନମୁନା ସ୍ୱରୂପ ଦିଆଗଲା—

(୧) “ନିକାଞ୍ଚନେ ଆସି ଦ୍ୱାରେ ଯାଏ ହାତମାର
କାଞ୍ଚନ କୁମାରୀ [କିଏ]
ସତ୍ୟ ଅବା ମିଥ୍ୟା କେହେ ନାହିଁ କଣ୍ଠେ ଗାଏ
ରତ ଅବା ନୟତ ବା ଶୂନ୍ୟ ପଥେ ଧାଏଁ
ସ୍ୱପ୍ନବଶେ ସଂଗୀତ ମୁଁ ଶୁଣେ କାନପାର ।

[ ଅପ୍ରକାଶିତ ]

(୨) “ଏ କି ବାଜେ ବିପିନେ ବଂଶୀ ବଜନ ସତ ଆସିବେ ଗୋ,
ଆସିବେ ଗୋ ମୋ ପରାଣ ସଂଗୀ ମୋହନ ଭଙ୍ଗୀ ଭାଷିବେ ଗୋ ।
ଶୁଖିଯାଏ ଯେବେ ତଟିନୀ ବାର
ଗ୍ରୀଷମ ତାପେ ଜୀବନ ଭାର

ଏ ମୋର ଚନ୍ଦ୍ର ଆତୁର ଆଖି
ଶୁଖିବ କି ନୀର ଶୁଖିବ ଗୋ ।"
[ଅପ୍ରକାଶିତ]

'ବାଞ୍ଛାନିଧି ପଦ୍ୟାବଳୀ'ରେ ସର୍ବମୋଟ ୧୪୮ଟି ସଂଗୀତ ପ୍ରକାଶ ପାଇଛି । ଏତଦ୍ ବ୍ୟତୀତ ବହୁ ଅପ୍ରକାଶିତ ସଂଗୀତ ରହିଛି । ସେ ଗୁଡିକ ଉଦ୍ଧାର କରିବା ଆଜିର ପ୍ରଧାନ କର୍ତ୍ତବ୍ୟ । ତାଙ୍କ ଜନ୍ମସ୍ଥାନ ଇରମରେ ଏକ ସାଂସ୍କୃତିକ ଅନୁଷ୍ଠାନ ବାଞ୍ଛାନିଧି ସ୍ମୃତିକ ନାଟ୍ୟ ନିକେତନ ଆନୁକୂଲ୍ୟରେ ଏହି ସଂଗ୍ରହ କାର୍ଯ୍ୟ ଚାଲିଛି ।

ନାଟକ

କବି ବାଞ୍ଛାନିଧି କେବଳ ଜଣେ କବି ବା ସଂଗୀତଜ୍ଞ ନ ଥିଲେ, ଜଣେ ନାଟ୍ୟକାର ମଧ୍ୟ ଥିଲେ । ତାଙ୍କୁ ଜଣେ Dramatist କହିବା ପରିବର୍ତ୍ତେ Play Writer କହିବା, ଅଧିକ ଯୁକ୍ତି ସଂଗତ । କାରଣ ସେ ତାଙ୍କର ଜନ୍ମଭୂମି ଇରମସ୍ଥ 'ରାଧାମୋହନ ଥିଏଟର ପାର୍ଟି' ମଇତାପୁରସ୍ଥ 'କୃଷ୍ଣଚନ୍ଦ୍ର ଥିଏଟର ପାର୍ଟି', 'ଦି ଉତ୍କଳ ନାଟ୍ୟ-ନିକେତନ', ଏବଂ 'ଦି ନିଉ ଓଡ଼ିଶା ଥିଏଟର୍ସ' ସହିତ ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ଥିଲେ ।

ତାଙ୍କ ରଚିତ କେବଳ ଗୋଟିଏ ନାଟକର ସନ୍ଧାନ ମିଳୁଛି । ଏହି ନାଟକର ନାମ-- 'ପଲ୍ଲୀଚିତ୍ର' । ଯଦି ବା ଅନ୍ୟ ନାଟକ ରଚନା କରିଥାନ୍ତି, ତେବେ ତାହା ଦୁଷ୍ପ୍ରାପ୍ୟ । ଏହି 'ପଲ୍ଲୀଚିତ୍ର' ନାଟକଟି ପୁଣି ସଂପୂର୍ଣ୍ଣ ଭାବରେ ଉଦ୍ଧାର କରାଯାଇ ପାରି ନାହିଁ । କାରଣ ଏହି ନାଟକଟି ବୋଧହୁଏ ଏକାଧିକ ଖାତାରେ ଲେଖା ହୋଇଥିଲା ଏବଂ କେବଳ ଖଣ୍ଡିଏ ବହୁ କଷ୍ଟରେ ମୋର ହସ୍ତଗତ ହୋଇଛି । ନାଟକରେ ଏକ ଅଂଶକୁ କେନ୍ଦ୍ର କରି ନାଟକଟି ଉପରେ ଆଲୋକପାତ କରିବା ଅନୁଚିତ ବୋଲି ସ୍ଥିର ହୋଇଥିଲେ ମଧ୍ୟ 'ବାଞ୍ଛାନିଧି-ପ୍ରତିଭା'ର ଅନ୍ୟ ଏକ ଦିଗର ପରିଚୟ ପାଇଁ ଏଥିରେ ତା'ର ସାମାନ୍ୟ ସୂଚନା ଦିଆଗଲା । ଏହି ଅସଂପୂର୍ଣ୍ଣ ନାଟକଟି 'ପରିଶିଷ୍ଟ'ରେ ପ୍ରଦାନ କରାଯାଇଛି ।

ଏହାର ରଚନାକାଳ ସମ୍ବନ୍ଧରେ ସେପରି କିଛି ପ୍ରମାଣ ନାହିଁ । ପାଣ୍ଡୁଲିପିରେ ଏହାର ରଚନାକାଳ ସଂପର୍କରେ ମଧ୍ୟ ସୂଚନା ଦିଆଯାଇ ନାହିଁ । କିନ୍ତୁ ଅନୁମାନ କରାଯାଏ, ଏହି ନାଟକଟି ଖୁବ୍ ସମ୍ଭବ ୧୯୨୧ ମସିହାରୁ ୧୯୩୧ ମସିହା ମଧ୍ୟରେ ରଚିତ । ଏହାର ପ୍ରମାଣ ସ୍ୱରୂପ ନାଟକଟିର ବିଷୟବସ୍ତୁ ତଥା ସଂଳାପକୁ ଗ୍ରହଣ କରାଯାଇପାରେ । ଏଥିରେ ୧୯୨୧ ମସିହାରୁ ୧୯୩୧ ମସିହା ମଧ୍ୟରେ ଚିତ୍ର ପ୍ରଦାନ କରାଯାଇଛି । ଏପରିକି ପ୍ରଥମ ଅଙ୍କର ତୃତୀୟ ଦୃଶ୍ୟରେ ଜମିଦାର ଚୌଧୁରୀ

ବୀର ଭଦ୍ରାଗ୍ରଏ ବୈଷ୍ଣବଞ୍ଜନ ତାଙ୍କର ରାଜବଲ୍ଲଭ ମହାପାତ୍ରଙ୍କ କଥା ପ୍ରସଙ୍ଗରେ କହିଥିଲେ-- "ସ୍ୱରାଜ୍ୟ ହେବ ବୋଲି ଯାହା କହୁଛନ୍ତି, ଏହା ଅସମ୍ଭବ ।" ପୁଣି ଠିକ୍ ତାହା ପରେ ପରେ ସେ କହୁଛନ୍ତି— "କ ଡରିବ ବା କିପରି ? ତା'ର [ବ୍ରିଟିଶ ସରକାର ] ଯେତେ ତୋପ, ଗୁଳି, ବାରୁଦ, କମାଣ ଅଛି, ମନେକଲେ ଏକାଦିନକେ ଏ ଜ୍ଞାତି ଟା ଗୋଟି, ଜାଳିଦେବ, ଏଥିରେ ମଣିଷ ଡରିବ ନାହିଁ କିପରି ମହାପାତ୍ରେ ?" ଏଣୁ ଏହା ସ୍ୱାଧୀନତା ଆନ୍ଦୋଳନ ସମୟରେ ରଚିତ ବୋଲି ବିଶ୍ୱାସ କରାଯାଏ ।

ପୁରପଲ୍ଲୀରେ ଧନୀକ ଓ ଦରିଦ୍ର ମଧ୍ୟରେ ଶ୍ରେଣୀ ସଂଘର୍ଷ, ଶାସକର ଶାସିତ ଉପରେ ନିଷ୍ଠୁର ଅତ୍ୟାଚାର, ସାଧାରଣ ପଲ୍ଲୀର ଦରିଦ୍ର ପ୍ରଜାର ଆର୍ଥିକ ଦୁରବସ୍ଥା ଆଦିର ସୂକ୍ଷ୍ମ ଚିତ୍ର ହେଲା ଏହି ନାଟକର ପ୍ରତିପାଦ୍ୟ ବିଷୟ । କିନ୍ତୁ ଏଥିରେ ଲକ୍ଷ୍ୟ କରିବାର କଥା ହେଲା— ପରୋକ୍ଷ ଭାବରେ କିପରି ଇଂରେଜ ଶାସକ ଗୋଷ୍ଠୀ ନିର୍ମମ ଅତ୍ୟାଚାର କରୁଥିଲେ । ବୈଷ୍ଣ ଗଞ୍ଜନ ପିଆଦା ହୋସେନ ଜରିଆରେ ଗ୍ରାମର ଜଣେ ଦରିଦ୍ର କୃଷୀ ଗ୍ରାମ ନାୟକ ଉପରେ ବେଠିଆ ଖଟିବାକୁ ନ ଆସିବାରୁ ତାକୁ ବେଧଡ଼କ ମାଡ଼ କରିଛନ୍ତି । ଏପରିକି ଅମାର ଘର ପଟସ୍ତରେ ଖୁଣ୍ଟରେ ବାନ୍ଧିରଖି ଭୀଷଣ ମାଡ଼ ଦେଇଛନ୍ତି ।

ଚରିତ୍ର ଗୁଡ଼ିକ ପୁରପଲ୍ଲୀର ଜଳବାୟୁରେ ବଢ଼ି ଆସିଛନ୍ତି । ସେ ଗୁଡ଼ିକ ଯେପରି ବାସ୍ତବ, ସେହିପରି ଜୀବନ୍ତ ମଧ୍ୟ । ଜମିଦାର ଶ୍ରେଷ୍ଠ ବୀରଭଦ୍ରାଗ୍ରଏ ମହାପାତ୍ର ବୈଷ୍ଣବଞ୍ଜନ, ଅତ୍ୟାଚାରିତ ଦରିଦ୍ର ପ୍ରଜା ପଦନ ସାମଲ, ଗ୍ରାମ ନାୟକ, ମୋହନ ଶନିବରାହ, ସାହୁକାର ଓ ଗାଁ ଟାଉଟର ସପନ ରଣା ଆଦି ଚରିତ୍ର ଗୁଡ଼ିକୁ ଏ ପ୍ରସଙ୍ଗରେ ଗ୍ରହଣ କରାଯାଇପାରେ । ଗ୍ରାମ ନାୟକଙ୍କର ବାପା ଗୋଷବାପା ଅମଳରୁ ଯେଉଁ ଜମି ଥିଲା, ତାକୁ ଜମିଦାର ବୈଷ୍ଣ ଗଞ୍ଜନ ନିଜ ନାମରେ କରାଇ ଦେଲେ ଦଖଲ କରିନେଲେ । ଯାହାକି ତା'ର ମୁଣ୍ଡ ଗୁଞ୍ଜିବାକୁ ଗୃହଖଣ୍ଡେ ଘର ଚଳିଥିଲା । ତା' ଉପରୁ ବି ତାଙ୍କର କୁଦୃଷ୍ଟି ଅପସରି ଯାଇ ନ ଥିଲା । ତାଙ୍କ ଉଆସରେ ବେଠି ଖଟିବାକୁ ପିଆଦା ହୋସେନ୍ ହାତରେ ତାକୁ ଡ଼ାକି ଆଣିଛନ୍ତି ଉଆସର ବୈଠକଖାନାକୁ । ଯେତେବେଳେ ସେ ଏଥିରେ ଅସମ୍ମତି ପ୍ରକାଶ କରିଛି, ସେତେବେଳେ ଅମଲା ଭବଗ୍ରାହୀ ଓ ପିଆଦା ହୋସେନଙ୍କୁ ଆଦେଶ ଦେଇଛନ୍ତି, ଅମାର ଘର ପରସ୍ତରେ ତାକୁ ବାନ୍ଧି ପକେଇ ମାରିବାକୁ ଏବଂ ଲଙ୍କା ମରିଚ ଧୂଆଁ ଦେବାକୁ । ଫଳରେ ସେ ମୂର୍ଚ୍ଛା ଯାଇଛି ।

ପୁରପଲ୍ଲୀର ନିଃସ୍ୱ, ଦରିଦ୍ର, ପ୍ରଜମାନଙ୍କ ଉପରେ କେବଳ ଜମିଦାରମାନଙ୍କର ଯେ ନିର୍ମମ ଅତ୍ୟାଚାର ଲାଗି ରହିଥିଲା ତାହା ନୁହେଁ, ମୋହନ ଶନିବରାହଙ୍କ ପରି ସାହୁକାରଙ୍କ କୁଦୃଷ୍ଟି ମଧ୍ୟ ସେମାନଙ୍କ ଉପରେ ଆବଦ୍ଧ ଥିଲା । ଅମାରରେ ଧାନ ଘୂଣ ଖାଇଗଲାଣି, ତଥାପି ଚଢ଼ା ଦରରେ ଧାନବିକ୍ରୀ ନ ହେବାରୁ ସେ ତାକୁ

ସେହିପରି ଅନ୍ଧାରରେ ପକେଇ ରଖିଛନ୍ତି । ଚଣ୍ଡିଗାଁର ପଦନ ସାମଲ ତା' ସ୍ତ୍ରୀର ଶୁଦ୍ଧିକ୍ରିୟା ପାଇଁ ଶନିବଗ୍ରହଙ୍କର ଦ୍ୱାରସ୍ଥ ହୋଇଛି ପଚିଶ ଟଙ୍କା କରଜ ପାଇଁ । ଶନିବଗ୍ରହ ଏପରି ସୁଯୋଗ ପାଇ ତାଙ୍କ ଜମି ପାଟକୁ ଲଗି ସରସ ଜଳଜମିକୁ ବନ୍ଧା ଦେବାକୁ ପ୍ରବର୍ତ୍ତାଇଛନ୍ତି । ଏହା ମଧ୍ୟରେ ଉଦ୍ଦେଶ୍ୟ ଥିଲା—ପଦନ ସାମଲ ଏହି ଟଙ୍କା କଦାପି ପରିଶୋଧ କରିପାରିବ ନାହିଁ । ତେଣୁ ଜଳଜମି ତା'ଙ୍କ ଆୟତ୍ତ ଅଳ୍ପ ଟଙ୍କାରେ ମିଳିଯିବ ।

ପଲ୍ଲୀର ଦରିଦ୍ର ପ୍ରଜାମାନେ ପୁଣି ପୁରାଣ ପଣ୍ଡା ସପନ ରଣାଙ୍କ କବଳରେ ପଡ଼ିଛନ୍ତି । ସପନ ରଣାଙ୍କ ଚରିତ୍ର ସମ୍ବନ୍ଧରେ ଗ୍ରାମବାସୀ ଗଣି ବାରିକର ମନ୍ତବ୍ୟ ମନେ ରଖିବାର କଥା । ସେ ତା'ର ସ୍ୱଗତୋକ୍ତିରେ କହିଛି—"ପୁରାଣ ପଣ୍ଡା ବୋଲି ନାଁ ଡ଼ାକୁଛି । ଉପରକୁ ଏତେ ସାଫ୍, ଭିତରେ ଏତେ ପାପ୍ ।" ସପନ ରଣା ଖବର ରଖନ୍ତି ସାହୁକାର ମୋହନ ଶନିବଗ୍ରହଙ୍କ ପାଖରେ କିଏ କରଜ କରିବ । କେଉଁ ମିଶ୍ରଙ୍କ ଝିଅର ଚାରି ମାସ ଚାଲିଲାଣି ସେ କଥା ବି ଖବର ରଖନ୍ତି । ଗାଁର କିଏ ଅପରାଧ କଲା, ତା'ର ପ୍ରାୟଶ୍ଚିତ୍ତ ଦରକାର ବୋଲି, ପୁରାଣ ବୋଲି ପକେଇ ତିନି ଚାରିଟା ସଂସ୍କୃତ ଶ୍ଳୋକ ଆବୃତ୍ତି କରିପକାନ୍ତି ।

ନାରୀ ଚରିତ୍ର ମଧ୍ୟରେ ଜମିଦାର ଚୌଧୁରୀ ବୀରଭଦ୍ର ରାଏ ମହାପାତ୍ର ବେରିଷ୍ଟର ରଞ୍ଜନଙ୍କ ସ୍ତ୍ରୀ ରମାମଣି ଦେବୀ ସର୍ବାଗ୍ରେ ଦର୍ଶକର ଦୃଷ୍ଟି ଆକର୍ଷଣ କରେ । ଫକୀର ମୋହନଙ୍କ ସାଆନ୍ତାଣୀମାନେ ଯେପରି ଧର୍ମ ପରାୟଣା, ପତିବତ୍ସଳା, ସରଳା, ନାଟ୍ୟକାର ବାଞ୍ଛାନିଧିଙ୍କ ସାଆନ୍ତାଣୀ ମଧ୍ୟ ସେହି ବାଟର ବାଟୋଇ । ସାଆନ୍ତାଣୀ ଉମାମଣି ସ୍ୱାମୀଙ୍କୁ ବୁଝାଇ କହିଛନ୍ତି—"ଭୟ ଦେଖାଇବା ଠାରୁ ଭଲ ପାଇବା ଦ୍ୱାରା ଲୋକଙ୍କୁ ଭଲ ଶାସନ କରାଯାଏ । ପୁରାଣ ତ ପଢ଼ିଛ । ରାମଚନ୍ଦ୍ର, ଯୁଧିଷ୍ଠିର ପ୍ରଭୃତି ରାଜାମାନେ ପ୍ରଜାଙ୍କୁ ପୁଅ ପରି କିପରି ଭଲ ପାଉଥିଲେ ଏବଂ ପ୍ରଜାମାନେ ସେହିପରି ତାଙ୍କୁ ବାପା ମା' ତୁଲ୍ୟ ଜ୍ଞାନ କରୁଥିଲେ । ତାଙ୍କଠାରୁ ଭଲ ଶାସନ କଅଣ ତୁମେ କରିବ ?"

ପୂର୍ଣ୍ଣାଙ୍ଗ ନାଟକଟି ଉଦ୍ଧାର ହୋଇ ନ ଥିବାରୁ କେତେ ଗୁଡ଼ାଏ ଚରିତ୍ର ଲୋକ-ଲୋଚନର ଅନ୍ତରାଳରେ ରହି ଯାଇଛି । ନାଟକର ପ୍ରାରମ୍ଭରେ ଚରିତ୍ର ପରିଚୟ ସମ୍ବନ୍ଧରେ ଯେଉଁ ସୁଦୀର୍ଘ ତାଲିକାଟି ପ୍ରଦତ୍ତ ହୋଇଛି, ସେଥି ମଧ୍ୟରେ କେତୋଟି ଚରିତ୍ର ବିଷୟରେ କିଛି ଜାଣିହୁଏ ନା । ସେମାନେ ହେଲେ ଜମିଦାର ଏବଂ ବେରି-ରଞ୍ଜନଙ୍କ ଜ୍ୟେଷ୍ଠ ପୁତ୍ର ରସିକ, କନିଷ୍ଠ ପୁତ୍ର ନୀଳମଣି, ମହାଜନ ମୋହନ ଶନିବଗ୍ରହଙ୍କ ଜ୍ୟେଷ୍ଠ ପୁତ୍ର ନବୀନ, ଲୋକାଲବୋର୍ଡ ପ୍ରେସିଡେଣ୍ଟଙ୍କ ପୁତ୍ର ସୁଧାଂଶୁ, ଗ୍ରାମର ପୁରାଣ ପଣ୍ଡା, ବାଚସ୍ପତି ମିଶ୍ର, ପୁରୋହିତ ସଦାଶିବ ତ୍ରିପାଠୀ, ଗ୍ରାମବାସୀ ମଇନା, ରସାନନ୍ଦ

ଏବଂ ନାଗ୍ୟ ଚରିତ୍ର ମଧ୍ୟରେ ମହାଜନ ମୋହନ ଓଝାଙ୍କର ଦାସୀ ସାବିତ୍ରୀ ଓ କାଞ୍ଚି ପ୍ରଭୃତି ।

ସଂଳାପ ପାତ୍ରୋପଯୋଗୀ ଓ ବାସ୍ତବ ଧର୍ମୀ । ପୁରପଲ୍ଲୀର ପରିବେଶ, ଚଳଣି, ଅଙ୍ଗର ବ୍ୟବହାର ଆଦି ସଂଳାପ ଏବଂ ନାଟକୀୟ କ୍ରିୟା କଳାପ ମଧ୍ୟରେ ସଂପୂର୍ଣ୍ଣ ଭାବରେ ପରିସ୍ଫୁଟ ହୋଇଛି । ପିଆଦା ହୋସେନଙ୍କ ମୁହଁରେ ଉର୍ଦ୍ଦୁ ମିଶା ଓଡ଼ିଆ ସଂଳାପ ଯେପରି ଉପଭୋଗ୍ୟ ସେହିପରି ଗାଁ । ଗୋହିରର ଧୋବଣୀ ବୁଢ଼ୀର ଅସଂଯତ ସଂଳାପ ସେହିପରି ବାସ୍ତବ ।

ଏହା ଏକ ସାମାଜିକ ସମସ୍ୟା ମୂଳକ ନାଟକ ହେଲେ ମଧ୍ୟ ଦେଶାତ୍ମବୋଧର ପୃଷ୍ଠଭୂମି ଉପରେ ଏହା ପ୍ରତିଷ୍ଠିତ । ବାଞ୍ଛାନିଧିଙ୍କ 'ପଲ୍ଲୀଚିତ୍ର' କେବଳ ଓଡ଼ିଶାର ପୁରପଲ୍ଲୀର ଚିତ୍ର ହୋଇ ରହିନାହିଁ, ଏହା ଶୋକ ଜର୍ଜରିତା ଭାରତ ଜନନୀର ମାନଚିତ୍ର ହୋଇ ଉଠିଛି । ଯେତେବେଳେ ଧ୍ୱଂସପ୍ରାପ୍ତ 'କୋଣାର୍କ' ତାହାର ଶିଳ୍ପ ବୈଭବ ପାଇଁ ଶିଳ୍ପତୀର୍ଥର ଉପାଧି ପାଇ ପାରିଲା, ଯେତେବେଳେ ରାଧାନାଥଙ୍କ ରଚିତ 'ମହାଯାତ୍ରା' ଅସଂପୂର୍ଣ୍ଣ ଥାଇ ମଧ୍ୟ ଓଡ଼ିଆ ସାହିତ୍ୟର ପ୍ରଥମ ମହାକାବ୍ୟର ସମ୍ମାନ ପାଇପାରିଲା, ପୁଣି ଯେତେବେଳେ କାନ୍ତକବିଙ୍କ ଅସଂପୂର୍ଣ୍ଣ ଉପନ୍ୟାସ 'କଣା ମାମୁଁ' ସମସ୍ତଙ୍କର ମାମୁଁ ହୋଇ ପାରିଲା, ସେତେବେଳେ ବାଞ୍ଛାନିଧିଙ୍କର 'ପଲ୍ଲୀଚିତ୍ର' ନାଟକଟିର କିୟଦାଂଶ ଧ୍ୱଂସ ପ୍ରାପ୍ତ ହେଲେ ମଧ୍ୟ ଓଡ଼ିଆ ନାଟ୍ୟ ଜଗତରେ ତାହା ଯେ, ନିଶ୍ଚିତ ଭାବରେ ଏକ ନିର୍ଦ୍ଦିଷ୍ଟ ସ୍ଥାନାଧିକାର କରିପାରିବ, ଏଥିରେ ସନ୍ଦେହ ନାହିଁ ।

(ଗ) ପ୍ରବନ୍ଧ

କବି ବାଞ୍ଛାନିଧିଙ୍କର ଏକ ପ୍ରବନ୍ଧ ମଧ୍ୟ ମିଳିଛି । ଏହି ପ୍ରବନ୍ଧଟି ମଧ୍ୟ ନାଟକ ପରି ଅସଂପୂର୍ଣ୍ଣ ଅବସ୍ଥାରେ ମିଳିଛି । ଏହାର ଅବଶିଷ୍ଟାଂଶ ଧ୍ୱଂସପ୍ରାପ୍ତ ହେଉଥିବା ଦୁର୍ଲଭ । ଏହି ପ୍ରବନ୍ଧଟିର ଶୀର୍ଷକ 'ବନ୍ଧୁତାର ବିଷ' । ଏହାର ବିଶ୍ଳେଷଣ ଭଙ୍ଗୀ ଯେପରି ପ୍ରାଞ୍ଜଳ ସେହିପରି ମଧ୍ୟ ସରଳ । ଦୁର୍ବୋଧ ତଥ୍ୟକୁ ବୁଝାଇ ଦେବା ପାଇଁ ସେ କଥନ ଶୈଳୀକୁ ଗ୍ରହଣ କରିଛନ୍ତି । କେବଳ ସେତିକି ନୁହେଁ, ସ୍ୱମତର ପରିପୁଷ୍ଟି ପାଇଁ ବହୁ ଉଦ୍ଧୃତି ଏବଂ ଦୃଷ୍ଟାନ୍ତର ଅବତାରଣା କରିଛନ୍ତି ।

ପ୍ରବନ୍ଧଟି ପାଠ କରିଲା ପରେ ମନେ ହୁଏ, ଏଥିରେ ଅନୁଭୂତିର ମାତ୍ରା ପୂର୍ଣ୍ଣତଃ ରକ୍ଷିତ ହୋଇଛି । ଅନୁଭୂତି ବା ଅଭିଜ୍ଞତା ପ୍ରବନ୍ଧ କ୍ଷେତ୍ରରେ ଏକ ଗୁରୁତ୍ୱ ପୂର୍ଣ୍ଣ ସ୍ଥାନ ଅଧିକାର କରିବ ସେ । 'ବନ୍ଧୁତା'ର ସଂଜ୍ଞା ନିର୍ଦ୍ଦେଶ କରି ସେ କହିଛନ୍ତି–

"ବନ୍ଧୁତାକୁ ବନ୍ଧୁର ସଂପର୍କ ବୋଲି କହିଲେ ବନ୍ଧୁତାର ମୋଟାମୋଟି ଅର୍ଥ ବୁଝାଯାଏ । ମାତ୍ର ବନ୍ଧୁତାର ଅର୍ଥ ଭିନ୍ନ ଭିନ୍ନ । ସାଧାରଣତଃ ବୈବାହିକ ସମ୍ବନ୍ଧରୁ ଜାତ ସଂପର୍କକୁ ବନ୍ଧୁ ବୋଲି କହିଥାନ୍ତି । ଶଳା, ଭଣଜା, ମାମୁଁ, ଭଣଜା, ପିଉସା ଇତ୍ୟାଦି ବନ୍ଧୁ ନାମରେ ଅଭିହିତ ହୋଇଥାଏ । ଅର୍ଥାତ ରକ୍ତ ସଂପର୍କରେ ଲୋକକୁ ବନ୍ଧୁ କହିଥାନ୍ତି" ।

ସେ ବନ୍ଧୁତାକୁ 'ଆତ୍ମବନ୍ଧୁ' 'ପିତୃବନ୍ଧୁ' ଓ 'ମାତୃବନ୍ଧୁ' ମଧ୍ୟରେ ବିଭାଗ କରି ଏହା ଠାରୁ 'ଆଧ୍ୟାତ୍ମିକ ବନ୍ଧୁତା' ଯେ ଶ୍ରେଷ୍ଠ- ତାହାହିଁ ସେ ତର୍କଣା କରି ଦର୍ଶାଇଛନ୍ତି । ଆଧ୍ୟାତ୍ମିକ ବନ୍ଧୁତା ପ୍ରସଂଗରେ ସେ କହିଛନ୍ତି-"ଭଗବାନ ପରଂବ୍ରହ୍ମ ସହିତ ଯେଉଁ ସଂପର୍କ, ସେ ସଂପର୍କକୁ ଆଧ୍ୟାତ୍ମିକ ବନ୍ଧୁତା ବୁଝାଯାଇ ପାରେ । ଏ ପରମାତ୍ମା ସହିତ ଜୀବାତ୍ମାର ଯେ ସମ୍ବନ୍ଧ ସେ ସମ୍ବନ୍ଧକୁ ଆଧ୍ୟାତ୍ମିକ ବନ୍ଧୁତା ବୁଝାଯାଇ ପାରେ" ।

ସ୍ୱ ଅଭିଜ୍ଞତାରୁ ସେ କହିଛନ୍ତି— " ଉପରୋକ୍ତ ପୁସ୍ତକଗତ ବନ୍ଧୁତାକୁ କଳ୍ପନା ବୋଲି କେହି ଉଡାଇ ଦେଇ ପାରନ୍ତି । ମାତ୍ର ମୋ ଜୀବନରେ ମୁଁ ଯାହା ଅଂଗେ ଲିଭେଇଛି ତାହାକୁ ମୁଁ କାଳ୍ପନିକ ବୋଲି ଭାବିଲି କପରି ? ତାହା ସତ୍ୟ, ଦୃଢ଼ ସତ୍ୟ, ସୂର୍ଯ୍ୟାଲୋକ ପରି ସତ୍ୟ । ଜୀବନ, ଅଗ୍ନି ଓ ବାୟୁ ପରି ସତ୍ୟ" । ପ୍ରକୃତ ବନ୍ଧୁତାର ରୂପରେଖା ପାଠକ ନିକଟରେ ଉପସ୍ଥାପିତ କରିବା ପ୍ରାବନ୍ଧିକ ବାଞ୍ଛାନିଧିଙ୍କର ମୁଖ୍ୟ ଲକ୍ଷ୍ୟ । ବନ୍ଧୁତାକୁ ଦ୍ୱାହି ଦେଇ ଆମେ କପରି ବନ୍ଧୁତା ମଧ୍ୟରେ ବିଷ ଢ଼ାଳିଥାଉଁ, ତାକୁ ଦର୍ଶାଇ ଦେବା ତାଙ୍କର ଉଦ୍ଦେଶ୍ୟ ।

ବହୁ ପୌରାଣିକ ଚରିତ୍ର ଏବଂ ସେକ୍ସପିୟରଙ୍କ ନାଟକର ବିଭିନ୍ନ ଚରିତ୍ରର ଦୃଷ୍ଟାନ୍ତ ଦେଇ ପାଠକର ହୃଦବୋଧ କରିବାକୁ ସେ ବହୁ ଚେଷ୍ଟା କରିଛନ୍ତି । ପରିବେଷଣ ଭଂଗୀର ବିଶ୍ଳେଷଣ ଦେଖିଲେ, ସେ ଯେ କେବଳ ଏହି ଗୋଟିକ ପ୍ରବନ୍ଧ ରଚନା କରିଛନ୍ତି, ମାତ୍ର କାଳସ୍ରୋତରେ ଏ ସମସ୍ତ ଧ୍ୱଂସ ପ୍ରାପ୍ତ ଅଜ୍ଞାତ ଅବସ୍ଥାରେ ରହିଛି । ବାଞ୍ଛାନିଧିଙ୍କର ଏହି ଦିଗଟି ତାଙ୍କର ବହୁ ମୁଖୀ ପ୍ରତିଭାର ଏକ ପ୍ରମାଣ ।

XOX

# ଚତୁର୍ଥ ପରିଚ୍ଛେଦ : ଜୀବନର ଅପରାହ୍ନ

## ॥ ଏକ ॥

### ଜୀବନ-କାବ୍ୟର ଶେଷ ଦୃଶ୍ୟ

୧୯୨୪ ମସିହାରେ ମହାତ୍ମାଗାନ୍ଧି ଯେତେବେଳେ କାରାଦଣ୍ଡ ଭୋଗୁଥିଲେ, ସେତେବେଳେ କଂଗ୍ରେସ୍ ଦୁଇଟି ଗୋଷ୍ଠୀରେ ପରିଣତ ହୋଇଥିଲା । ଗୋଟିଏ ଗୋଷ୍ଠୀ ଗାନ୍ଧିଜୀଙ୍କ ଅସହଯୋଗ ନୀତିକୁ ଅପରିବର୍ତ୍ତିତ ରଖିଥିଲେ । ସେମାନଙ୍କୁ 'ଅପରିବର୍ତ୍ତନ ପନ୍ଥୀ' କୁହାଗଲା । ସେମାନଙ୍କ ମଧ୍ୟରେ ରାଜଗୋପାଳାଚାରୀ ମୁଖ୍ୟ । 'ପରିବର୍ତ୍ତନ ପନ୍ଥୀ' ମଧ୍ୟରେ ଚିତ୍ତରଞ୍ଜନ ଓ ମୋତିଲାଲ ନେହେରୁ ଥିଲେ ମୁଖ୍ୟ । ଏହି 'ଅପରିବର୍ତ୍ତନ ପନ୍ଥୀ' ମାନେ 'ଗାନ୍ଧି ସେବା ସଂଘ' ପ୍ରତିଷ୍ଠା କରିଥିଲେ । ଏହାକୁ ମୁଖ୍ୟତଃ ନିର୍ବାଚନ ରାଜନୀତି ବିରୋଧୀ ଗାନ୍ଧିଜୀଙ୍କ ମୂଳନୀତି ଓ କାର୍ଯ୍ୟକ୍ରମରେ ବିଶ୍ୱାସ କରୁଥିବା କର୍ମୀ ମାନଙ୍କର ଅନୁଷ୍ଠାନ ଥିଲା । ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ ଆଦି 'ଗାନ୍ଧିସେବା ସଂଘ'ର ପରିଚାଳନା କରୁଥିଲେ ।

୧୯୩୮ ମସିହା ମାର୍ଚ୍ଚ ପଚିଶ ତାରିଖରେ ପୁରୀ ଜିଲ୍ଲାର ଡେଲାଙ୍ଗ ନିକଟବର୍ତ୍ତୀ ବେରବୋଇ ଗ୍ରାମରେ 'ଗାନ୍ଧି ସେବା ସଂଘ'ର ପଞ୍ଚଦଶ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଗୋପବନ୍ଧୁ ଚୌଧୁରୀ ଅଭ୍ୟର୍ଥନା ସମିତିର ସଭାପତି ଥିଲେ । ଏଥିରେ ଓଡ଼ିଶା ବାହାରୁ ଓ ଭିତରୁ ପ୍ରାୟ ଏକ ଲକ୍ଷ ନର-ନାରୀ ଯୋଗ ଦେଇଥିଲେ । ଏହି ଅଧିବେଶନରେ ଯୋଗଦେବା ପାଇଁ ବାଞ୍ଛାନିଧି ନିମନ୍ତ୍ରିତ ହୋଇ ଦୁଇଦିନ ପୂର୍ବରୁ ଡେଲାଙ୍ଗ ଅଭିମୂଖେ ଯାତ୍ରା କଲେ । ସେତେବେଳେ ଥିଏଟର ପାର୍ଟି (The New Orissa Theatre) ତାଳଚେରରେ ଅଭିନୟ ପ୍ରଦର୍ଶନ କରୁଥିଲା ।

'ଗାନ୍ଧୀ ସେବା ସଂଘ'ର ଏହି ଅଧିବେଶନରେ ତାଳପତ୍ର, ନଡ଼ିଆ ପତ୍ର ଓ ବାଉଁଶରେ ଗୋଟିଏ ଗ୍ରାମ ସୃଷ୍ଟି ହୋଇଥିଲା । ପ୍ରଦର୍ଶନୀରେ ଓଡ଼ିଶାର ହସ୍ତଶିଳ୍ପ, ଗୋପାଳନ, ଖଦି ଉଥିତ ଶିଳ୍ପ ପ୍ରଭୃତି ବିଷୟରେ ବିଭାଗମାନ ଖୋଲା ଯାଇଥିଲା । ଏଥିରେ ମହାତ୍ମାଗାନ୍ଧି ପଚିଶ ତାରିଖରୁ ଏକତିରିଶ ତାରିଖ ପର୍ଯ୍ୟନ୍ତ ଥିଲେ ଏବଂ ବିଭିନ୍ନ ଅଧିବେଶନରେ ଯୋଗ ଦେଇଥିଲେ । ସର୍ଦ୍ଦାର ବଲ୍ଲଭ ପଟେଲ, ସୀମାନ୍ତ-ଗାନ୍ଧି ଖାଁ ଅବଦୁଲ୍ ଗଫୁର୍ ଖାଁ, ରାଜେନ୍ଦ୍ର ପ୍ରସାଦ, ମୌଲାନା ଆଜାଦ, ପ୍ରଭୃତି ନେତାମାନେ ଏଥିରେ ଯୋଗ ଦେଇଥିଲେ ।

ପ୍ରଦର୍ଶନୀ ଉଦ୍‌ଘାଟନ କରି ଗାନ୍ଧିଜୀ ଓଡ଼ିଶା ସଂପର୍କରେ କହିଥିଲେ-"ଭାରତରେ ଓଡ଼ିଶା ହେଉଛି ମୋର ପ୍ରେମର ଭୂମି ।, ମୁଁ ଭାରତରେ ଓହ୍ଲାଇବା ଦିନୁ ଓଡ଼ିଶାର ଦାରିଦ୍ର୍ୟ ଓ ଦୁର୍ଭିକ୍ଷ ବିଷୟ ଶୁଣିବାରେ ଲାଗିଲି । + + + ମୁଁ ମଧ୍ୟ ବୁଝିଲି ଯେ ମୁଁ ଯଦି ଓଡ଼ିଶାର କିଛି ସେବା କରି ପାରିବି, ତେବେ ଭାରତର ମୁଁ ସେବା କରିବି ।" (୧) ।

ବାପୁଜୀ ନିଜ ଦେହ ପ୍ରତି ନଜର ନଦେଇ ଅଧିବେଶନର ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହିଲେ । ଫଳରେ ସେ ଅସୁସ୍ଥ ହୋଇପଡ଼ିଲେ । ଏହି ଅସୁସ୍ଥତା କ୍ରମେ ଗୁରୁତର ଆକାର ଧାରଣ କଲା । ଡେଲାଙ୍ଗ ଆଶ୍ରମରେ ସହକର୍ମୀ ଶ୍ରୀ ଲକ୍ଷ୍ମୀନାରାୟଣ ପାତ୍ରଙ୍କୁ ଖାଇଲା ବେଳେ ସେ କହିଥିଲେ-"ମୁଁ ଆଉ ବେଶୀଦିନ ବଞ୍ଚିବି ନାହିଁ । ଦେହ ଉପରି ସବୁ ବେଳେ ଅସୁସ୍ଥ ରହୁଛି ।" ସେତେବେଳେ ସେ ପରୀକ୍ଷା ପରିଶ କରିବାରେ ବ୍ୟସ୍ତ ଥିଲେ । ଅଧିବେଶନ ଶେଷରେ ସେ ଯଥା ଶୀଘ୍ର ତାଲଚେରକୁ ଥିଏଟର ପାର୍ଟିର ଅଭିନୟ ସ୍ଥଳକୁ ଫେରି ଆସିଲେ ।

ତାଲଚେରରେ ପହଞ୍ଚିଲା ବେଳକୁ ତାଙ୍କ ମୁହଁ ଓ ଆଖି ରକ୍ତବର୍ଣ୍ଣ ଧାରଣ କରିଥାଏ । ସେ ଗୌରାଙ୍ଗ ବାବୁଙ୍କୁ କହିଲେ—"ଡେଲାଙ୍ଗରେ ଅସମୟରେ ଥଣ୍ଡା ପାଣି ପିଇ ଶର୍ଦ୍ଦୀ ହୋଇଗଲା । ଦେହ ମୁଣ୍ଡ ବଥା ହେଇ ଯାଇଛି । କିଛି ଭଲ ଲାଗୁନାହିଁ । ଅତ୍ୟଧିକ ଶର୍ଦ୍ଦୀ ଯୋଗୁଁ କାନିକରି ଗନ୍ଧ ମୁଁ ଜାଣିପାରୁ ନାହିଁ"। ତାଲଚେର ମେଡ଼ିକାଲ ଅଫିସର ଦେଖି କହିଲେ ଯେ ତାଙ୍କୁ ମିଳିମିଳା ହୋଇଛି। ତେଣୁ ଭୟକରିବାର କିଛି ନାହିଁ । ତା'ପରଦିନ ବାପୁଜୀଙ୍କ ମୁହଁ ତଥା ସମଗ୍ର ଶରୀର-ରେ ବସନ୍ତ ଫୁଟି ପଡ଼ିଲା । ସେ ଭଦ୍ରକ ଚାଲିଆସିବାକୁ ଚାହିଁଲେ । ମାତ୍ର ସେ ଏତେ ଲୋକଙ୍କୁ ଏପରି ଅସହାୟ ଭାବରେ ଛାଡ଼ିଯିବା ଅନୁଚିତ ବୋଲି କହିଲେ । ତଥାପି

(୧) ହରିଜନ—୧୯୩୮ ଏପ୍ରିଲ୍ ୨ ତାରିଖ ।

ଗୁରୁତର ଅବସ୍ଥା ପହଞ୍ଚିବାରୁ ସେ କହିଲେ—"ଗୌରାଙ୍ଗ, ତୁମେ ହତାଶ ହୁଅନାହିଁ । ମୁଁ ଶୀଘ୍ର ଭଲ ହୋଇଗଲେ ତୁମ ସହିତ ଦଶପଲ୍ଲୀ ବା ଯେଉଁଠାରେ ଥିବ ଆସି ପହଞ୍ଚିବି । ଅଉ ଯଦି ମୋ ଭାଗ୍ୟରେ ନଥାଏ, ତେବେ ତୁମ ସହିତ ମୋର ଏହା ଶେଷ ଦେଖା" । ଏହା କହି ସେ କାନ୍ଦି ଉଠିଲେ । ଗୌରାଙ୍ଗ ବାବୁ ମଧ୍ୟ କୋହ ସମ୍ଭରଣ କରି ପାରିଲେ ନାହିଁ । ବାଞ୍ଛାନିଧିଙ୍କ କନିଷ୍ଠ ଭ୍ରାତା ବିବେକାନନ୍ଦ (ଦୁଃଖୀ-ବାବୁ) ତାଙ୍କୁ ନେଇ ଭଦ୍ରକ ଚାଲିଆସିଲେ । ପାସେଞ୍ଜର ଟ୍ରେନ୍‌ରେ ବାଞ୍ଛାନିଧିଙ୍କୁ ନେଇ ବିବେକାନନ୍ଦ ଭଦ୍ରକ (ବଙ୍କ ସାହି) ବସାରେ ପହଞ୍ଚିଲେ ।

ଭଦ୍ରକରେ ଚିକିତ୍ସା ଚାଲିଲା । ଆସିଷ୍ଟାଣ୍ଟ ସର୍ଜନ୍ ଦେବେନ୍ଦ୍ର ବାବୁ ତାଙ୍କର ଚିକିତ୍ସା କଲେ ଏବଂ ପନ୍ଦର ଦିନ ମଧ୍ୟରେ ସେ ଆରୋଗ୍ୟ ଲାଭ କଲେ । ତାଙ୍କ ପାଖକୁ କେହି ଆସିଲେ ସେ ରୋଗଶଯ୍ୟା ନିକଟକୁ ଆସିବାକୁ ସମସ୍ତଙ୍କୁ ବାରଣ କରୁଥିଲେ । କାରଣ, ତାଙ୍କ ଦେହରେ କଳାବସନ୍ତ ଫୁଟି ପଡ଼ିଥିଲା । ସେ କ୍ରମଶଃ ଆରୋଗ୍ୟ ହୋଇ ଆସୁଥିଲେ । ହଠାତ୍ ଦିନେ ଦେଖାଗଲା ଯେ କଳା ବସନ୍ତରେ ତାଙ୍କର ଅସୁସ୍ଥତା ବଢ଼ିଯାଇଛି । କ୍ରମେ ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା । ଏପରିକି ଡ଼ାକ୍ତର ମଧ୍ୟ ଚିକିତ୍ସା କରିବା ପାଇଁ ସମୟ ପାଇ ପାରିଲେ ନାହିଁ ।

ସେ ଥିଲା ୧୯୦୮ ମସିହା ଏପ୍ରିଲ୍ ମାସ ୧୯ ତାରିଖର ଏକ ବିଧବା ଅପରାହ୍ନ । ପ୍ରାୟ ଦୁଇଟାରେ ଭଦ୍ରକ ସ୍ଥିତ ବଙ୍କସାହି ବାସଭବନରେ ବାଞ୍ଛାନିଧି ସ୍ୱର୍ଗାରୋହଣ କଲେ । ପିତା ଚନ୍ଦ୍ରାମଣି ମହାନ୍ତି ସେତେବେଳେ ଇରମରେ ଥାଆନ୍ତି । କନ୍ୟା ବାସନ୍ତୀ ଓ ପୁତ୍ର ଯତୀନ୍ଦ୍ର ମାମୁଁଘର ଅନନ୍ତପୁର (ସୋର)ରେ ରହିଥାନ୍ତି । ମୃତ୍ୟୁ ଶଯ୍ୟା ନିକଟରେ କେବଳ କନିଷ୍ଠ ଭ୍ରାତା ପ୍ରେମାନନ୍ଦ ଥାଆନ୍ତି ।

ତାଙ୍କ ଶବ ସତ୍କାର କରାଗଲା ଭଦ୍ରକର ସାଳନ୍ଦୀ ନଦୀ କୂଳସ୍ଥ ତାଙ୍କର ପ୍ରିୟ କର୍ମକ୍ଷେତ୍ର କଂଗ୍ରେସ୍ ଆଶ୍ରମର ଅନତି ଦୂରରେ । ତାଙ୍କ ମହାପ୍ରୟାଣ ପରଦିନ ଶାଳକ ଶ୍ରୀ ବୃନ୍ଦାବନ ଚନ୍ଦ୍ର ଦାସ କବି ପତ୍ନୀ କବି କନ୍ୟା ଓ କବି ପୁତ୍ରଙ୍କୁ ନେଇ ଭଦ୍ରକରେ ପହଞ୍ଚିଲେ । ମୃତ୍ୟୁର ଦଶ ବାରଦିନ ପରେ ହାଇକୋର୍ଟରେ ଆଇନ୍ ବ୍ୟବସାୟ କରିବା ପାଇଁ ଲାଇସେନ୍‌ସ ପହଞ୍ଚିଥିଲା । ସେଥିପାଇଁ ଆବଶ୍ୟକୀୟ ପୋଷାକ ମଧ୍ୟ ନିର୍ମିତ ହୋଇ ସାରିଥିଲା । ତାଙ୍କର ଏକ ଇଚ୍ଛାଥିଲା—ସେ ଓକିଲ ହେବା ପରେ ପ୍ରତ୍ୟେକ ମୋକଦ୍ଦମା ସମାଧାନ ହୋଇଯିବାକୁ ପ୍ରଥମେ ଉଦ୍ୟମ କରିବେ । ପଲ୍ଲୀର ଦରିଦ୍ର ଲୋକମାନଙ୍କୁ ଅଯଥା ଖର୍ଚ୍ଚାନ୍ତ କରିବାକୁ ଦେବେ ନାହିଁ । କିନ୍ତୁ, ହାୟ, ସେ ଇଚ୍ଛା, କେବଳ ଇଚ୍ଛାରେହିଁ ରହିଗଲା ।

ଜାତୀୟ କବି ବାଞ୍ଛାନିଧିଙ୍କ ବିୟୋଗରେ ସମଗ୍ର ଉତ୍କଳ ମର୍ମାହତ ହୋଇ ପଡ଼ିଲା । କାନ୍ତକବି ପ୍ରତିଷ୍ଠିତ 'ଡ଼ଗର' ପତ୍ରିକାର ସଂପାଦକୀୟ (ପ୍ରଥମ ବର୍ଷ/୨୩ଶ ସଂଖ୍ୟା/

ବୈଶାଖ ପ୍ରଥମାଙ୍କ/ ୧୩୪୪ ସାଲ) ରେ 'ସ୍ମୃତି ପୂଜା' ଶୀର୍ଷକରେ ସେହି ପତ୍ରିକା ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରାଯାଇଥିଲା। ସେଥିରେ ଉଲ୍ଲେଖ ଥିଲା—"ଉତ୍କଳର ଜାତୀୟ କବି, ବାଲେଶ୍ୱରର ଉଦୀୟମାନ ନେତା ଶ୍ରୀଯୁକ୍ତ ବାଞ୍ଛାନିଧି ମହାନ୍ତି ଆଉ ଇହଧାମରେ ନାହାନ୍ତି। ତାଙ୍କର ଜୀବନ୍ତ ଲେଖାବଳୀର ଜ୍ୱଳନ୍ତ ସ୍ଫୁଲିଙ୍ଗ ଆଜିଯାଏ ଲିଭିନାହିଁ—ଏ ଦେଶ ସ୍ୱାଧୀନ ହେଲାଯାଏ ଲିଭିବ ମଧ୍ୟ ନାହିଁ—କିନ୍ତୁ ତାଙ୍କର ଜୀବନ ପ୍ରଦୀପ ଅତି ଅସମୟରେ ନିର୍ବାପିତ ହୋଇ ଯାଇଛି। ଗଣ ସାଧାରଣଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ ତାଙ୍କର ଏହି ଅଗ୍ନିମୟ ଲେଖନୀ ନିଃସୃତ ସଂଗୀତ ସମୂହ ଯୁଗ ଯୁଗକୁ ସଂପଦ ହୋଇ ରହିବ। ସେ ଏକ ଧାରାରେ କବି, ଗାୟକ, ନାଟ୍ୟକାର ଏବଂ ସୁବକ୍ତା ଥିଲେ। ସେ ଆଇନ ବ୍ୟବସାୟରେ ଯୋଗଦେବା ନିମନ୍ତେ ପ୍ରସ୍ତୁତ ହେଉଥିବା ସମୟରେ ବସନ୍ତ ରୋଗରେ ତାଙ୍କର ବିୟୋଗ ଘଟିଲା। ତାଙ୍କର ତିରୋଧାନରେ କେବଳ 'ଡଗର' ଯେ ଜଣେ ତା'ର ଅତି ଆତ୍ମୀୟ ଓ ଶୁଭାକାଂକ୍ଷୀଙ୍କୁ ହରାଇଅଛି, ନାହା ନୁହେଁ, ସମଗ୍ର ଦେଶ ଆଜି ବହୁ ଦିଗରେ ଦରିଦ୍ର ହୋଇଛି। ତାଙ୍କର ସନ୍ତପ୍ତ ପରିବାରଙ୍କୁ 'ଡଗର' ଆଜି ସମବେଦନା ଜଣାଉଛି। ତାଙ୍କର ପବିତ୍ର ସ୍ମୃତିକୁ ନେଇ ଡଗର ଆଜି ତାଙ୍କର ଦର୍ଶିତ ପଥରେ ଗୃଲିବାକୁ ଉଦ୍ୟତ। ହେ, ଅମର ଦେବତା, ସ୍ୱର୍ଗରେ ଥାଇ ତୁମ୍ଭେ ତୁମ୍ଭର ଆଶିଷ ବର୍ଷଣ କର।" ସେହି ମହତ ଆତ୍ମାକୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ତାଙ୍କର ଲୋକପ୍ରିୟ ସଂଗୀତ 'କାହୁଁ ଅଇଲେ ବିଦେଶରୁ ବେପାରୀ' ଗୀତଟି ସେହି ସଂଖ୍ୟା (ପୃଷ୍ଠା-୧୨.) ରେ ପ୍ରକାଶ କରାଯାଇଥିଲା।

'ଈରମ କାହାଣୀ'ର (୧୯୪୬) ରଚୟିତା ଶ୍ରୀ ମଧୁସୂଦନ ଗିରି ମଧ୍ୟ କବି ବାଞ୍ଛାନିଧିଙ୍କ ପ୍ରସଂଗରେ ଲେଖିଥିଲେ—

"ବାଞ୍ଛାନିଧି" ଈରମର ଯୋଗ୍ୟ ସୁତ,
ପରହିତ-ବ୍ରତେ ଥିଲେ ଯେହୁ ରତ।
ନିର୍ମମ କରାଳ କାଳ ଝାମ୍ପି ନେଲା,
ବିସ୍ମୃତି ଗରଭେ ସବୁ ଲୁଗ୍ଇଲା।
ତଥାପି ସେ ସ୍ମୃତି ଲିଭି ନାହିଁ ଆଜି,
ଯେ ସ୍ମୃତି ସ୍ମରଣେ ହୃଦ ପଡ଼େ ଭାଜି।"

(ପୃଷ୍ଠା-୩)

## ॥ ଦୁଇ ॥

ବାଞ୍ଛାନିଧି-ପ୍ରତିଭା

ବାଞ୍ଛାନିଧି ଯେଉଁ କାର୍ଯ୍ୟ କରିବା ପାଇଁ ଚିନ୍ତା ଥିଲେ ବା ନ ଥିଲେ, ସେ ନିଜେ ପ୍ରଥମେ ତାକୁ ଆରମ୍ଭ କରୁଥିଲେ । ଅର୍ଥାତ୍ ସେ ବାକ୍ୟବୀର ନଥିଲେ- କର୍ମବୀର ଥିଲେ । ସେ କବି ହୋଇ କେବଳ 'କାଚ ଘର' ମଧ୍ୟରେ କଳ୍ପନାର ଭିତରେ ଆବଦ୍ଧ ହୋଇ ରହିନାହାନ୍ତି । ସେ ଯେଉଁ ସାହିତ୍ୟ ସୃଷ୍ଟି କରିଛନ୍ତି, ତାହା ସମସ୍ତ ଜାତୀୟ ଜୀବନର ପୂର୍ଣ୍ଣ ପ୍ରତିଫଳନ ହୋଇଛି । ତେଣୁ ଯଥାର୍ଥରେ ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି ଲେଖିଛନ୍ତି--"ଅଳସ ଭାବରେ ସଂଗୀତ ରଚନା ତାଙ୍କର ବୃତ୍ତି ନଥିଲା, ରାଜନୈତିକ କର୍ମୀ ଭାବରେ ଅସହ ଯୋଗୀ ଭାବରେ ସେ ଯାହା ଅନୁଭବ କରିଥିଲେ, ଯେଉଁ ରାଜନୈତିକ ଚିନ୍ତାଧାରାକୁ ସେ, ଆଦର୍ଶ ଭାବରେ ଗ୍ରହଣ କରିଥିଲେ, ତାହାହିଁ ସହଜ, ସରଳ ଭାବରେ ତାହାଙ୍କ ଲେଖନୀରୁ ସଂଗୀତ ଆକାରରେ ଝରି ଯାଇଛି ।" (୨)

ଠିକ୍ ଏହି କଥାରେ ସମ୍ମତ ହୋଇ ଅଧ୍ୟାପକ ପରୀକ୍ଷିତ ନନ୍ଦ ମଧ୍ୟ ତାଙ୍କ ପ୍ରବନ୍ଧରେ ଲେଖିଛନ୍ତି—"ବାଞ୍ଛାନିଧିଙ୍କ ସଂଗୀତ-ଗୁଡ଼ିକ ସ୍ୱଅନୁଭୂତ ସିଦ୍ଧ । ତେଣୁ, ସେ ଗୁଡ଼ିକ ତାତ୍କାଳୀନ ଜନତାର ବିଶ୍ୱସ୍ତ ପ୍ରତିନିଧି, ସମଗ୍ର ପଦ୍ୟାବଳୀଟି ପଢ଼ିଗଲେ ମନେ ହୁଏ, ସେ ଗୋଟିଏ ସମସାମୟିକ ଐତିହାସିକ ଘଟଣା-ଚକ୍ରର ଗନ୍ତାଘର " (୩) । ସେ ଜାତୀୟବାଦୀ କବିତା ରଚନା କରି ନୀରବ ରହିନାହାନ୍ତି । ସେ ଓଡ଼ିଶାର ଜନପଦକୁ ଉଚ୍ଛୁଳି ଆସି ଜନତା ମଧ୍ୟରେ ମିଶିଯାଇ ନେତୃତ୍ୱ ନେଇ ସ୍ୱାଧୀନତାର ବାର୍ତ୍ତା ପ୍ରଚାର କରିବା ସଂଗେ ସଂଗେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଛନ୍ତି । ତେଣୁ, ଉଭୟ 'ସାହିତ୍ୟ' ଓ 'ସମାଜ' ରେ ସେ ଥିଲେ ଜଣେ କ ଚିନ୍ତାବୀର ଓ କର୍ମବୀର । ତାଙ୍କର ଆଶୁ କବିତ୍ୱହିଁ ତାଙ୍କ କବି ପ୍ରତିଭାକୁ ଦ୍ୱିଗୁଣିତ କରିଦେଇଛି ।

ତାଙ୍କ ଗୀତ କବିତା ଗୁଡ଼ିକୁ ଅଧ୍ୟୟନ କରି ସମାଲୋଚକ ଶ୍ରୀ ସୁଧାଂଶୁ ଶେଖର ଗୁପ୍ତ ଏକ ଆଲୋଚନାରେ ଉଲ୍ଲେଖ କରିଛନ୍ତି—"ତାଙ୍କର ଏହି ସଂଗୀତ ଗୁଡ଼ିକରେ

---

(୨) ସ୍ୱାଧୀନତା ସଂଗ୍ରାମର ସ୍ମରଣ କବି-ବାଞ୍ଛାନିଧି-ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି-ରବି ବାସରୀୟ ପ୍ରଜାତନ୍ତ୍ର-ତା ୨୦-୮-୭୨ ରିଖ-ପୃ-୫

(୩) ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ଜାତୀୟ କବି-ଅଧ୍ୟାପକ ପରୀକ୍ଷିତ ନନ୍ଦ-ଅଥଚ-୧୯୭୪-ଅକ୍ଟୋବର- ନଭେମ୍ବର-ପୃ-୨୦

ନାହିଁ ସନ୍ଧ୍ୟାରେ ଶାନ୍ତ ରହସ୍ୟ, ରାତିର ନିସ୍ତବ୍ଧ ଅଶ୍ରୁ କିମ୍ବା ପ୍ରଭାତର କୋମଳ ଗୃହାଣୀ— ସେ ଗୀତିକାରେ ଅଛି ମଧ୍ୟାହ୍ନର ପ୍ରଖର ଜ୍ୱାଳା, ନାହିଁ ବଂଶୀର କାକୁସ୍ୱନ, ବରଂ ଅଛି ଶଙ୍ଖର ଗମ୍ଭୀର ନିର୍ଘୋଷ ।'' (୪)

ବାଞ୍ଛାନିଧି-ପ୍ରତିଭାର ମୂଳ ଆଦର୍ଶ ଥିଲା- ସମାଜବାଦର ପ୍ରତିଷ୍ଠା । ସମାଜରେ ଦରିଦ୍ର ମାନେ ଧନୀ ମାନଙ୍କ ପରି ବଞ୍ଚିବାର ଅଧିକାର ଲାଭ କରନ୍ତୁ । ବିଦେଶୀ ଶାସନ ଓ ଅମଲାତନ୍ତ୍ରର ଧ୍ୱଂସ ସ୍ତୂପ ଉପରେ ଫରଫର ହୋଇ ଉଡ଼ୁ ସମାଜବାଦର ବିଜୟ ଧ୍ୱଜା । ସେ ଥିଲେ ସମୟର ପ୍ରତୀକ । ତେଣୁ ସ୍ୱର୍ଗତଃ ଡକ୍ଟର ହରେକୃଷ୍ଣ ମହତାବ ଯଥାର୍ଥରେ ଲେଖିଛନ୍ତି--"ସମୟର ପ୍ରତୀକ ଥିଲେ-କବି ବାଞ୍ଛାନିଧି । ଜନତାର ଭାବରେ ରୂପ ଦେଇ ସେ ସଂଗୀତ ରଚନା କରିଥିଲେ । ସାର୍ଥକ କବି ବାଞ୍ଛାନିଧି ଇତିହାସରେ ଅମର ହୋଇ ରହିବେ'' (୫) । ଏହି କବିଙ୍କ ଅମର କବି ପ୍ରତିଭା ଓଡ଼ିଆ ସାହିତ୍ୟର ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିଥିବ ଭବିଷ୍ୟତର ବଂଶଧର ମାନଙ୍କ ପାଇଁ(୬) ।

ପରିଶେଷରେ ସେହି ମହତ୍ ଆତ୍ମା, ଚିନ୍ତାବୀର, କର୍ମବୀର, ଜାତୀୟ କବି ସ୍ୱର୍ଗତ ବାଞ୍ଛାନିଧି ମହାନ୍ତିଙ୍କୁ ଗଭୀର ଭକ୍ତିର ସହିତ ସ୍ମରଣ କରି ତାଙ୍କର ରଚିତ କବିତାରେ ତାଙ୍କୁଇ ପ୍ରଣତି ଜଣାଉଛି--

"ତବ ଆସନ ତଳେ ଶିରଟି ମୋର ଯାଉଛି ଲୋଟି--

+ + + +

ପୁଲକ ନୀର ନୟନୁ ବହି
ଦେଉଛି ହେ ତବ ପଦ ଯୁଗକୁ ଧୋଇ
ସେହି ନୀରେ ସେ ପଯ୍ୟରୁ ଖସି ମୋ ବକ୍ଷେ ରହି,
ସୁମନ ଗୋଟି କବିତା ଫୁଟି ।

—X—

(୪) ବାଲେଶ୍ୱର ଜିଲ୍ଲାର ସାରସ୍ୱତ ଐତିହ୍ୟ-ବାଲେଶ୍ୱର ଜିଲ୍ଲା ଲେଖକ ସମ୍ମିଳନୀ-ଭଦ୍ରକ- ୧୯୭୯-ପୃ-୭୮

(୫) କବି ବାଞ୍ଛାନିଧି- ଜାତୀୟ କବି ଅଭିନନ୍ଦନ-୧୯୭୩-ପୃ-୧୬ ।

(୬) (କ) ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ-ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ-ଗ୍ରନ୍ଥ ମନ୍ଦିର- ୬ଷ୍ଠ ସଂସ୍କରଣ-୧୯୭୭-ପୃ-୬୩୬ ।

(ଖ) ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ-ଡ଼କ୍ଟର ଗୋପାଳ ଚନ୍ଦ୍ର ମିଶ୍ର-ଯଶୋଧାରା-କଟକ-୧୯୭୪-ପୃ-୪୮୪ ।

# ଜାତୀୟକବି ବାଞ୍ଛାନିଧି ମହାନ୍ତିଙ୍କ ଜୀବନର କାଳାନୁକ୍ରମିକ ଘଟଣାବଳୀ

୧୮୯୭—ଏପ୍ରିଲ ୨୦ ତାରିଖରେ ଜନ୍ମ ।

୧୯୧୧—ମେଟ୍ରିକ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ।

୧୯୧୪—ରେଭେନ୍‌ସା କଲେଜ ନାଟ୍ୟ ସଂସଦ ଆନୁକୂଲ୍ୟରେ 'ବୃତ୍ରାସୁର ବଧ' ନାଟକରେ ସହଚରୀ ଶଚୀ ଭୂମିକାରେ ଅଭିନୟ ପ୍ରଦର୍ଶନ ।

୧୯୧୬—ଜନ୍ମଭୂମିର ସହିତ ବୋଧ ( ଧର୍ମପତ୍ନୀ- ଶ୍ରୀମତୀ ହେମଲତା ମହାନ୍ତି )- ଭଦ୍ରକ ସ୍ଥିତ 'ରାଧା ମାଧବ ଥିଏଟର ପାର୍ଟି' ରେ ସଂଗୀତ ଗାନ ।

୧୯୨୧—ମାର୍ଚ୍ଚ- ୩ ତାରିଖ- ସ୍ୱାଧୀନତା ସଂଗ୍ରାମରେ ନିଜକୁ ସମର୍ପଣ—

'ଉତ୍କଳବାଣୀ'—( ୧ମ ଝଙ୍କାର ) ପ୍ରକାଶିତ— ଏପ୍ରିଲ୍- ମହାତ୍ମାଗାନ୍ଧୀଙ୍କ ଭଦ୍ରକ ଆଗମନ ଓ ତାଙ୍କ ସହିତ ବାଞ୍ଛାନିଧିଙ୍କର କଥୋପକଥନ—ଭଦ୍ରକ ସ୍ଥିତ ବାଞ୍ଛାନିଧିଙ୍କ ବାସଭବନରେ ଭଦ୍ରକ ସବ୍‌ଡିଭିଜନ୍‌ର କଂଗ୍ରେସ୍ କର୍ମୀ ଆଶ୍ରମ ପ୍ରତିଷ୍ଠା ।

୧୯୨୪—ଜୁନ୍ ୨୮ ଓ ୨୯ ତାରିଖ- ଭାରତ ବିଖ୍ୟାତ ବୈଜ୍ଞାନିକ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଓ ଗୋପବନ୍ଧୁଙ୍କ ଗହଣରେ ବାଞ୍ଛାନିଧିଙ୍କର କନିକା ଆନ୍ଦୋଳନ ଉପଲକ୍ଷେ ରଚିତ 'କେତେ ଦିନ ଆଉ ଦୁଃଖିନୀ କନିକା-' ଗୀତ ଗାନ ।

୧୯୨୬—ମଇ-୨୩ ତାରିଖ- ବାଲେଶ୍ୱର ଜିଲ୍ଲା ସମ୍ମିଳନୀ- (୬ମ ଅଧିବେଶନ)ଭଦ୍ରକରେ ଯୋଗଦାନ ଓ ଗୀତଗାନ- (ସହିବ ହେବ ହେ ଆଉ ଏ ଶାସନ ମାଡ଼, ଗାଅ ହେ ବନ୍ଦେ ଜନନୀ )

୧୯୨୮—କଟକରେ ଗୋପବନ୍ଧୁ ଦିବସ ଉପଲକ୍ଷେ ସ୍ୱରଚିତ ସଂଗୀତ ଗାନ-(ଦୀନବନ୍ଧୁ କୃପାସିନ୍ଧୁ କରୁଣାକର-) କଟକ ଜିଲ୍ଲା ସମ୍ମିଳନୀ- କେନ୍ଦ୍ରାପାଟଣାରେ ସ୍ୱରଚିତ ସଂଗୀତ ଗାନ-(ଆସହେ ପ୍ରିୟ ସହୃଦ ଦେଶ ନାୟକ ହେ- )

୧୯୩୦—ଲବଣ ସତ୍ୟାଗ୍ରହରେ ଇଂରମର କୁଳଖଟି ଆଡ଼ୁଆରେ ଯୋଗଦାନ ଓ କାରାବରଣ ।

୧୯୩୧—ଜୁଲାଇ-୧୦ ତାରିଖ-ଉତ୍କଳବାଣୀ (୨ୟ ଝଙ୍କାର) ପ୍ରକାଶ ।

୧୯୩୩—ଫେବୃଆରୀ ୧୩ ତାରିଖ-ନିଖିଳ ଉତ୍କଳ ନେତା ସମ୍ମିଳନୀ କଟକ ଅଧିବେଶନ-
ରେ ସ୍ୱରଚିତ ସଂଗୀତ ଗାନ- ( କହ କହ କେଉଁ ଜାତି )--ଜୁନ୍- ୧୦
ତାରିଖ- ଠିହୁଡ଼ି ହରିଜନ ସମ୍ମିଳନୀରେ ଯୋଗଦାନ-
ନଭେମ୍ବର- ୯ ତାରିଖ- ଭଦ୍ରକରେ କାନ୍ତକବିଙ୍କ ସମ୍ବର୍ଦ୍ଧନା ପ୍ରସଂଗରେ
ସ୍ୱରଚିତ ସଂଗୀତଗାନ- (ତବ ଆସନ ତଳେ- )

୧୯୩୪ — ଜାନୁଆରୀ ୧୭ ତାରିଖ-ନୀଳଗିରି ରାଜ ଦରବାରରେ ସ୍ୱରଚିତ ସଂଗୀତ ଗାନ-
(କିଶୋର ଚନ୍ଦ୍ର ନୃପତି ମଣ୍ଡନ-)

ନଭେମ୍ବର-୨୩ ତାରିଖ- କଲିକତା ପ୍ରବାସୀ ଉତ୍କଳ ସମ୍ମିଳନୀ (୨ୟ ଅଧି-
ବେଶନ) ରେ ଯୋଗଦାନ-ଡ଼ିସେମ୍ବର- ୨୪ ତାରିଖ- ଭଦ୍ରକ ୟୁନିୟନ
ବୋର୍ଡ ଅଫିସ୍ ଉଦ୍‌ଘାଟନ ଉପଲକ୍ଷେ ସ୍ୱରଚିତ ସଂଗୀତ ଗାନ- (ନିରାଶା
ବାରିଧିରେ ଅଶାର ସୁତାରି- )

୧୯୩୬ — କଲିକତାର ମେଗାଫୋନ୍ କମ୍ପାନୀ ଦ୍ୱାରା ତିନିଗୋଟି ରେକର୍ଡରେ ଛଅ
ଗୋଟି ସଂଗୀତ ଗାନ- ସେପ୍‌ଟେମ୍ବର-ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ-

୧୯୩୮ — ଏପ୍ରିଲ- ୧୯ ତାରିଖ-ଅପରାହ୍ନ ଦୁଇଟା- ସ୍ୱର୍ଗାରୋହଣ ।

XOX

## ॥ ପରିଶିଷ୍ଟ—ପତ୍ରାବଳୀ ॥

ଜାତୀୟ କବି ବାଞ୍ଛାନିଧିଙ୍କ ପତ୍ରାବଳୀ :

ଜାତୀୟ କବି ସ୍ୱର୍ଗତ ବାଞ୍ଛାନିଧି ମହାନ୍ତିଙ୍କ ଅନେକ ପତ୍ର ଏ ପର୍ଯ୍ୟନ୍ତ ବହୁ ବ୍ୟକ୍ତିଙ୍କ ନିକଟରେ ରହିଛି । ବହୁ ପତ୍ର ମଧ୍ୟ ନଷ୍ଟ ହୋଇଗଲଣି । ସେଥି ମଧ୍ୟରୁ ମାତ୍ର ଅଳ୍ପ କେତୋଟି ଉଦ୍ଧାର କରାଯାଇଛି । ସେ ସବୁକୁ ଏଠାରେ ଅବିକଳ ଭାବରେ ଉଦ୍ଧାର କରାଯାଇଛି । ସାହିତ୍ୟରେ 'ପତ୍ର-ସାହିତ୍ୟ'ର ଭୂମିକା ଯେପରି ଗୁରୁତ୍ୱପୂର୍ଣ୍ଣ, ସେହିପରି ମହତ୍ତ୍ୱପୂର୍ଣ୍ଣ ମଧ୍ୟ । ଏହା ଜନନୀ-ସାହିତ୍ୟ ଓ ଇତିହାସର

ପୁସ୍ତିକାକୁ ଅଧିକ ଜୀବନ୍ତ ଓ ବିଶ୍ୱସ୍ତ କରି ତୋଳିଥାଏ । ସମାଲୋଚକ, ସମୀକ୍ଷକ ତଥା ଗବେଷକମାନଙ୍କ ପାଇଁ ଏହି ପତ୍ର କେତୋଟି ବିଭିନ୍ନ ବିଷୟରେ ସାହାଯ୍ୟ କରିବାର ଆଶାନେଇ ତାହା ପ୍ରଦାନ କରାଗଲା ।

ପ୍ରଥମ ପତ୍ର :

କାନ୍ତକବିଙ୍କୁ ସମ୍ବର୍ଦ୍ଧନା ଦେବାବେଳେ ସଂଗୀତଜ୍ଞ, ନାଟ୍ୟକାର, କବି ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କୁ କବି ବାଞ୍ଛାନିଧି ଏହି ପତ୍ରଟି ତାଙ୍କୁ ଲେଖିଥିଲେ—

ରସିକ ବରେଷୁ

ମହାଶୟ,

ଆଜି ଏ ଶୁଭ ଦିବସରେ ଭଦ୍ରକ ନାଟ୍ୟ ସମାଜ ପକ୍ଷରୁ ମୁଁ ଆପଣଙ୍କୁ ଅଭିବାଦନ କରିବାର ସୁଯୋଗ ପାଇ ନିଜକୁ ଧନ୍ୟ ମଣୁଛି । ଜଗତକୁ କବିମାନେ ହିଁ ନିଜର କଳ୍ପନା ପ୍ରସୂତ ନୂଆ ନୂଆ ଭାବ ଦ୍ୱାରା ଆଗେଇ ନେଇ ଚାଲିଛନ୍ତି । କେତେ-ବେଳେ ସାହିତ୍ୟଜଗତକୁ ନିଜର କାବ୍ୟରସ ଦେଇ ରସିକ କରୁଛନ୍ତି । କେତେବେଳେ ବା 'ଦ୍ୱନ୍ଦ୍ୱ' ନଚାଇ ଯୋଦ୍ଧା ସାଜରେ ସଜାଉଛନ୍ତି । କେତେବେଳେ କରୁଣ ରସର ଅବତାରଣାରେ କନ୍ଦାଉଛନ୍ତି । ଯେଉଁମାନେ ସାରାଜଗତରେ ହୃଦୟ ତନ୍ତ୍ରୀରେ ନିତ୍ୟ ନୂତନ ରାଗରେ ମୂର୍ଚ୍ଛନା ଶୁଣାଉଛନ୍ତି । ହେ କବି ! ଆପଣ ସେଥିମଧ୍ୟରୁ ଜଣେ । ମନୁଷ୍ୟ ସମାଜରେ କବି ହିଁ ଶ୍ରେଷ୍ଠ ସୃଷ୍ଟି, ହେ ! ବରେଣ୍ୟ, ଆମ୍ଭମାନଙ୍କର ଅଭିନନ୍ଦନ ଗ୍ରହଣ କରନ୍ତୁ ।

ଆପଣଙ୍କ ପ୍ରତିଭା ବହୁମୁଖୀ । ଆପଣ ଏକାଧାରରେ ସଙ୍ଗୀତଜ୍ଞ, ଗାୟକ, ଭାଷାଶିଳ୍ପୀ, ଔପନ୍ୟାସିକ ଓ ନାଟ୍ୟକାର । ଏଭଳି ପ୍ରତିଭା ଓଡ଼ିଶାରେ ଖୁବ୍ ଅଳ୍ପ ଲୋକଙ୍କଠାରେ ସମ୍ଭବ ଥିଲା । ଆପଣଙ୍କ ରଚନା ସ୍ୱତଃ ହିଁ କେତେବେଳେ ହାସ୍ୟରସ, କନ୍ଦନରସର ଅବତାରଣା ହୁଏ । ବୁଝାପଡେ ନାହିଁ ତ ଖାଲି ସମସ୍ତ ସମୟରେ ହଠାତ୍ ଆଖିରୁ ଲୁହ ଝରିପଡେ, ପୁଣି ହୃଦୟ ବିଭବର ଅଭିବ୍ୟକ୍ତିରେ ମାତି ଉଠେ । ପର ମୁହୂର୍ତ୍ତରେ ହସରେ ପେଟ ଫାଟିଯାଏ । ଯେ ନିଜର ଭାବର ଅଭିବ୍ୟକ୍ତି ଦ୍ୱାରା ମନୁଷ୍ୟ ମନୁଷ୍ୟ ହୃଦୟକୁ ସ୍ପର୍ଶ କରିପାରେ, ସେ ପ୍ରକୃତ କବି, ଶିଳ୍ପୀ । ଓଡ଼ିଶାରେ ଆପଣଙ୍କୁ ଛାଡ଼ିଦେଲେ ଖୁବ୍ ଅଳ୍ପ ସଂଖ୍ୟକ କବିଙ୍କ ଭାଷା ଓ ଭାବ ପ୍ରାଣସ୍ପର୍ଶୀ ହୁଏ । ତେଣୁ ଆପଣ ହିଁ ଜାତୀୟ ସାହିତ୍ୟର କର୍ଣ୍ଣଧାର ହେବା ଯୋଗ୍ୟ ।

ଆପଣ ଯୌବନରେ ଶଯ୍ୟାଶାୟୀ ହୋଇ ଅଛନ୍ତି । ଧନଗତ ଦୁଃଖ, ଯନ୍ତ୍ରଣା ସହିତ ଯୁଝୁଛନ୍ତି । ତଥାପି ବିଷାଦରେ ଯେଉଁ କାବ୍ୟରସର ସୃଷ୍ଟି କରୁଛନ୍ତି ତାହା ଉତ୍କଳ ସାହିତ୍ୟର ଶ୍ରେଷ୍ଠ ସମ୍ପତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଭଗବାନ କରନ୍ତୁ, ଆପଣଙ୍କ ଜୀବନ ଚିର ଶାନ୍ତିମୟ ହେଉ, ଆପଣ କାଳାପ୍ତ ସାହିତ୍ୟର କର୍ଣ୍ଣଧାର ହୋଇ ଉତ୍କଳର ଲୁପ୍ତ ଗୌରବ ପୁନରୁଦ୍ଧାର କରନ୍ତୁ ।

ଆପଣଙ୍କର ଗୁଣମୁଗ୍ଧ

ଶ୍ରୀ ବାଞ୍ଛାନିଧି ମହାନ୍ତି

ଦ୍ୱିତୀୟ ପତ୍ର :

ଯେତେବେଳେ ସ୍ୱର୍ଗତ ବାଞ୍ଛାନିଧି ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ କଟକ ହାଇକୋର୍ଟ ଗେଜେଟ୍‌ରେ ନିଜ ନାମ ଦେଖି ପିତା ସ୍ୱର୍ଗତ ଚିନ୍ତାମଣି ମହାନ୍ତିଙ୍କୁ ଏକ ପୋଷ୍ଟକାର୍ଡରେ ଶୁଭ ସମ୍ବାଦ ଜଣାଇ ଦେଇଥିଲେ---

ଶୁଭ ଖବର

କଟକ

ତା ୩ । ୯ । ୩୭

ପରମ ପୂଜନୀୟ,

ଆଜି କଟକ ପହଞ୍ଚି ହାଇକୋର୍ଟରେ ଗେଜେଟ୍‌ରେ ପରୀକ୍ଷା ଫଳ ବାହାରିଥିବା ଦେଖିଲି । ମୁଁ ପାସ୍ କରିଛି ଭଗବାନ ଦୟାମୟ । ମୋ ପାସ୍ ମଉଷାଁ ଓ ସେଠା ଲକ୍ଷ୍ମୀ ବାବୁ ଓ ଉପେନ୍ଦ୍ର ବାବୁ ଓ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ଜଣାଇଦେବ । ଅନନ୍ତପୁର ମୁଁ ଏଠାରୁ ଲେଖୁଛି ।

ବାଞ୍ଛାନିଧି

ତୃତୀୟ ପତ୍ର :

ବାଞ୍ଛାନିଧି ତାଙ୍କ ପିତାଙ୍କ ପାଖକୁ ଭଦ୍ରକରୁ ଆଉ ଅନ୍ୟ ଏକ ଚିଠି ଲେଖିଥିଲେ ।

ଭଦ୍ରକ

ତା ୫ । ୧୧ । ୩୪

ପରମ ପୂଜନୀୟ,

ଦୁଃଖୀକୁ ଜ୍ୱର ଛାଡ଼ିଗଲାଣି, ସେ ବର୍ତ୍ତମାନ ଦୁର୍ବଳ ଥିବାରୁ ଘରକୁ ଯାଇପାରୁ ନାହିଁ । ତା ରେଜେଇ ଓ ଆଲୁଆନ୍ (ପେଟ୍ରା ଗୁଡ଼ିକାଠି ଥିଲେ) ବାହାର କରି

ମଙ୍ଗଳେ ଆଣିବେ । ସାଇକେଲ ନେଇଗଲେ ଅନ୍ୟ ଖଣ୍ଡେ ଖରିଦ୍ କରାହେବ ମୋର ନିଜର । ଏ ବିଷୟ ମୌଖିକ ସାକ୍ଷାତ ହେଲେ କହିବି ।

। ଦୁଇ ।

ଶରମନ ଶ୍ୟାମାନନ୍ଦ ଏଠାକୁ ଆସିଛନ୍ତି ଓ ଅମୃ ନିବାସରେ ଅଛନ୍ତି । ସେ ଭରତ ଆଉ ଶଳା ଉପରେ ମୋକଦ୍ଦମା କରିଛନ୍ତି । ଏ ମୋକଦ୍ଦମା ହେବା ଦ୍ୱାରା ଆମକୁ କଳଙ୍କ ପିନା ? ଶୀଘ୍ର ଏ ମୋକଦ୍ଦମା ନିଷ୍ପତ୍ତି କରିଦେବା ଦରକାର । ଶ୍ୟାମାନନ୍ଦଙ୍କୁ ଗୋବିନ୍ଦ ପଣ୍ଡା ଜମି କବଲା କରିଦେଇଅଛନ୍ତି । ସେ ସମ୍ପତ୍ତି ବି ଆମଠାରୁ ଗଲେ ମଙ୍ଗଳ । ମୁଁ ପୂଜାକୁ ଘରକୁ ଗଲେ ସେ ବିଷୟ ସ୍ଥିର କରିଦେବା । ଏହା ମୁଁ ଶ୍ୟାମାନନ୍ଦଙ୍କୁ କହିଦେଇଛି । ଏ ବିଷୟରେ ଆପଣଙ୍କର ମତ କଅଣ ଶୀଘ୍ର ଲେଖନ୍ତୁ ।

। ତିନି ।

ମୋ ମତରେ ଶ୍ୟାମାନନ୍ଦ ଆଉ ଟ୧୦୦ଙ୍କା ଦେଲେ ସେ ଜମି ତାକୁ ଦେଇ ଦିଅନ୍ତେ । କିନ୍ତୁ ମୁଁ ଜାଣେନା କେତେ ଟଙ୍କା ତା'ର ପ୍ରାପ୍ୟ, ବୁଝି ମୋତେ ଲେଖନ୍ତୁ ।

ଆପଣ ଶୁଣିଥିବେ ମୁଁ ଜୀବନ ବୀମା କରିଛି । ବର୍ଷ ପାଇଁ ଟ୧୦୦ଙ୍କାକୁ କରିଛି । ଆଜିକାରେ କମ୍ପାନୀର ଚିଠି ପତ୍ର ଆସି ପହଞ୍ଚିଲା । ବର୍ଷ ପରେ ଏକ ହଜାର ଟଙ୍କା ଓ ଲାଭ ଟ୧୦୦୦ଙ୍କା ମିଳିବ । ଇତି ମଧ୍ୟରେ ମୋର ମୃତ୍ୟୁ ଘଟିଲେ ଏକ ହଜାର ଟଙ୍କା ମୋ ଉତ୍ତରାଧିକାରୀ ପାଇବ । ଜଜ୍ ସାହେବଙ୍କ ଠାରେ ଦରଖାସ୍ତ କଲେ ଉତ୍ତରାଧିକାରୀ ଟଙ୍କା ପାଇ ପାରିବେ । କାଲି ପୁଣି ଯଦି ମୃତ୍ୟୁ ଘଟେ ତେବେ ମିଳିବ । ଏପରି ଇନ୍‌ସିଓର କରିବାର ଉଦ୍ଦେଶ୍ୟ ଏହି ଯେ ସବୁ ବେଳେ ମୋ ଠାରେ ପଇସା କଉଡ଼ି ଖରଚ୍ ହୋଇଯାଉଛି । ଗୋଟିଏ ପଇସା ସଞ୍ଚୟ କରି ରଖିପାରିଲି ନାହିଁ । ଭବିଷ୍ୟତରେ ମୋ ଅନ୍ତେ ଛୁଆ ପିଲା ମାନେ ପଥର ଭିକାରୀ ହୋଇଯିବେ । ସେହି ଭୟରେ ଏପରି କରି ପକାଇଛି । ମାତ୍ର ଯେତେ ଦିନ ବଞ୍ଚିରହିବି ସେତେଦିନ ଟଙ୍କା ଦେବାକୁ ହେବ । ବର୍ଷ ମଧ୍ୟରେ ନ ଦେଇ ପାରିଲେ ଟଙ୍କା ବାଜ୍ୟାପ୍ତ ହେବ । ତାପରେ ନଦେଇ ପାରିଲେ ଟଙ୍କା ଫେରସ୍ତ ପାଇବା । ଭଗବାନଙ୍କର କୃପା ହେଲେ ଟଙ୍କା ଦେଇ ପାରିବି । ଭବିଷ୍ୟତରେ ବେଶି ଟଙ୍କା ଜମାକରି ପାରିବା । ମୁଁ ବିଷୟ ଏତେ ସବିବରଣରେ ଲେଖିଲି, ଯେହେତୁ ଭବିଷ୍ୟତରେ ମୋର ଭଲମନ୍ଦ ଘଟିଲେ ଆପଣ ପ୍ରତିକାର କରିବେ । ନଚେତ୍ ଆଲୁଆନ୍ ବୃନ୍ଦାବନ ମା' ପଠାଇବେ । ବୃନ୍ଦାବନ ମା: ରେ ମାଧବ ବାବୁଙ୍କ ଲାଗି ଘିଅ ପିଠା ପଠାଇବେ । ବୃନ୍ଦାକୁ କହିବେ ସେ ଘିଅ ଟଙ୍କାକର କିଣିଦେବ ଓ ଆମ ଘରେ ପିଠା କରି ଆପଣ ନେଇ ଆସିବେ । ନିଧିଆ ଭାଇ ଗାଲରେ ଗାଲୁଆ ଘା ପାଚିଲାଣି, ସେ କଷ୍ଟ ପାଉଥିବାରୁ ଯାଇପାରୁ ନାହିଁ । + + + ହୋଇଛି ଭଲ ହୋଇଛି । ଉପାଡ଼ିବା ସମୟରେ ସାକ୍ଷୀ

ଆମର ରହିବା ଦରକାର । ବର୍ତ୍ତମାନ କଟକ ଜଜ୍ ଅଦାଲତରେ ନଥି ମିଳନ୍ତ ନାହିଁ କଚେରୀ ବନ୍ଦ ଥିବା ହେତୁ । ଭଗବାନ ବଶ୍ରୀଙ୍କ କଥା ବର୍ଷା ଭଲ ନଥି ତଲବ କରାଯାଇ ପାରିବ ନାହିଁ । ସମସ୍ତ ମଙ୍ଗଳ + + + ବେଙ୍ଗ ଭଲ ଅଛୁ ।

ଶ୍ରୀ ବାଞ୍ଛାନିଧି ।

ଚତୁର୍ଥ ପତ୍ର :

ଛଅ ପୃଷ୍ଠାର ଏକ ଦୀର୍ଘପତ୍ର ପିତାଙ୍କ ପାଖକୁ ସେ ଲେଖିଥିଲେ । ଏଥିରେ ତାରିଖର ଉଲ୍ଲେଖ ନାହିଁ । କାରଣ ଏହାର ପ୍ରଥମ ଦୁଇ ପୃଷ୍ଠା ନାହିଁ । The Utkal Provi-ncialCongress Committe – ବା ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟି (ଚାନ୍ଦିନୀ ଚୌକ/କଟକ) ର ଲେଟର୍-ହେଡ୍‌ରେ ସେ ଏହି ଚିଠି ଲେଖିଥିଲେ -

ବନ୍ଦେ ମାତରମ୍

ଉତ୍କଳ ପ୍ରାଦେଶିକ କଂଗ୍ରେସ୍ କମିଟି

No.

The Utkal provincial
Congress Committe
P.O.- Chandnichauk
Cuttack

The 19

। ଓମ ।

ସ୍ୱତନ୍ତ୍ର ପତ୍ର ଏତିକି :

ମୁଁ ଗୁଲଆଗଞ୍ଜ ଠାରେ ରହି ମୋ କାମକୁ ଓକିଲାତି କ୍ଲାସକୁ ସାଇକେଲ୍ ଦ୍ୱାରା ଆସିବି । ସହରରେ ସୁବିଧାରେ ବସା ମିଳୁନାହିଁ । ଗୁଲଆଗଞ୍ଜ ଠାରେ ଯେ ବସା ନିଆଯାଇଛି, ତାହା କିଛି ଦିନ ପରେ ମରାମତି ହୋଇଗଲେ ସୁନ୍ଦର ବସାଟିଏ ହେବ । ଏଥିରେ ଜନାନା ରହିବା ପାଇଁ ସୁବିଧା ଅଛି । କଟକରେ ଯେତେବେଳେ ମୋତେ ବର୍ଷେ ରହିବାକୁ ହେବ, ସେତେବେଳେ ଝୁଅ ପିଲାଙ୍କୁ ନ ନେଇ ରହିବା ବଡ଼ ଅସୁବିଧା ଜନକ ହେବ । ସାଇକେଲ ଖଣ୍ଡେ ଗତକାଲି ଖରିଦ୍ କରିଛି । ବର୍ତ୍ତମାନ ତାହା ଦ୍ୱାରା ସହରକୁ ଯିବା ଆସିବା ହେବ । ପରେ ସେ ଓକିଲାତି ପରୀକ୍ଷା ପାଇଁ ଦରଖାସ୍ତ ଓ ଫିସ୍ ଦାଖଲ ନଭେମ୍ବର ତା ୧୫ରିଖ ବା ତହିଁ ପୂର୍ବରୁ ଜଜ୍ ସାହେବ ଠାରେ କରିବାର କଥା । ମାତ୍ର କଚେରୀ ତା ୧୬ ରିଖରେ ଖୋଲିବ । ଅତଏବ କଚେରୀ ବନ୍ଦ୍ ପୂର୍ବରୁ ଦରଖାସ୍ତ କରିବା ଉଚିତ୍ । ଫିସ୍ ୫୧୦ଙ୍କା ଓ ଦରମା ଏ

ମାସର ଟଙ୍କା ଏ ରୂପ ଟ୯ଙ୍କା ଲଗିବ । ଗତ ମାସଠାରୁ ମୋର ଅନ୍ୟ କୌଣସି ଠାରେ ଟ୍ୟୁସନ ନାହିଁ । କେବଳ ଗୋଟିଏ ଜାଗାରେ ଟ୧୮ଙ୍କା ବେତନରେ ଟ୍ୟୁସନ କରୁଛି । ସେ ଟଙ୍କା ଏମାସ ପାଇଲେ ଫିସ୍ ତ୍ରୈମାସିକ ଦାଖଲ କରିବି ।

। ତିନି ।

ପୂଜା ପାଇଁ ଲୁଗା ଯାହା ତାଙ୍କର ପଠାଇଛନ୍ତି ସେ ମୁଁ ନେଇଯିବି । ପୂଜାକୁ ତା ୧୩/୧୪ ଶିଖରେ ଛୁଟି ହେବ । ମୁଁ ପୂଜା ପୂର୍ବରୁ ଯାଇ ପହଞ୍ଚିବି । କେବେ ଯିବି ପରେ ଲେଖିବି ।

। ପାଞ୍ଚ ।

ଆମ ମୋକଦ୍ଦମା ତାରିଖ ତା ୬ ରିଖକୁ ଅଛି ବୋଲି ଶୁଣୁଛି । ଅନନ୍ତପୁର ବୃନ୍ଦାବନ ଭାଇ ଏଠାକୁ ଆସିଥିଲେ । "ସେ କହୁଥିଲେ ଯେ ରାଧାନାଥ ବାବୁଙ୍କ ଉପରେ ସମନ ହୋଇଛି ସେ ଆସିବେ । କିନ୍ତୁ ନାରାୟଣ ସାମଲ ମୋକଦ୍ଦମା ତାରିଖ ସେଦିନ କେଉଁ ମୋକଦ୍ଦମା ସେ ଦିନ ପଡ଼ିବ । ଆମର ନ ପଡ଼ିଲେ ଭଲ । ଏ ବିଷୟରେ କି ଖବର ମୋତେ ଅନୁଗ୍ରହ କରି ଲେଖନ୍ତୁ ।

। ଛଅ ।

ଗଦେଇ ମଉସା ତା ୬ରିଖ ଆମ ମୋକଦ୍ଦମାକୁ ଉଦ୍ଧବ କି ଆସିବେ କି ? ଆସିଲେ ତାଙ୍କୁ ମୋ ଚିଠି ଦେବେ ନଚେତ୍ ତାଙ୍କଠାକୁ ପଠାଇ ଦେବେ । ତାଙ୍କୁ ସବୁ କଥା ବୁଝାଇ ଦେବେ ମୋତେ ଯେପରି ସେ ଦୋଷ ନ ଦିଅନ୍ତି । ଅନ୍ୟାନ୍ୟ ପରେ ।

॥ ଇତି ॥

ଆପଣଙ୍କର ଆଜ୍ଞାଧୀନ

ବାଞ୍ଛାନିଧି

(ତୃତୀୟ ପତ୍ର ଏବଂ ଚତୁର୍ଥ ପତ୍ର)-(ଅନନ୍ତପୁରର ବୃନ୍ଦାବନ ଭାଇ ହେଉଛନ୍ତି ବାଞ୍ଛାନିଧି-ଙ୍କର ବଡ ଶ୍ୟାଳକ । ରାଧାନାଥ ବାବୁ ହେଉଛନ୍ତି ବାଞ୍ଛାନିଧିଙ୍କର ଶ୍ୱଶୁର । )

ପଞ୍ଚମ ପତ୍ର :

ଶ୍ରଦ୍ଧେୟ ମାନଗୋବିନ୍ଦ

ଆମ୍ଭେମାନେ ଆଜି ରାତିରେ ଘରକୁ ଯିବୁଁ । ଗଣେଶ ପୂଜା ପାଇଁ ନୂଆ Play ରିହାର୍ସାଲ କରିବାକୁ ହେବ । ତୁମ୍ଭେ ଆମ ସାଙ୍ଗରେ ଯିବ କି ନା ? ତୁମର

ତ ରେକର୍ଡ଼ଂ ସରଗଲା-ଯିବାର ହେଲେ ଆସିବ ଏଠାକୁ ।

ତୁମର

ଶ୍ରୀ ବାଞ୍ଛାନିଧି ମହାନ୍ତି

ଷଷ୍ଠ ପତ୍ର :

ଈରମ

ତା ୨୭ । ୭ । ୩୭

ଆୟୁଷ୍ମାନ ଶ୍ରୀମାନ ପ୍ରେମ,

ବାରୁ ମା: ରେ ତମର ଚିଠି ପାଇଲୁଁ । ମୋତେ ଯେତେବେଳେ ମହଲତ ମିଳିଲା ନାହିଁ, ବାବାଙ୍କୁ ମଧ ମହଲତ ମିଳିବ ନାହିଁ । ତେଣୁ ସ୍ଥିର କଲୁଁ ଯେ ଆମେ ଦୁହେଁ ୧୦ଦିନ କାମ ସାରି ଭଦ୍ରକ ଯିବୁଁ । ତମେ ଏଠାରେ ରହି କୌଣସି ମତେ କାମ ଶେଷ କରିଦେଇଯିବ । ମଚ୍ଛବ ହେବ ନାହିଁ । ବ୍ରାହ୍ମଣ ଦଶଜଣ ଖୁଆଇ ଦେବ । ଆମର ଏ ବିପଦ ସମୟରେ ଆନନ୍ଦ କରିବା ବା ବାହାଦୁରି ଦେଖାଇବା ନିଷ୍ପ୍ରୟୋଜନ । ବାବା ଓ ମୁଁ ଜେଲରେ ରହିବୁଁ । ପୁଣି ଦଶଦିନ ବାହାର ଯିବୁଁ । ଏଥିରେ ଏତେ ଆଡମ୍ବର କାମ କରିବା ଉଚିତ୍ ନୁହେଁ । ବରଂ ଘରର ବନ୍ଦୋବସ୍ତ କରିଦେଇ ଯିବା ଉଚିତ୍ । ଏଣେ ବର୍ତ୍ତମାନ ଗୃହଚସ୍ତ କାମ । ତାହାର ସୁବିଧା କରିବାକୁ ହେବ । + + + ଏଠାରୁ ବେତଡ଼ାକୁ ଲୋକ ପଠାଇବୁଁ । ତାଙ୍କ ଦ୍ୱାରା ସେଠାରୁ ଜିନିଷ ପତ୍ର ଖରିଦ କରି ସଙ୍ଗରେ ନେଇ ସୋମବାର ସନ୍ଧ୍ୟା ସୁଦ୍ଧା ଏଠାରେ ପହଞ୍ଚିଲେ ମଙ୍ଗଳବାର ଦଶଦିନ କାମ ହେବ + + + ଗୌରାଙ୍ଗକୁ ବିଦାକରି ନଦେଇଥିଲେ କାଲି ଭୋର ଏଠାକୁ ଟଙ୍କା ଦେଇ ପଠାଇ ଦେବ । ସେ ନିଶ୍ଚୟ ୨ ଆସିବ ।—

ଶ୍ରୀ ବାଞ୍ଛାନିଧି ମହାନ୍ତି ।

(ଷଷ୍ଠପତ୍ର---କବି ବାଞ୍ଛାନିଧିଙ୍କ ବିମାତା କୁନ୍ଦଲତା ଦେବୀଙ୍କ ମୃତ୍ୟୁରେ ସାନ ଭାଇ ଶ୍ରୀ ପ୍ରେମାନନ୍ଦ ମହାନ୍ତିଙ୍କ ପାଖକୁ ବାଞ୍ଛାନିଧି ଏହି ପତ୍ର ଦେଇଥିଲେ । ସେ ଏବଂ ତାଙ୍କ ପିତା ଶ୍ରୀ ଚନ୍ଦ୍ରାମଣି ମହାନ୍ତିଙ୍କର ଜେଲ୍ ଯିବା ପୂର୍ବରୁ ଏହି ପତ୍ରଟି ଲିଖିତ । ନଟଗନ୍ଧର୍ବ ଗୌରାଙ୍ଗ ଚନ୍ଦ୍ର ଦାସ ସେତେବେଳେ ଭଦ୍ରକସ୍ଥ ଘରେ ଥିଲେ )

---

ସନ୍ଦେଶ ପତ୍ର :

Angul
Dt. Cuttack
Dt. 16-3-38

ଅୟୁଷ୍ମାନ ଦୁଃଖୀ,

ମୁଁ ଯେଉଁ ପଚାଶଟଙ୍କା ଦାଦାଙ୍କ ନାମରେ ମନିଅର୍ଡର କରିଥିଲି ତାହାର ଫେରନ୍ତା ରସିଦ୍ ଓ ପ୍ରେମର ଏକଖଣ୍ଡ କାର୍ଡ [ତା ୮ ରିଖ ଲିଖିତ] ପାଇଲି । ସେଥିରୁ ଜଣାଯାଏ ଯେ ବାର୍ମି ତା ଟ୩୦୦ଙ୍କା ହାକିମ ମଞ୍ଜୁର କରିଛନ୍ତି । ତନ୍ମଧ୍ୟରୁ ଟ ୧୦୦ ଙ୍କା ଅଗ୍ରୀମ ଦେଇଛନ୍ତି । Pump ବିଷୟରେ ବୁଝାଯିବ । ବର୍ତ୍ତମାନ ଇଟା ପକାଇ ଶୁଖାଇ ରଖି ଓ ଗେଙ୍ଗୁଟି ସଂଗ୍ରହ କରି ତାକୁ ପୋଡାଇ ଚୂନ କରି ରଖ । ଇଟା ଅନ୍ତତଃ ହି ୧୬ ନାର ପଡ଼ିବା ଦରକାର । ତା ନ ହେଲେ ଭଲଇଟା ହେବ ନାହିଁ । ଗୋଲଇଟା ବା ଚୌଖୁଣ୍ଟିଆ ଦଶ ହଜାର କରିବ । କାମାଖ୍ୟା ବାବୁଙ୍କୁ ପଚାରି କେଉଁଠାରୁ ଇଟାର ଫରମା ମିଳିବ, ଉଦ୍ଦିକ ତୁମେ ନିଜେ ଆସି ତିଆରି କରି ନେଇ ଯିବ । ଇଟା ପୋଡ଼ା ସରିଲେ କୂଅ ଖୋଳାଇ ଦେବ । ତା ପୂର୍ବରୁ ଲମ୍ବ ଚୌକ ତିଆରି କରି ରଖିବାକୁ ହେବ । ସେହିପରି କେଉଁଠୁ ଭଲ ମିଳିବ ଓ କିଏ କରିପାରିବ ସେ ବିଷୟରେ ତାଙ୍କଠାରୁ ବୁଝି ବନ୍ଦୋବସ୍ତ ଦେବ । ଯେଉଁ ଟ୧୦୦ଙ୍କା ଅଗ୍ରିମ ନେଇ ତାର ଖର୍ଚ୍ଚ କରିବ ବା ଯାହାକୁ ଦେବ ତାହାଠାରୁ ରସିଦ ନେଉଥିବ । ସରକାରୀ ଟଙ୍କା ସାବଧାନରେ ଖର୍ଚ୍ଚ କରି ହିସାବ କିତାବ ଠିକ୍ ଲେଖିବାକୁ ହେବ । ଏ କାଗଜପତ୍ର, ହିସାବ, ରସିଦ୍ ସମସ୍ତ S. D. O.ଙ୍କଠାରେ ଦାଖଲ ହେବ ଓ ତାହା ଅଡ଼ିଟ୍ ହେବ । ପ୍ରଥମରୁ ଭାଉଚର ବା ରସିଦ ନ ନେଲେ ପଛରେ ନେବା କଷ୍ଟକର ହେବ । ଖର୍ଚ୍ଚ ପାଇଁ ରଖିଥିବ । ମଜୁରିକାରଙ୍କର ହାଜିରା ବହିଟିଏ କରି ରଖିଥିବ । ପ୍ରତ୍ୟେକ ଦିନ କେଉଁ କେଉଁ ମାନେ କେତେ ଗୋଟା କାମ କଲେ ସେ ହାଜିରା ବହିରେ ରହିବ । ଯେଉଁମାନେ ପଇସା ନେବେ ଅର୍ଥାତ୍ ଯେପରି କୂଅ ଖୋଳାବାଲା ବା ଚୌକ ତିଆରି କରିବା ବାଲା, କମାର, ବଢ଼େଇ ଇତ୍ୟାଦି ସମସ୍ତ ଦସ୍ତଖତ ସହ ରସିଦ ଦେବେ । ଲେଖି ଜାଣି ନ ଥିଲେ ଟିପ ଏବଂ ତାହା ବକଲମ ଜଣେ ସାକ୍ଷୀ ପଡ଼ିବ । ସେଥିରେ ତାରିଖ ଓ ନମ୍ବର କରି ରଖିବ । ଗାଁ ବାଲାଙ୍କୁ ବୁଝାସୁଝା କରି ମଜୁରି free ଲଗାଇବ, ନଚେତ୍ ଏ କାମଟି ହୋଇପାରିବ ନାହିଁ ।

ଆମ୍ଭ ବଖରା ବାଡ଼ରେ ଇଟା ପକାଇବାକୁ ବାବା କହୁଥିଲେ । ତାଙ୍କୁ ପଚାରି ଯେଉଁଠି ଭଲ ଇଟା ହେବ ବୁଝି ପକାଇବ ଓ ଶୀଘ୍ର ପୋଡ଼ିବାର ବନ୍ଦୋବସ୍ତ

କରିବ । ମୋତେ ସମସ୍ତଙ୍କୁ ସମସ୍ତ ଖବର ଜଣାଉଥିବ । ମୁଁ ଏଠାରୁ S.D.O.ଙ୍କୁ ପତ୍ର ଲେଖିଛୁ ।

ଗତମାସର District Board Bill ପାଇଲ କି ନା ? ପାଇଥିଲେ କେତେ ଟଙ୍କା ପାଇଛ ଲେଖିବ ।

ଏ ମାସ ଜିଲ୍ଲା ବୋର୍ଡ଼ ମିଟିଂ କାଗଜ ମୁଁ ତ ପାଇଲି ନାହିଁ । ତଠେ ମୋ ପାଖକୁ ପ୍ରେମ ପଠାଇ ନାହିଁ । ମିଟିଂ କେବେ ହେଲା ତା ହେବ ବୁଝି ପ୍ରେମ ମୋ ଠାକୁ ଲେଖିବ । ପ୍ରେମକୁ କହିବ ମୁଁ ସଚ୍ଚିଦାନନ୍ଦ ବାବୁଙ୍କ ନାମରେ ୩ଟଙ୍କା ପଠାଇ ଦେଇଛୁ । ସେ ମଧୁବାବୁଙ୍କୁ ଦେବ । ଧଳଧଉଆ ଢ଼ଗ୍ରୀଜାରି ନକଲ ପାଇଁ ପ୍ରେମ ମଧୁବାବୁଙ୍କୁ ଲେଖି ଅଣାଇବ । ନକଲ ଟଙ୍କା ପଠାଇ ଦେବ ।

ଆମ୍ଭେମାନେ ଏଠାରୁ ତାଳଚେର ଯିବୁଁ । ବେଙ୍ଗ, ବାଘୁା ଓ ସାନ ବହୂ ପ୍ରଭୃତି କପରି ଅଛନ୍ତି ଲେଖିବ । ତୁମର ପତ୍ର ଅପେକ୍ଷାରେ ରହିଲି । ଅନ୍ୟାନ୍ୟ ପରେ । ଇତି ।

ତୁମ୍ଭର ଭାଇ
ଶ୍ରୀ ବାଞ୍ଛାନିଧି ମହାନ୍ତି (*)

(*) ସପ୍ତମ ପତ୍ର – ଏହି ପତ୍ରଟି ବାଞ୍ଛାନିଧି ମୁଖ୍ୟତଃ ୮ମ ଶ୍ରେଣୀର ୧ ମାସ ୪ ଦିନ ପୂର୍ବରୁ ଅନୁଗୋଳ ( ସେତେବେଳେ କଟକ ଜିଲ୍ଲା ଓ ଏବେ ଢେଙ୍କାନାଳ ଜିଲ୍ଲାରେ ଅବସ୍ଥିତ )ରେ ଥିଏଟର କ୍ୟାମ୍ପ ପଡ଼ିଥିଲା ବେଳେ ଦ୍ୱିତୀୟ କନିଷ୍ଠ ଭ୍ରାତା ଦୁଃଖୀ ( ଶ୍ରୀ ବିବେକାନନ୍ଦ ମହାନ୍ତି )ଙ୍କ ଠାକୁ ଜିଲ୍ଲା ବୋର୍ଡ ଅନୁକୂଲ୍ୟରେ ଖୋଲା ଯାଉଥିବା କୂଅ ତିଆରି ପାଇଁ ଇଟା ପୋଡ଼ିବା ବିଷୟରେ ଲେଖିଛନ୍ତି । ସେତେବେଳେ ବିବେକାନନ୍ଦ କଣ୍ଟ୍ରାକ୍ଟର କାର୍ଯ୍ୟ କରୁଥିଲେ । ବାଞ୍ଛାନିଧିଙ୍କ ସ୍ୱହସ୍ତ ଲିଖିତ ୨ୟ, ୩ୟ, ୪ର୍ଥ, ୫ମ ଓ ୬ଷ୍ଠ ପତ୍ର ତାଙ୍କ କନିଷ୍ଠ ଭ୍ରାତା ଶ୍ରୀ ବିବେକାନନ୍ଦ ମହାନ୍ତିଙ୍କ ଠାରୁ ପ୍ରାପ୍ତ ।

# ସଂଶୋଧନ ପତ୍ର

| ପୃଷ୍ଠା | ଧାଡ଼ି | ଭୁଲ | ଠିକ୍ |
| --- | --- | --- | --- |
| ୩ | ୨୪ | ଖୋରଦା | ଖୋରଧା |
| ୫ | ୪ | କରିବାରୁ | କରି |
| ୨୦ | ୨ | ରାଧାମୋହନ | ରାଧାମାଧବ ( ପରେ ରାଧାମୋହନ ଥିଏଟର ପାର୍ଟି ସ୍ଥାନରେ ସର୍ବତ୍ର ରାଧାମୋହନ ଥିଏଟର ପାର୍ଟି ହେବ |
| ୨୦ | ୧୮ | ଖରଚକରି ଉତ୍କଳ ହେଲେ | ଖରଚ କରି ପଢ଼ାଇଲ । ସେ ଉତ୍କଳ ହେଲେ |
| ୨୧ | ୧୭ | ସଇଧ୍ୟାୟୀ | ସହାଧ୍ୟାୟୀ |
| ୨୧ | ୨୪ | ବଳକା | ବନ୍ଧକା |
| ୩୪ | ୨ | ସ୍ୱରୂପା | ସ୍ୱରୂପ ଥିଲେ । |
| ୩୪ | ୧୪ | ବଳୀର | ବନ୍ଧୀର |
| ୩୬ | ୨୧ | ଠେଣ୍ଟୁ | ପରିଣାମରେ |
| ୪୧ | ୧୬ | ଦଉବ | ଦଇବ |
| ୪୮ | ୩ | ବାଞ୍ଛାନିଧିଙ୍କ | ବାଞ୍ଛାନିଧି ତାଙ୍କ |
| ୪୮ | ୧୪ | ଭଦ୍ରକ କଲେଜ | ଭଦ୍ରକ |
| ୫୧ | ୨୦ | ବାଞ୍ଛାନିଧିଙ୍କ | ବାଞ୍ଛାନିଧି ତାଙ୍କ |
| ୫୩ | ୮ | ଧାଡ଼ି | ଧଡ଼ି |
| ୫୩ | ୧୫ | ବସ୍ତୁ | ବସ୍ତ୍ର |
| ୫୪ | ୫ | ମହଣା | ଗହଣା |
| ୫୪ | ୧୭. | କାଠ | କାଚ |
| ୫୪ | ୨୦ | ବିଦେଶୀ ବର୍ଜ୍ଜନ | ବିଦେଶୀ ବସନ ବର୍ଜ୍ଜନ |
| ୫୬ | ୨୨ | ଅନୁଷ୍ଠିତ ହେଲା । | ଅନୁଷ୍ଠିତ କଲେ । |
| ୫୬ | ୨୩ | ଅନୁଷ୍ଠିତ ହେଲା । | ଏକ ସମ୍ମିଳନୀ ଅନୁଷ୍ଠିତ ହେଲା । |
| ୬୧ | ୨୭ | ପଡ଼ୁଆଁ | ପଢ଼ୁଆଁ |
| ୬୩ | ୧୪ | ଗୀତରେ | ଗୀତ |
| ୬୬ | ୨୩ | କଲମ | କରମ |
| ୬୮ | ୧୧ | ଆସିବାଦେ | ଆସିବାରେ |
| ୭୦ | ୯ | ରାତରେ ଖାଇପିଇ | ଖାଇପିଇ |
| ୭୩ | ୧୩ | ଶିକ୍ଷା କରିବା ଠାରୁ | ଶିକ୍ଷା କରିଥିଲେ । |
| ୭୩ | ୧୪ | ଅଭ୍ୟାସ କରିବା | ଅଭ୍ୟାସ କରିଥିଲେ |
| ୭୩ | ୨୩ | ହସିହସି | ସେ ହସି ହସି |

| ପୃଷ୍ଠା | ଧାଡ଼ି | ଭୁଲ | ଠିକ୍ |
|---|---|---|---|
| ୭୩ | ୨୮ | ଅଧିବେଶନରେ | ଅଧିବେଶନରେ । |
| ୭୩ | ୨୯ | ଯୋଗଦେଇ ଥିଲେ | ଏଥିରେ ଯୋଗଦେଇ ଥିଲେ । |
| ୭୪ | ୯ ଓ ୧୪ | ଶୀଶୀ ଭୂଷଣ | ଶଶୀ ଭୂଷଣ |
| ୭୪ | ୧୨ | ଗାନକଲେ । | ଗାନକଲେ, |
| ୭୪ | ୧୩ | କେତୋଟି | ଆଉ କେତୋଟି |
| ୭୫ | ୨୧ | ସହାୟକ | ସହାୟକ ହୋଇଥିଲେ, |
| ୭୬ | ୧୩ | କରାଗଲା ; । | କଲେ । |
| ୭୬ | ୨୩ | ସେ ବାଞ୍ଛାନିଧିଙ୍କ | ରାଜା ବାଞ୍ଛାନିଧିଙ୍କ |
| ୭୬ | ୨୮ | ସହକର୍ମୀମାନେ | ସହକର୍ମୀ |
| ୭୮ | ୧୦ | ରାଜ ପ୍ରାସାଦରୁ | ରାଜ ପ୍ରାସାଦର |
| ୭୯ | ୮ | କଳା କୋକିଳ, | ସେ 'କଳା କୋକିଳ' । |
| ୭୯ | ୯ | ସଂପୂର୍ଣ୍ଣ | ସେ ସଂପୂର୍ଣ୍ଣ |
| ୮୦ | ୧୧ | ଓ | ଏବଂ |
| ୮୦ | ୨୮ | ପାନ | ଗାନ |
| ୮୧ | ୩ ଓ ୭ | ଗୋବିନ୍ଦଶ୍ୱର ଦେଓ | ଗୋବିନ୍ଦ ଶ୍ୱରଦେଓ |
| ୮୧ | ୮ | ରୌପ୍ୟ | ସେ ରୌପ୍ୟ |
| ୮୨ | ୮ | ଏଦ୍ୱାର | ବାଞ୍ଛାନିଧି ଏଦ୍ୱାର |
| ୮୩ | ୭ | ଛେଡେ | ଛେଡେ |
| ୮୪ | ୧୨ | କରଥିଲେ | କରା ଯାଇଥିଲେ । |
| ୮୬ | ୨୪ | ଦୁଇ | ହୁଇ |
| ୮୮ | ୨୪ | ଓ | ନେଇ |
| ୮୯ | ୧୧ | ଲୁହେ | ଶୁଣହେ |
| ୯୦ | ୧୮ | ଦେଖିଲେ | ସେ ଦେଖିଲେ |
| ୯୧ | ୧୬ | ମହାଶୟଙ୍କ | ମହାଶୟ |
| ୧୦୨ | ୧୫ | ଧମୀକ | ଧମୀଙ୍କ |
| ୧୦୪ | ୧୩ | ଦଂସା | ହଂସା |
| ୧୧୦ | ୧୯, ୨୦ | ପଲ୍ଲୀଚିତ୍ର ନାଟକର କିଛୁ ଅଂଶ କେତେକ କାରଣରୁ ପରିଶିଷ୍ଟରେ ପ୍ରଦାନ କରାଗଲା ନାହିଁ । ଏଥିପାଇଁ ଦୁଃଖିତ । | |
| ୧୧୪ | ୨୨ | ରଚନା କରୁଛନ୍ତି | ରଚନା କରୁଛନ୍ତି, ତାହା ନୁହେଁ |
| ୧୨୨ | ଶେଷଧାଡ଼ି | ଜନମ ସାହିତ୍ୟ | ଜୀବନ ସାହିତ୍ୟ |
| ୧୨୩ | ୨୨ | ବାଭରର | ବାଭବର |
| ୧୨୬ | ୨୬ | ଜନାମ | ଜନାନା |

— X —